# ଦ୍ୱିତୀୟ ଦୃଶ୍ୟ

[ ଅଫିସ୍ ଘର ସଂଲଗ୍ନ ଭିତର ପାଖ ବାରନ୍ଦା । ହାତରେ ନଥି ପତ୍ର ଧରି ନବଘନ ଆସିଲେ । ଘୁରିଚ୍ ଟିପି ଆଲୁଅ ଜାଳି, ସପ ଖଣ୍ଡିଏ ବିଛେଇ ନଥି ଫିଟାଇବାକୁ ଯାଉଛନ୍ତି—ଅନ୍ତରାଳରୁ ପାର୍ବତୀଙ୍କ ସ୍ୱର ଶୁଣାଗଲା । କଥା କହୁ କହୁ ପାର୍ବତୀ ଆସିଲେ ]

ପାର୍ବତୀ—କିଏ ? ନବଘନ ନା କିଏ ?

ନବ—ହଁ ମା' । ମୁଁ ନବଘନ ।

ପାର୍ବତୀ—ତମ ବାବୁଙ୍କ ପାଖରୁ ମହକିଲ ସବୁ ବିଦା ହୋଇ ଗଲେଣି ?

ନବ—ହଁ ମା, ସମସ୍ତେ ଗଲେଣି – ହେଲେ ମୁଁ ଅଛି ।

ପାର୍ବତୀ—ମୁଁ ତମ କଥା ପଚାରୁନାହିଁ—ମହକିଲଙ୍କ କଥା ପଚାରୁଛି ।

ନବ—ମହକିଲ ତ ଗଲେଣି । ହେଲେ ମା, ମୁଁ ଯେତେବେଳ ଯାଏ ଅଛି—

ପାର୍ବତୀ—କଚେରି ସେତେବେଳେ ଯାଏ ଭାଙ୍ଗି ନାହିଁ – ଏଇଆ କହୁଚ ତ ?

ନବ—ହଁ ମା ।

ପାର୍ବତୀ କଚେରି ତ ଭାଙ୍ଗି ନାହିଁ – ଆଉ ତମେ ତମ ନଥି ପତ୍ର ଧରି କଚେରି ଘର ଗୁଡ଼ିଏ ଏଠିକି ପଳେଇ ଆସିଲଣି କାହିଁକି ?

ନବ—କଥାଟା ଆପଣ ବିଚାର କଲେ ମା ! ବାବୁଙ୍କ ଭଳି ଓକିଲ—ଏଇତ, ଆଜି ଏ ସଞ୍ଜ ଦି ଘଣ୍ଟାରେ (ସ୍ୱରଟା ଟିକିଏ କମେଇ) ଶହେ ଟଙ୍କାରୁ ଉପର ରୋଜଗାର ହେଇଚି ।

ପାର୍ବତୀ – ରୋଜଗାର କଥା ଥାଉ । କଣ ହେଇଚି କହ ।

ନବ—ମିଛିଲ ଉପରେ ସିନା ସାକ୍ଷୀଙ୍କୁ ଜେରା କରିବେ - ଏଠି କଥା କଥାକେ ଯେ ମତେ ଜେରାକରି ପ୍ରାଣାନ୍ତକ କରି ପକଉଚନ୍ତି !

ପାର୍ବତୀ—(ହସି) ଓ, ଏଇଆ ? ଆଜ କଣ ନୂଆ ଦେଖିଲ ?
ନବ—ଆଉପରୀ ପାରିଲ ନାହିଁ ମା । ଏଠିକି ପଳେଇ ଆସିଲି ।
ପାର୍ବତୀ—କଚେରୀ ଘରେ ତା' ହେଲେ ବାବୁ ଏକା ?
ନବ—ହଁ, ବାବୁ ଏକା ଅଛନ୍ତି ।
ପାର୍ବତୀ—ଆଚ୍ଛା । (ଯିବାକୁ ଲାଗିଲେ)
ନବ—ମା ! ଆପଣ ବାବୁଙ୍କ ପାଖକୁ ଯାଉଚନ୍ତି ?
ପାର୍ବତୀ—ହଁ ।
ନବ—ଯା'ନ୍ତୁ ନାହିଁ ।
ପାର୍ବତୀ—କାହିଁକି ? ମତେ ଜେରା କରିବେ ?
ନବ—ଆପଣଙ୍କୁ ? ଅସମ୍ଭବ କଣ ? (ପାର୍ବତୀ ଅଳ୍ପ ହସି ଚାଲିଗଲେ)
ଏଁ ! ନମାନ ଚାଲିଗଲେଣି ! ଯା'ନ୍ତୁ—ମୋର କଣ ଅଛି ?

[ ଟିକିଏ ପରେ ଆସିଲା ମୀରା—ବି.ଏ. କ୍ଲାସ୍‌ର ଛାତ୍ରୀ ]

ମୀରା—ଆରେ, ନବଘନବାବୁ ! ଆପଣ ଏଠି ?
ନବ—ଟିକିଏ ବ୍ୟସ୍ତ ଅଛି ମୀରାଦେଈ ।
ମୀରା—କଣ ହେଇଛି ?
ନବ—ଗୋଟାଏ ମାଛମରା କେଶ୍ ।
ମୀରା—ମାଛମରା କେଶ ! ସେଥର ଯେମିତି ସେ କେଶ୍‌ଟା ହେଇଥିଲା ବାପା ଜିତିଲେ ? ମହକିଲ ସେ' କି ସାନ୍ତରା ଟି ?
ନବ—ଶିବ ସାନ୍ତରା ।
ମୀରା—ହଁ ଶିବ ସାନ୍ତରା । ତା'ପରେତ ଶିବ ସାନ୍ତରାଙ୍କ ଘରୁ ଚାଲିଲା ଆମ ଘରକୁ ମାଛର ସୁଅ । ବାପ୍‌ବା !! ସେ କି ବଡ଼ବଡ଼ ଫାଷ୍ଟ କ୍ଲାସ୍ ମାଛ ଆମକୁ ଖୁଆଇଲେ !! ଏଥର କେଶ୍‌ଟା କଣ ସେଇପରି ?

ନବ—ହଁ । ପୋଖରୀ ଉପରେ ଆମ ମହକିଲର ସ୍ୱଭିଟା ଏକ ରକମ ସେହିପରି କହିଲେ ଚଳେ ।

ମୀରା—ବାପା ତା’ହେଲେ ଜିତିବେ ?

ନବ—କେଶ୍ ତ ଏତେ ବାଟ ଆଗେଇ ନାହିଁ ।

ମୀରା—ଓଃ ! କେଶ ଆଗେଇଲେତ ହାକିମ ରାୟ ପଢ଼ି ସବୁ ଶୁଣେଇ ଦେବେ । ଏବେଠୁ କେଶ୍‌ର ଆଗ। ଆପଣ କେମିତି ଦେଖୁଚନ୍ତି ?

ନବ—କେଶ୍‌ଟା ମଦନ ବାବୁ ଓକିଲଙ୍କ ସିରସ୍ତାରେ ଥିଲା—ଏଇ ମୋଟେ କାଲି ଆମ ହାତକୁ ଆସିଚି ।

ମୀରା—ଓହୋ ! ମୁଁ କେଶ୍‌ଟାର ଇତିହାସ ବୁଝିବାକୁ ଚାହୁଁନି ନବଘନବାବୁ—କେଶ୍‌ଟା ଆପଣ ଜିତି ପାରିବେ କି ନାହିଁ କହନ୍ତୁ ।

ନବ—କି ଆଶ୍ଚର୍ଯ୍ୟ କଥା ! କେଶ୍‌ଟା କାଲି ହାତକୁ ଆସିଲା—ଜିତିବୁ କି ହାରିବୁ—ଆଜି ମୁଁ କହିଦେବି ?

ମୀରା—କହି ପାରିବେ ନାହିଁ ତ ଏତେ ବ୍ୟସ୍ତ ହୋଇ ଲେଖାଲେଖି କଣ କରୁଚନ୍ତି ?

ନବ—ଆଚ୍ଛା ମୀରା ଦେଈ ! ବାପାଙ୍କ ଜେରା ସହି ପାରିଲ ନାହିଁ ବୋଲି ଏଠିକି ପଳେଇ ଆସିଲି । ଏଠି ତମେ ଆସି ଜେରା ଉପରେ ଜେରା ଆରମ୍ଭ କରି ଦଉଚ ? ଏଣେ ଅର୍ଜିଟା ପରା—

ମୀରା—ଏମିତି ପଚିଶ ବର୍ଷ ହେଲା ଏଠି ଅର୍ଜି ଲେଖି ଆସୁଛନ୍ତି । ଆଉ ଆଜି ଗୋଟାଏ କେଶ୍ କଥା ପଚାରିଲୁ—କଣ ନା, ମୁଁ ଜେରା କରୁଚ ! କଟକ ସହରରେ ବର୍ତ୍ତମାନ ମାଛ ବଜାରର ଅବସ୍ଥା ଆପଣଙ୍କୁ ମାଲୁମ ଅଛି ? କାଲି ବରଫ ମିଳିଲା ନାହିଁ ବୋଲି ସେର ତିନି ଟଙ୍କାରେ ମିଳିଥିଲା । ଆଜି

ବଜାରକୁ ଯେମିତି ବରଫ ଆସିଚ – ମାଛ ସେର ସାଙ୍ଗେ ସାଙ୍ଗେ ସାଢ଼େ ଚାରି ପାଞ୍ଚ । ଏ ଖବର ଆପଣ ରଖନ୍ତି ?

ନବ—କେଶ୍ ଜତିଲେ ମହାକାଲ ମାଛ ପଠେଇବ ବୋଲି ଆଶା କରିଚ ଦେଇ ?

ମୀରା—ନିଶ୍ଚୟ ।

ନବ—ସେ ଆଶା ତେବେ ମନରୁ ପୋଛିଦିଅ ।

ମୀରା—କାହିଁକି ? ଆପଣ ତା'ହେଲେ କେଶ୍‌ଟା ଜିତି ପାରିବେ ନାହିଁ ?

ନବ—ବାରବର୍ଷ ତଳେ ଏଇ ପୋଖରୀର ମାଛ ପାଇଁ ବାଘା ପ୍ରତିବାଘାଙ୍କ ଭିତରେ ମାଡ଼ପିଟ ହେଲା । ଫଳରେ କେହି ମାଛ ମାରି ପାରିଲେ ନାହିଁ । ତା'ପରେ ଗଲା ଏଗାର ବର୍ଷ ଧରି ବାଘା ଆଉ ପ୍ରତିବାଘା, ଆଉ ମାଛର ଆଶା ନରଖି ଶହ ଶହ ଟଙ୍କା ଖର୍ଚ୍ଚ କରି ପୋଖରୀଟିକୁ ଏଡ଼େ ସୁନ୍ଦର ପୋତି ଦେଇଛନ୍ତି ଯେ ଏଇ ଶ୍ରାବଣ ମାସରେ ବି ପୋଖରୀରେ ଆଣ୍ଠୁଏ ପାଣି ରହିବାର ଉପାୟ ନାହିଁ । ଆମେ କେଶ୍ ଜିତିଲେ ବି ମାଛ ଦବ କିଏ ?

ମୀରା—ବାପାଙ୍କୁ ଆଉ କେଶ୍ ମିଳିଲା ନାହିଁ ଯେ ଏଇ କେଶ୍‌ଟାକୁ ହାତକୁ ଆଣିଚନ୍ତି ? ବାପା କାହାନ୍ତି ? ଅଫିସ୍ ଘରେ ଅଛନ୍ତି ତ ?

ନବ—ହେଲେ ତମେ ସେଠିକି ଯାଅ ନାହିଁ ଦେଇ ।

ମୀରା—କାହିଁକି ?

ନବ—ଜେରା ।

ମୀରା—କଣ ? ବାପା ମତେ ଜେରା କରିବେ ?

ନବ—ଆଜି କଣ ଖଣ୍ଡେ ଦ'ଖଣ୍ଡ ନୂଆ ବହି ଆସିଚ ଯେ, ତାକୁଇ ଘଣ୍ଟାଏ ହେଲା ଧରି ବସିଚନ୍ତି ।

ମୀରା—ନୂଆବନ୍ଧୁ ! ଯେଉଁ ଡିଟେକ୍‌ଟିଭ୍ ଉପନ୍ୟାସ ଦ'ଖଣ୍ଡ ମଗା ହୋଇଥିଲା—ସେ ବନ୍ଧୁ ନୁହେଁତ, (ଡାକିଲା) ଭାଇ ! ଭାଇ !

ନବ—ଆହା, ଭାଇଙ୍କୁ ପୁଣି ଡାକୁଚ କାହିଁକି ? (ମୀରା କାନ୍ଥ ନକାନ୍ଥ ଅଫିସ୍ ଘରକୁ ଗଲା) ମୀରାଦେଈ ! ତେମେ ବି ଯାଉଚ ? ଯାଅ ମୋର କଣ ଅଛି ?

(ଟିକିଏ ପରେ ଆସିଲା ଅଜୟ)

ଅଜୟ—ମୀରା-ମୀରା ! ଆରେ ନବଘନ ବାବୁ ! ଆପଣ ଏଠି କଣ କରୁଚନ୍ତି ? ମୀରା ମତେ ଡାକୁଥିଲା ?

ନବ ଡାକୁଥିଲେ ନା କଣ ?

ଅଜୟ—ସେ ଡାକିଲା ବେଳେ ଆପଣ ଏଠି ଥିଲେ ତ ?

ନବ—ମୁଁ ତ ଥିଲି, ହେଲେ··· ··

ଅଜୟ—"ହେଲେ" ?

ନବ—(ଅସହାୟ ହୋଇ) ନାଇଁ, ଆଉ "ହେଲେ" କଣ ? ମୀରାଦେଈ ତୁମକୁ ଡାକୁଥିଲେ ।

ଅଜୟ—ମୀରା କାଇଁ ଗଲା ?

ନବ—ବାବୁଙ୍କ ପାଖକୁ ଗଲେଣି ।

ଅଜୟ—ବାପାଙ୍କ ପାଖକୁ ? ବାପାଙ୍କ ଅଫିସ୍ କାମ କ'ଣ ସରିଲାଣି ?

ନବ—କି କଥା ତୁମେ କହୁଛ ଅଜୟବାବୁ ? ପିଲାଦିନୁ ତମେ ଦେଖି ଆସୁଚ—ଯେତେବେଳଯାଏ ମୁଁ ଅଛି, ସେତେବେଳ-ଯାଏ ଅଫିସ୍ ଚାଲିଚ ।······ଅଫିସ୍ କାମ ସରିଲା ବୋଲି କହୁଚ କେମିତି ?

ଅଜୟ—ମାନିଲି । ଆଉ, ପିଲାଦିନୁଁ ଏ କଥା ବି ଦେଖି ଆସୁଚି ଯେ, ଯେତେବେଳ ଯାଏ ଅଫିସ୍ ଚାଲିଚ, ସେତେବେଳ

ଯାଏ ଅଫିସ୍‌ଘରେ ଆମ ସମସ୍ତଙ୍କର ପ୍ରବେଶ ନିଷେଧ । ମୀରା
ତାହେଲେ ବର୍ତ୍ତମାନ ଗଲା କମିତି ?

ନବ—ତା'ର ଜବାବ୍ ଅଜୁବାବୁ, ମୁଁ ଦେବି ?

ଅଜୟ—ଆଉ ଆପଣ କହୁଚନ୍ତି—ଏକଥା ମୁଁ ଯାଇ ବାପାଙ୍କୁ ପଚାରିବ ?

ନବ—ବୁଝିଲ ଅଜୁବାବୁ – ତମେ ଡାକ୍ତରୀ ପଢ଼ୁଚ । ମୋ ବୁଦ୍ଧି-ବିଦ୍ୟାରୁ ମୁଁ ଜାଣେ ଯେ ଡାକ୍ତରୀ ପଢ଼ି କେହି କେବେ ଉକିଲ ହୁଏନାହିଁ । ଆଉ ଡାକ୍ତରମାନେ ତ ଚୁପ୍‌ଚାପ୍ କାମ କରନ୍ତି—ପାଟିତୁଣ୍ଡ କରନ୍ତି ନାହିଁ କହିଲେ ଚଳେ । ତମେ କାହିଁକି ଏସବୁ ଜେରା ଜବାବ୍ ସୁଆଲ୍ ଆଡ଼କୁ ଟାଣି ହେଇଯାଉଚ କହିଲ ?

ଅଜୟ—ବୋଉ କାହିଁଗଲା ?

ନବ—ବୋଉ କୁଆଡ଼େ ଗଲେ ମୁଁ ଯଦି କହିବ ନା, ତମେ ଏଇନେ ମତେ ଏକାବେଳକେ ଦୌରା କୋର୍ଟ ଆସାମୀଙ୍କ ଭଳି ଜେରା ଆରମ୍ଭ କରିଦେବ । ମୁଁ କହିବି ନାହିଁ ।

ଅଜୟ—ବୁଝିଲି । ବୋଉ ମଧ୍ୟ ସେଇଠିକି ଯାଇଚି ।

(ନିଜେ ଗଲା)

ନବ—ଅଜୟବାବୁ, ଅଜୟବାବୁ ! ବାସ୍ ! ଇଏ ବି ଚଳେ ! ଯାହା ଜଣାଗଲାଣି, ଆଜି ଏକାବେଳକେ ହାଇକୋର୍ଟ ଫୁଲ୍ ବେଞ୍ଚ୍ ବସିବ ।

( ନିଜେ ନଥିପତ୍ର ଧରି ଯିବାକୁ ବାହାରିଲେ )



# ତୃତୀୟ ଦୃଶ୍ୟ

[ ଅଫିସ୍ ଘର । ଗଣେଶ୍ୱର ପୂର୍ବପରି ନିବିଷ୍ଟ ମନରେ ବହି ପଢ଼ୁଛନ୍ତି । ସାମନାରେ ତିନୋଟି ଚୌକିରେ ବସିଛନ୍ତି ପାର୍ବତୀ, ମୀରା ଓ ଅଜୟ । ସମସ୍ତେ ଚୁପ୍‌ଚାପ୍ । ଏମିତି ଭାବରେ ଏଠି ବସି ରହିବାର କାରଣ ଜାଣିବା ପାଇଁ ମୀରା ଓ ଅଜୟ ଇଙ୍ଗିତରେ ପାର୍ବତୀଙ୍କୁ ପଚାରିଲେ । ପାର୍ବତୀ ସେଇପରି ଇଙ୍ଗିତରେ ଜଣାଇଦେଲେ ଯେ ସେମାନେ ଚୁପ୍ ହୋଇ ବସି ରୁହନ୍ତୁ । ଗଣେଶ୍ୱର ମୁହଁ ସାମନାରେ ବହି ଧରି ପଢ଼ୁ ଥିବାରୁ ଏମାନଙ୍କୁ ଦେଖିପାରୁ ନଥାନ୍ତି । କିଛି ସମୟ ପରେ ପାର୍ବତୀ ଗଳାଖଙ୍କାରି ସ୍ୱାମୀଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କଲେ । କିଛି ଲାଭ ହେଲାନି । ପାର୍ବତୀ ବାରମ୍ବାର ଗଳା ଖଙ୍କାରିବାକୁ ଲାଗିଲେ । ମୀରା ଓ ଅଜୟ ମଧ୍ୟ ତାଙ୍କ ସହିତ ଯୋଗ ଦେଲେ ]

ଗଣେ—(ବହି ଉପରୁ ଆଖି ନ ଉଠାଇ) କୁହନ୍ତୁ, ଆପଣମାନଙ୍କର କ'ଣ ଦରକାର ?

[ ମୀରା ଓ ଅଜୟ ହସି ଉଠିଲେ ]

ଗଣେ—ହସିଲେ କାହିଁକି ? (ବହି ବନ୍ଦକରି) ଆରେ ! ତମେମାନେ !! ଏଠି କ'ଣ କରୁଚ ?

ପାର୍ବତୀ—ଆମେମାନେ କିଏ ଚିହ୍ନିଲ, ନା ଏବେ ବି ଚିହ୍ନି ପାରିନ ?

ଗଣେ—ଚିହ୍ନି ପାରୁନି ମାନେ ? ଦେଖୁଚ ତ ଖୁବ୍ ମନଯୋଗ ଦେଇ ବହିଟା ପଢ଼ୁଥିଲି ।

ପାର୍ବତୀ—ବହି ପଢ଼ୁଥିଲ ବୋଲି ନିଜ ପୁଅ ଝିଅଙ୍କୁ ସେଇ ଓକିଲିଆ ଢଙ୍ଗରେ ପଚାରିବ—"ଆପଣମାନଙ୍କର କ'ଣ ଦରକାର ?"

ଗଣେ - କହୁଚପରା—ମୁଁ ବହିଟା ଉପରୁ ମୋଟେ ଆଖି ଉଠାଇନି, ସେଥିପାଇଁ କିଏ ଆସି ବସିଲା ମୋର ଆଦୌ ଲକ୍ଷ୍ୟ ନାହିଁ ।

ପାର୍ବତୀ—କାହିଁକି ? କି ବହି ଏମିତି ପଢ଼ାହେଉଥିଲା ଯେ ତମର କୁଆଡ଼କୁ ଲକ୍ଷ୍ୟ ରହୁନି ?

ଗଣେ—ବୁଝିଲ ପାର୍ବତୀ, ବହିପଢ଼ା ବିଷୟରେ ତମର କୌଣସି ପ୍ରଶ୍ନ ନ ଉଠାଇବା ହିଁ ଭଲ ।

ପାର୍ବତୀ—ଜାଣିଚମ ସବୁ । ଏ ଘରକୁ ବୋହୂ ହେଇ ଆସିଲା ଦିନ ଦେଖିଚି ସଂପତ୍ତି ଭିତରେ ଥିଲା ଖାଲି ଥାକ ଥାକ ବହି । ଯୁଆଡ଼କୁ ଚାହିଁବ ଖାଲି ବହି ଗଦା ।

ଗଣେ—ତମ ମତରେ ତା'ହେଲେ ହେଇଟା ଗୋଟାଏ ମୋର ଦୁର୍ଗୁଣ ?

ପାର୍ବତୀ—ତମ ବହି ପଢ଼ା ସଇଲାକି ନାହିଁ କହିବଟି ।

ମୀରା—ଯୋଉ ଡିଟେକ୍‌ଟିଭ୍ ଉପନ୍ୟାସ ଦି'ଖଣ୍ଡ ମଗା ହେଇଥିଲା ସେଇ ବହି ଆସିଚି ବାପା ?

ପାର୍ବତୀ—ତୋତେ ଲଜ ନାଇଁଲୋ ଝିଅ ! ଇଏ ପୁଣି ଉପନ୍ୟାସ ପଢ଼ିବେ ? ସେଇ ଆଇନ୍ ବହି ।

ଗଣେ—ଅଜୁ, ମୀରା ! ଶୁଣୁଚ ତମ ବୋଉଙ୍କ ବୁଦ୍ଧି ! ପଚିଶ ବର୍ଷର ଓକିଲ ମୁଁ—ମୋର ପୁଣି ଆଇନ୍ ବହି ପଢ଼ିବା ଅନ୍ୟାୟ !!

ପାର୍ବତୀ—ମୁଁ ପଚାରୁଚି ପରା—ତମ ପଢ଼ା ସଇଲା ?

ଗଣେ—ଆଖି ଆଗରେ ତ ଦେଖୁଚ ବହିଟାକୁ ବନ୍ଦକରି ଏଠି ରଖିଲଣି । ଆଉ ପଚାରୁଚ କ'ଣ ?

ପାର୍ବତୀ—ତାହାହେଲେ କହିବ ?

ଗଣେ—ଓଃ ! କହିବାର କିଛି ଗୋଟାଏ ଅଛି ବୋଲି ମା', ପୁଅ, ଝିଅ ତିନହେଁ —

ମୀରା—ନାଇଁ ବାପା—

ପାବଣ୍ଡ—କ'ଣ ନାହିଁ ବାପା ? ତୋତେ କିଏ କହୁଥିବାକୁ କହୁଚ ?
ତୁ ତୁନିହୋଇ ବସ ।

ଗଣେ—ଓଡ଼ିଶାର ଝିଅ ସେ—କେବେ ତୁନି ହୋଇ ବସି ପାରିବ ନାହିଁ ।

ପାବଣ୍ଡ—ଆଉ ମୁଁ ତୁନିହୋଇ ବସିବି ?

ଗଣେ—ମୁଁ କହୁଚି ସେ କଥା ? ତମ ଭଳି ଲୋକ ଯେ ଏତେବେଳ ଯାଏ ଏଠି କେମିତି ତୁନିହୋଇ ବସି ରହିଥିଲ ସେ କଥା ଭାବି ମୁଁ ଆଶ୍ଚର୍ଯ୍ୟ ହଉଚି !

ପାବଣ୍ଡ—ବସିବି ନାହିଁ ? ତମରି ପରା ଏଠି ହୁକୁମ ଜାରି ହୋଇଚି, ଅଫିସ୍ ଘରେ କାମ କରୁଥିଲା ବେଳେ କେହି ଏଠିକି ଆସିବେ ନାହିଁ ।

ଗଣେ—ଓ, ସେଇଥିପାଇଁ ତା'ହେଲେ ତୁମେ ଏଠିକି ଆସି ମଧ୍ୟ ନ ଆସିବାର ଅଭିନୟ କରି ତୁନିହୋଇ ବସି ରହିଚ ? ଆଉ ମୀରା ?

ମୀରା—ମୁଁ ଆସି ଦେଖିଲି ବୋଉ ଏଠି ଚୁପଚାପ ବସିଚି । ମୁଁ ଆଉ କରନ୍ତି କ'ଣ ? ତା' ପାଖରେ ତୁନିହୋଇ ବସିଲି ।

ଗଣେ—ଆଉ ଅଜୟ ?

ଅଜୟ—ବୋଉ ଆଉ ମୀରା ଦୁହେଁ ଯେତେବେଳେ ଏଠି ବସିଥିଲେ —

ଗଣେ—ତୋର ଏଠୁ ଚାଲିଯିବାଟା ବାସ୍ତବିକ ଅନ୍ୟାୟ ହୋଇଥାନ୍ତା ! !

ପାବଣ୍ଡ—ହୋଇଛି, ତମର ସେ କଚେରିଆ ଢଙ୍ଗ ଛାଡ଼ । ନ ହେଲେ ଆମେ ଏଠୁ ଯାଉଚୁ । ଆଲୋ ମୀରା ! (ଯିବାକୁ ଉଦ୍ୟତ ହେଲେ)

ଗଣେ—ଆରେ ନା, ନା, ପାବଣ୍ଡ, ଯାଅନାହିଁ ବସ । ତିରିଶ ବର୍ଷ

ହେଲ୍ ଏ ଅଫିସଘରେ ଏକାଏକା ରାତି ବାରଟା ଗୋଟାଏ ବାଜିଚ । ଆଜ ଏବେ ଆମର ଗ୍ରେଟ ପରିବାରଟିକୁ ନେଇ ଅଫିସ୍ ବସୁ । ହଁ କହୁବଟି କ'ଣ କହୁଥିଲ ?

ପାର୍ବତୀ—କାଲି ଶୁକ୍ରବାର ଛୁଟି—ତମ କଚେରୀ ବନ୍ଦ ।

ଗଣେ—ହୁଁ ।

ପାର୍ବତୀ—ଶନିବାରିଆ କଚେରୀ ତ କଚେରୀରେ ଗଣାନୁହେଁ ।

ଗଣେ—ସ୍ୱୀକାର କଲି ।

ପାର୍ବତୀ—ତା ଆରଦିନ ରବିବାର । ଖାଲି ସୋମବାର ନେଇ କଥା । ସୋମବାର କଚେରୀ ବନ୍ଦ କରିବାକୁ ମୁଁ କହନ୍ତି ନାହିଁ ଯେ, ଶୁକ୍ରବାର ଯାଇ ରବିବାର ଫେରିଲେ ତିନିଦିନ ହଉଚି । ତିନି ଦିନରେ କେହି ଘରକୁ ଫେରନ୍ତି ନାହିଁ । ସୋମବାର ରହିଯାଇ ମଙ୍ଗଳବାର ଫେରିବା । ଗୋକୁଳ ବାବୁଙ୍କୁ କହିଲେ ସେ ତମ ସୋମବାର କଚେରୀଟା ଚଳେଇ ନିଅନ୍ତେ ।

ଗଣେ—ହୁଁ ! ଆମ ଓକିଲମାନଙ୍କର ଗୋଟାଏ ସାଧାରଣ ନିୟମ ଅଛି—ଗୋଟାଏ ମକଦ୍ଦମାର ଜେରା କି ଜବାବସୁଆଲ ମିଶଲ୍ ଉପରେ ପ୍ରଥମେ କେମିତି ଆରମ୍ଭ କରିବାକୁ ହବ, ବହୁ ଆଲୋଚନା ଗବେଷଣା କରି ସେଇ କଥାଟାକୁହିଁ ସବାଶେଷରେ ନିଷ୍ପତ୍ତି କରୁ ।

ପାର୍ବତୀ—ପୁଣି ସେଇ ମକଦ୍ଦମା କଥା ?

ଗଣେ—କିନ୍ତୁ ତମେ ଯେ ଆରମ୍ଭଟାକୁ ସଂପୂର୍ଣ୍ଣ ବାଦ୍‌ଦେଇ ଏକାବେଳକେ ଶେଷରୁ ଆରମ୍ଭ କରିଦେଲ ! ଗୃହିଦିନର ପ୍ରୋଗ୍ରାମ୍ ତ ହେଲା—କିନ୍ତୁ ଯିବ କୋଉଠିକି ?

ପାର୍ବତୀ—ପୋଡ଼ଯାଉ ମୋ ମନ ! ଆଉ କୁଆଡ଼େ ନୁହେଁ—ଟିକିଏ ପୁରୀ ଯିବାକୁ କହୁଥିଲି ।

ଗଣେ—ଏଇ ପୁରୀ ଯିବାକୁ ଏତେ ଭୂମିକା ?

ପାର୍ବତୀ—ସତେ ଯେମିତି ପାଚି ଫିଟିଲେ ଦିଲ୍ଲୀ କଲିକତା ନେଇ ବୁଲେଇ ଆଣିବେ !!

ଗଣେ—କିନ୍ତୁ ଏ ଅଦିନଟାରେ ପୁରୀ ଯିବାର ଖିଆଲ ତମର ହେଲା କାହିଁକି ?

ପାର୍ବତୀ—ତମ ପାଖରେ ପୁଣି ଦିନ ଅଦିନ କ'ଣ ? ଖରା ଛୁଟିଟା ସାରା ତ ଏଥର ଗାଁରେ କଟିଗଲା ! ରଥ ବେଳକୁ ଏତେ କରି କହିଲି, ଯାଇପାରିଲେ ନାହିଁ ।

ଗଣେ—ସେଇ କ୍ଷତିପୂରଣଟା ତା'ହେଲେ ଦି'ଦିନ କଲେଜ ବନ୍ଦ-କରି ମତେ ଦବାକୁ ପଡ଼ିବ ?

ପାର୍ବତୀ—ଦି'ଦିନ କଲେଜ ବନ୍ଦ କାହିଁକି ? ଶନିବାର ତ ଶନିବାର ! ଖାଲି ଯାହା ସୋମବାର । ସେଦିନ ଗୋକୁଳ ବାବୁଙ୍କୁ କହିଲେ ଚଳେଇ ନେବେ ନାହିଁ ?

ଗଣେ—କିନ୍ତୁ ଠଙ୍କାଟା ତ ମୋ ପକେଟକୁ ଆସିବ ନାହିଁ !

ମୀରା—ନାଇଁ ବାପା, ଚାଲ । ଅନେକ ଦିନୁ ପୁରୀ ଯାଇନୁ—ଡେପୁଟି ଶାମବାବୁଙ୍କ ଝିଅ ମାଧବୀ, ମୋର ସାଙ୍ଗ । ସେ ଏଇନେ ପୁରୀରେ ଅଛି ।

ଗଣେ—ହଁ, ଅନେକ ଦିନୁ ଦେଖାସାକ୍ଷାତ ହେଇନି—ପୁରୀଯିବା ପାଇଁ ସେ ଚିଠି ଉପରେ ଚିଠି ଲେଖୁଚି—ଏଇଆ ନା ?

ମୀରା—ହଁ ।

ଗଣେ—ଆଉ ଅଜୟ ବାବୁ ତମର ?

ଅଜୟ—ମୋର ? ମୋର ଅବଶ୍ୟ କଲେଜ୍ ମାରିକରି ଯିବାର ଇଚ୍ଛା ନାହିଁ । ତେବେ—

ଗଣେ—ତେବେ !

ଅଜୟ—କଲିକତାର ମୋର ଜଣେ ବନ୍ଧୁ—ଏଇ ରବିବାର ସେମାନେ ସମସ୍ତେ ପୁରୀ ଆସୁଛନ୍ତି ।

ଗଣେ—ହୁଁ । କଟକ ଷ୍ଟେସନ୍‌ରେ ମାତ୍ର କେତେ ମିନିଟ୍‌ପାଇଁ ଦେଖା କରିବା ଅପେକ୍ଷା ପୁରୀ ଯାଇ ଦିନେ ଅଧେ ବନ୍ଧୁ ମେଳରେ କଟାଇ ଦେବା ଉଚିତ ହେବ ବୋଧହୁଏ ?

ପାର୍ବତୀ—ପୁଣି ସେଇ ଢଙ୍ଗ ବାହାରିଲା ? ତୁଆ ଦି'ଟାଙ୍କ ମନହେଉଛି ସେ ଯିବେ ବୋଲି କହୁଚନ୍ତି । ଗୁରେଇ ତୁରେଇ ଏତେ ତାଙ୍କୁ ପଚାରୁଚ କଣ ?

[ ଏ ମଧ୍ୟରେ ଗଣେଶ୍ୱରଙ୍କ ଅଲକ୍ଷ୍ୟରେ ନବଘନ ଏ ଘରକୁ ଆସି ପଛପଟ ର୍‍ୟାକ୍‌ରେ ଥିବା ନଥିପତ୍ର ଦେଖାଦେଖି କରୁଥାନ୍ତି ]

ଗଣେ— (ଡାକଲେ) ନବଘନ କୁଆଡ଼େ ଗଲ ? ନବଘନ !

ନବ—ମୁଁ ଏଇଠି ଅଛି ଆଜ୍ଞା ।

ଗଣେ—ତୁମକୁ ପରା ମୁଁ କହିଥିଲି ସେ ପାଖରେ ଯାଇ କାମ କରିବାକୁ ?

ନବ—ଯାଇଥିଲି ଆଜ୍ଞା ।

ଗଣେ—କାମ ହେଉଛି ?

ନବ—ନା ।

ଗଣେ—ହେଇ ନାହିଁ ତ ଏ ଘରକୁ ଆସିଲ କାହିଁକି ?

ନବ—ମୁଁ ଦେଖିଲି—ଏ ଘରକୁ ମା ଆସିଲେ—ତାଙ୍କ ପଛେ ପଛେ ମୀରା ଦେଈ—ତା'ପରେ ଆସିଲେ ଅଜୟ ବାବୁ—

ଗଣେ—ଆଉ ତାଙ୍କ ପଛେ ପଛେ ତମେ ନ ଆସିଲେ ଏଠିକା ଆଲୋଚନା ସବୁଟା ଅପୂର୍ଣ୍ଣ ରହିଯିବ ବୋଲି ତମର ଧାରଣା ହେଲା, ନା ?

ନବ—ଆଜ୍ଞା, ସମସ୍ତେ ଯେତେବେଳେ ଏଠିକି ଆସିଲେ—ମୁଁ ବୁଝିଲି ଆପଣଙ୍କ ପଢ଼ା ଶେଷ ହୋଇ ପାରିବ ନାହିଁ କି ଅଜି ତଆର କରିବାକୁ ଆପଣଙ୍କୁ ଆଜ ବେଳ ହବ ନାହିଁ ।

ଗଣେ—ହୁଁ ! ଏଠ ଆସି ତା'ହେଲେ କରୁଥିଲ କ'ଣ ?

ନବ—ସୋମବାରଦିନ ଆମର ଯୋଉ କେଶ୍ ଗୁରୁକ ଗୋକୁଳବାବୁ ତଦ୍‌ବିର୍ କରିବେ, ସେଇ ନଥି ଗୁରୁକ ବାଛି ଅଲଗା ରଖୁଥିଲି । କାଲି ନେଇ ଗୋକୁଳ ବାବୁଙ୍କୁ ଦେଇଦେବି ।

ଗଣେ—ନବଘନ ବାବୁ !!

ନବ—ସାର୍ ।

ଗଣେ—ଗୋକୁଳ ବାବୁଙ୍କୁ ନଥି ଦବାକୁ ମୁଁ କହିଥିଲି ?

ପାବଣ—ନବଘନ ବାବୁଙ୍କୁ ନକହି ଯାହା କହିବାର କଥା ମତେ କହନ୍ତୁ ? ଗୋକୁଳବାବୁ ମକଦ୍ଦମା ତଦ୍‌ବିର କରିବା କଥାତ ମୁଁ କହିଥିଲି । ପିଲାମାନେ ମନଖୁସିରେ ବାହାରିଚନ୍ତି—ଯିବତ ଯିବ ନଯିବନାହିଁ । ଏମିତି ଚଢ଼ି ଚଢ଼ି ହଉଚ କାହିଁକି ? ଜୀବନ ସାରିତ ଘରେ ବାହାରେ ସବୁଠି କଚେରି କଚେରି ହୋଇ ଦିନ କଟିଲା । ଆଉ କାହା କଥା ପଚାରେ କିଏ ? ନିଜର ପୁଅଝିଅ ହ'ଟା କେବେ କଣ ଖାଇଲେ ପିନ୍ଧିଲେ, ପଢ଼ିଲେ, ନପଢ଼ିଲେ, ସେ କଥା ବୁଝିବାକୁ ଭଲା ତମର ବେଳ ଥାଏ ? ଓକିଲାତି କରି ନାଁତ କମେଇଚ—ପଇସାତ ରୋଜଗାର କରିଚ ! ଗୋଟିଏ ଦିନ କଚେରି ମାରି ହୋଇଗଲା ବୋଲି—

ଗଣେ—ଗୋଟାଏ ଅତି ଶ୍ରେଷ୍ଠକଥା କହିବ ପାବଣ ?

ପାବଣ—ବଡ଼କଥା ଶୁଣି ତ ପେଟ ପୂରିଗଲାଣି—ଆଉ, ଶ୍ରେଷ୍ଠ କଥା ଶୁଣିବି !!

ଗଣେ—ଘରର ଗୃହିଣୀ ଗୃହକର୍ତ୍ତାଙ୍କୁ ବକ୍ତୃତା ଶୁଣେଇ ଏ ଘଣ୍ଟା ଦଶଟା ବେଳେ ଉପଦେଶ ଦେବା ଅପେକ୍ଷା—ଟିକେ ରନ୍ଧନଶାଳାର ବ୍ୟବସ୍ଥା ଉପରେ ଟିକଏ ଦୃଷ୍ଟିଦେଲେ ବୋଧହୁଏ ଅବସ୍ଥାଟା ପ୍ରୀତିକର ହୁଅନ୍ତା !

ପାର୍ବତୀ—ସେ ଅବସ୍ଥା କଥା ତମକୁ ଭାବିବାକୁ କହୁନି । ତିନି ତିନିଟା ପୁଅଝିଅ ଗୃହର ରହି ତ କାଳକ ସେଇ ରୋଷେଇ ଘରେ କଟିଲା ! ଆଉ ଆଜ ଏମିତି ମୋର ବେଳ ବଳ ପଡ଼ିଲା ଯେ ମୁଁ ଯୁଆଙ୍କୁ ବକ୍ତୃତା ଶୁଣେଇବାକୁ ଆସିଚ ! ! ଆ'ଲୋ ମୀର—ଆ' ଅଜ୍ଞ । (ଯିବାକୁ ଉଦ୍ୟତ ହେଲେ)

ଗଣେ - ନବଘନ !

ନବ—ଆଜ୍ଞା ।

ଗଣେ—ଖାଲି ସୋମବାର ନୁହେଁ—ଶନିବାର ସୋମବାର ଦୁ'-ଦିନରେ ଯେତେ କେଶ୍ ଅଛି, ସେ ସବୁର ନଥି ନେଇ ଆଜ ଏଇକ୍ଷିଣା ଗୋକୁଳ ବାବୁଙ୍କ ଜିମା କରିଦେଇ ଆସ । ଆଉ ମକଦ୍ଦମା ଦିନ ତାଙ୍କ ପାଖେ ପାଖେ ରହି ତମେ ନିଜେ ସବୁ ତଦ୍‌ବିର କରିବ । ପକ୍ଷମାନେ ଯେମିତି ହଇରାଣ ନହୁଅନ୍ତି— ବୁଝିଲ ?

ନବ—ଆଜ୍ଞା ।

ଗଣେ—ବେଶ୍ । ଯାଅ ( ନିଜେ ପାଖ ଘରକୁ ଉଠିଗଲେ)

ନବ—(ଖୁସି ହୋଇ) ଶୁଣିଲେ ତ ମା ! ବାବୁଙ୍କ ରାୟ ଶୁଣିଲେ ତ ?

ପାର୍ବତୀ—ରାୟ ?

ନବ—ଆପଣଙ୍କ ଓକିଲିଆ ଢଙ୍ଗର ଜବାବ୍‌ସୁଆଲ୍ ଶୁଣି ବାବୁଙ୍କ କଲମ ଆପଣଙ୍କ ଆଡ଼କୁ ଚାଲିଗଲା ! ରାୟ ଶୁଣାଇ ଦେଲେ— ଆପଣଙ୍କର 'ଡିଗ୍ରୀ ! !

ମୀରା—ଆପଣଙ୍କୁ ଗୋଟାଏ କଥା ପଚାରିଲେ, ଜେରା କରାହେଉଚି ବୋଲି ପରା ଆପଣ ନିଜେ ଏଇନେ ଅଭିଯୋଗ କରୁଥିଲେ ? ଏଇନେ ଏସବୁ କ'ଣ କହୁଚନ୍ତି ? ଜବାବ ସୁଆଲ, ଡ଼ିଗ୍ରୀ, ରାପ୍ଟ—ଏଗୁଡ଼ିକ 'ନ କହିଲେ କ'ଣ ଆପଣ କଥା କହି ପାରିବେ ନାହିଁ ?

ନବ – ସତ କହିଲି ମୀରା ଦେଈ—ବାବୁ ଯେମିତି ହାକିମଙ୍କ ଭଳି ମୁହଁକୁ ଗମ୍ଭୀର କରି ବସିଥାନ୍ତି ଆଉ ମା' ଯେମିତି ଓକିଲଙ୍କ ଭଳି ଟେବୁଲ୍ ଉପରକୁ ଝୁଙ୍କି ପଡ଼ି କଥା କହୁଥାନ୍ତି—

[ସମସ୍ତେ ହସି ଉଠିଲେ]

ଅଜୟ—ଆଚ୍ଛା ବୋଉ, ଆମେ କେହି କିଛି ଜାଣୁନା—ତୁ ବାପାଙ୍କ ପାଖରେ ହଠାତ୍ ଯେମିତି ପୁରୀ ଯିବା କଥାଟା ଆରମ୍ଭ କରି-ଦେଲୁ—

ମୀରା—ସତେ ମ ବୋଉ—ମୁଁ ଆସିଥିଲି ମୋ ବିହାକଥା ପଚାରିବାକୁ—

ଅଜୟ—ମୋର କିଛି କାମ ନାହିଁ—ଖାଲି ତମ ଦୁହିଁଙ୍କୁ ଦେଖି ମୁଁ ଏଠି ବସିପଡ଼ିଲି ।

ମୀରା—ଆଉ ତୁ—ଆମକୁ କୁହାନାହିଁ, ବୋଲାନାହିଁ—ପୁରୀଯିବା କଥାଟା ଆରମ୍ଭ କରିଦେଲୁ ! !

ପାର୍ବତୀ—କାଇଁକି ? ମୁଁ କ'ଣ ଜଜ୍ ହାକିମଙ୍କ ପାଖରେ ଆସାମୀଙ୍କ ଭଳି ଜମାନବନ୍ଦୀ ଦଉଥିଲି କି ?

ଅଜୟ—ଓଃ ! ! ତୁ ବି ସେଇ ଜଜ୍ ହାକିମ ଓକିଲ ଆସାମୀଙ୍କ କଥା ଉଠେଇଲୁ ?

ମୀରା—କାଲି ସକାଳୁ ଆମେ ଯିବା ତ ବୋଉ ?

ପାର୍ବତୀ—ହଁ ।

ଅଜୟ—ବାପା ବୋଧହୁଏ କାର୍ ନେଇ ଯିବାକୁ କହିବେ । ହେଲେ ମୁଁ ଭାବୁଚ—ଆମେ ଟ୍ରେନରେ ଯିବା ।

ମୀରା—ନାଇଁ ଭାଇ ଟ୍ରେନରେ କିଛୁ ଠିକ୍‌ଠିକଣା ନାହିଁ—ଆମେ ଆମ କାର୍‌ରେ ଯିବା ।

ପାଟ୍ଟଣ—ଯୋଉଥିରେ ଯାଅ—କାଲି ଆଠଟା ବେଳକୁ ଯେମିତି ସବୁ ଠିକ୍‌ଠାକ୍ ହେଇଥିବ । ଆଜିଠୁ ଜିନିଷପତ୍ର ସବୁ ସଜାଡ଼ା ସଜାଡ଼ି କରିବ ଆସ ।

—*—

# ଚତୁର୍ଥ ଦୃଶ୍ୟ

( ପୁରୀ ସମୁଦ୍ର କୂଳରେ ଏକ ଘର । ଗଣେଶ୍ବର ବସିଚନ୍ତି—ପାଖରେ ପାର୍ବତୀ ) ।

ପାର୍ବତୀ—ପାଞ୍ଚଟା ବାଜିଲାଣି । ସମୁଦ୍ରକୂଳ ଆଡ଼େ ଟିକିଏ ବୁଲି ଆସିବାକୁ କହୁଥିଲ ପରା ! ସନ୍ଧ୍ୟାବେଳକୁ ପୁଣି ମନ୍ଦିରକୁ ଯିବନି ? କ'ଣ ଆଉ ବସି ଭାବୁଚ ମ·········

ଗଣେଶ—ଓକିଲାତି ବ୍ୟବସାୟ ସମ୍ବନ୍ଧରେ ବହୁ ଲୋକଙ୍କର ବହୁ ବିଚିତ୍ର ଧାରଣା ରହିଚି ।

ପାର୍ବତୀ—କଟକ ଗୁଡ଼ ପୁରୀ ଆସିଲ—ଏଠି ବି ସେଇ······

ଗଣେ—(ପାର୍ବତୀଙ୍କ କଥା ଉପରେ) କେହି କେହି କୁହନ୍ତି, ବାପ ଓକିଲ ହେଲେ ପୁଅ ବି ଓକିଲ ହୁଏ । କେତେକ କହନ୍ତି, ଶିକ୍ଷିତ ଯୁବକମାନେ ରୋଜଗାରର ଅନ୍ୟ ପନ୍ଥା ଖୋଜି ନ ପାଇ ଓକିଲାତିରେ ପଶନ୍ତି । ଆଉ, କେତେକଙ୍କର ଅଭିଯୋଗ ଯେ ପଇସା ରୋଜଗାର କରିବାକୁ ଓକିଲମାନଙ୍କୁ ବହୁ ଫନ୍ଦଫିକର କରିବାକୁ ପଡ଼େ ।

ପାର୍ବତୀ—ଏ ବେଳା ଘରେ ଜଳଖିଆ ହବ ନା ମନ୍ଦିରରୁ ମହାପ୍ରସାଦ-

ଗଣେ—(ପୂର୍ବପରି) କିନ୍ତୁ ମୁଁ ଅକାଟ୍ୟ ଯୁକ୍ତି ଦେଇ ପ୍ରମାଣ କରିଦେବି ଯେ, ଏ ସବୁ ଏକାବେଳକେ ମନଗଢ଼ା କଥା । ମଣିଷକୁ ଭଗବାନଙ୍କର ସର୍ବଶ୍ରେଷ୍ଠ ଦାନ ହେଲା—ବୁଦ୍ଧି । ଆଇନ୍ କାନୁନର ଗଣ୍ଡି ଭିତରେ ରହି ସେଇ ବୁଦ୍ଧି ବଳରେ ଓକିଲ ଅନ୍ୟକୁ ବଞ୍ଚାଏ ଆଉ ନିଜେ ବଞ୍ଚେ । ଆଖିରେ ସ୍ବାର୍ଥର ପରଳ ମାଡ଼ିଥାଏ ବୋଲି ଅନ୍ୟମାନେ ଯୋଉ ନିରାଟ ସତ-

କଥାକୁ ଦେଖି ସୁଦ୍ଧା ଦେଖି ପାରନ୍ତି ନାହିଁ, ଏକା ଓକିଲ ହିଁ ତାକୁ ସତ ବୋଲି ପ୍ରମାଣ କରି ଦେଇ ପାରେ ।

ପାର୍ବତୀ—ଏ ସବୁ କଥା ଏଠି ମତେ ନ କହିଲେ କ'ଣ ଚଳନ୍ତା ନାହିଁ ?

ଗଣେଶ—ତମକୁ କହୁଚି—କାରଣ କେବଳ ତମରି ପାଇଁ ଦ୍'ଦ୍'ଟା ତାରିଖର ସବୁ କେଶ୍ ମୁଁ ଛାଡ଼ି ଦେଇ ଆସିଚି । ମୋ ଜୀବନରେ କୌଣସି ମହକିଲ ମୋ ଉପରେ ଅସନ୍ତୁଷ୍ଟ ହେଇନି । ଅଥଚ ଆଜ—

ପାର୍ବତୀ—ଗୋକୁଳବାବୁ ତ ଏତେବଡ଼ ନାମଜାଦା ଓକିଲ—ପୁଣି ତମର ଅତି ବିଶ୍ୱାସୀ—

ଗଣେ—ଏ ନବଘନଟା ପାଇଁ ମୁଁ ଆଉରି ଚିନ୍ତିତ ହୋଇ ପଡ଼ିଚି । ଯଦି ପ୍ରକୃତିରେ ସେ ଆସିଥାଏ ! ! ମୀରା ତ କହୁଚି, ସେ ସାକ୍ଷୀଗୋପାଳ ସେପାଖରେ ଗୋଟାଏ ଲେଭେଲ୍ କ୍ରସିଂରେ ଦେଖିଚି ନବଘନ ଟ୍ରେନରେ ଆସୁଥିଲା !

ପାର୍ବତୀ—ତମେ ପାଗଳ ହେଲ ? ସେ ଆସିବେ କାହିଁକି ? ଯଦିବା ଆସିଥିବେ ସେଠି ସବୁ ବନ୍ଦୋବସ୍ତ କରି ନ ଥିବେ ! ତମେ ଆସ ।

ଗଣେ—ଅଜୟ ଆଉ ମୀରା କାହିଁ ଗଲେ ?

ପାର୍ବତୀ—ଦୁହେଁ ଦୁହିଙ୍କ ବନ୍ଧୁ ଘରକୁ ଯାଇଛନ୍ତି । ଏଇତ ଆସିଲେଣି । (ମୀରା ଓ ଅଜୟ ଆସିଲେ)

ମୀରା—ନାଇଁ ବୋଉ, ମାଧବୀ ଘରେ କେହି ନାହାନ୍ତି କି ସୋମବାର ପୂର୍ବରୁ ବୋଧହୁଏ କେହି ଫେରୁ ନାହାନ୍ତି ।

ଅଜୟ—ମୋର ବି ସେଇ ଅବସ୍ଥା । ଖବର ଯାହା ପାଇଲି ସେମାନେ ଆଜି ରବିବାର Express ରେ କଲିକତାରୁ ବାହାରି କାଲି ସୋମବାର ସକାଳେ ଏଠି ଆସି ପହଞ୍ଚିବେ···

ଗଣେ—ଅନ୍ୟ କଥାରେ ସୋମବାର ପୂର୍ବରୁ ତମ କାହାରି ଭାଗ୍ୟରେ ବନ୍ଧୁ-ମିଳନ ସମ୍ଭବ ହୋଇ ପାରୁନ।

ମୀରା—କୋଉଠି ଆଉ ହୋଇ ପାରୁଚ ! ······ନା କ'ଣ କହୁଚ ଭାଇ······

ଅଜୟ—ଅବସ୍ଥା ତ ସେଇଆ ହୋଇଚ। ସୋମବାରଟା ଏଠି ନ ରହିଲେ ଆମର ପୁରୀ ଆସିବାଟା ହିଁ ବୃଥା ହୋଇଯିବ।

ଗଣେ—ଶୁଣୁଚ ତ ପାର୍ବତୀ !

ପାର୍ବତୀ—କଟକରୁ ଏଯାଏଁ ତ ସେଇକଥା ଶୁଣି ଶୁଣି ଆସୁଚ। ତୀର୍ଥସ୍ଥାନକୁ ଆସିଚେ—ହ୍ଁ' ଗୁଣ୍ଡିଚା ଏଠି ନ ରହିଲେ ମନରେ ଶାନ୍ତି ଆସିବ ନାହିଁ। ତମେ ଯାଅ। ଚଞ୍ଚଳ ଆସିଲେ ପୁଣି ମନ୍ଦିରକୁ ଯିବା !

ଗଣେ—ହଉ। ତମେ ଯିବ ନାହିଁ ?

ପାର୍ବତୀ—ନା

ମୀରା—କୋଉଠିକି ବୋଉ ?

ପାର୍ବତୀ—ସମୁଦ୍ରକୂଳ। ଅଜୁ, ଡ୍ରାଇଭରକୁ କହିଲୁ—ଗାଡ଼ି ବାହାର କରୁ। ···ତୁ ବି ଯା' ମୀରା—ବାପାଙ୍କ ସାଥିରେ ଯାଇ ବୁଲିଆ।

[ ମୀରା ଓ ଅଜୟ ଚାଲିଗଲେ। ଗଣେଶ୍ୱର ଯାଉ ଯାଉ, ପୁଣି ଅଟକି ଗଲେ ]

ଗଣେ—ଏ କ'ଣ ? ନବଘନ !!

ପାର୍ବତୀ—କାହିଁ ?

ଗଣେ—ଏଇପଟରୁ, ଆସୁଚ।

[ନବଘନ ଆସିଲେ]

ଗଣେ—କଏ ନବଘନ ! ତମେ ଏଠି ?

ନବ—ହଁ ଆଜ୍ଞା ।

ଗଣେ - ତମେ କେତେବେଳେ ଆସିଲ ?

ନବ—ସେଇ ଶୁକ୍ରବାର । ଆପଣ କାର୍‌ରେ ଆସିଲେ – ମୁଁ ଆସିଲି ଟ୍ରେନ୍‌ରେ । ଏଠି ଆସି ପନ୍ଦର ଦିନ ଗୋଟାଏ ଜରରେ ପଡ଼ିଗଲି । କାଲି ମୋ ଖୁଡ଼ୁଙ୍କ ପୁଅର ଜାଁବାଳ ପଡ଼ୁଥିଲା—ଲୋକନାଥଙ୍କ ପାଖକୁ ଯାଇଥିଲି । ଆଜି ତ···

ଗଣେ—ଆଜି ଏଠିକି ଆସି ଖୁବ୍ ଭଲ କରିଚ— ଖୁ···ବ୍ ଭଲ । ହେଲେ ତମର ପୁରୀ ଆସିବାର ଯଦି ଥିଲା – ସେ କଥା ମତେ କଟକରେ ନ କହିଲ କାହିଁକି ?

ନବ—ନାଇଁ ଆଜ୍ଞା ସତ କହୁଚି ମୋର ଆସିବାର ମୋଟେ ବରାଦ ନ ଥିଲା ।

ଗଣେ—ବରାଦ ନ ଥିଲା ତ, ଆସିଲ କାହିଁକି ? କଟକରେ ମକଦ୍ଦମା ତଦ୍‌ବିର କରିବ କିଏ ?

ନବ—ଗୋଟି ଗୋଟି କରି ସବୁ ନଥି ଗୋକୁଳବାବୁଙ୍କୁ ବୁଝେଇ ଦେଇଚି । ମୋ ଭାଇ ପୁଣି ତାଙ୍କ ସିରସ୍ତାରେ ମୋହରିର । ଆଉ ମୁଁ ଭଲ କରି ଜାଣିଚି ଆଜ୍ଞା—ଏ ସବୁଯାକ କେଶ୍ ଡାରିଖ ହୋଇଯିବ ।

ଗଣେ—ମୁଁ ସେ ସବୁ କଥା ଜାଣେନା—ତମେ ଆଜି କଟକ ଫେରି ଯାଅ ।

ନବ—କହୁଚନ୍ତି ଯେବେ ଆଜ୍ଞା, ଫେରିଯିବି ।

ପାର୍ବତୀ - ନବଘନ କ'ଣ ପିଲା ହୋଇଚନ୍ତି । ତାଙ୍କ ବନ୍ଦୋବସ୍ତ ସେ ନ କରି କେବେ ଏଠିକି ଆସନ୍ତେ ? ତୀର୍ଥ ସ୍ଥାନକୁ ଆସିଚନ୍ତି, ତାଙ୍କୁ ତମେ ତଡ଼ି ଦଉଚ କାଇଁକି ? ନବଘନ, ତମେ ଆଜି ଏଇଠି ଖାଇବ ।

ନବ—ହଁ ଆଜ୍ଞା, ଭେଟ ପଡ଼ିଗଲାଗି ଯେତେବେଳେ, ଏଠି ନ ଖାଇ ଆଉ କୋଉଠି ଖାଇବି ?

ଗଣେ—ଆଚ୍ଛା, ତମେ ତ ମତେ କହିଲ ନାହିଁ ଯେ, କାହିଁକି ତମେ ପୁଣି ଆସିଲ ?

ନବ—ଆଜ୍ଞା, ବଡ଼ଠାକୁରଙ୍କ ତୋରିଲାଗିଲା, ଗୃହଆସିଲି ··· । ଆସି ଏକା ଖୁବ୍ ଲାଭ ହେଇଚି । ଯାହା କହନ୍ତି ହଅଁ ଦର୍ଶନ ବି ହେଲା—ମୁଆଁ ଖିଆ ବି ହେଲା ।

ଗଣେ—ମାନେ ?

ନବ—ଟଙ୍କା ପନ୍ଦର କୋଡ଼ିଏର ହଳଦିଆ ଦୋଣୀ ମୋ ପାଖରେ ଥିଲା । ଏଇନେ ଦେଖନ୍ତୁ—ଆଉ ଗୋଟିଏ ବି ନାହିଁ । ସବୁ ପାର୍ ହେଇ ଯାଇଚି ।

ଗଣେ—ତା’ ମାନେ ତମେ କହିବାକୁ ଗୃହଁ ଯେ, ଏ ଦୋଣୀ ଚଳନ୍ତୁ ନଥିଲା ?

ନବ—ଚଳିବ ନାହିଁ କାହିଁକି ଆଜ୍ଞା ! ହେଲେ ଗୁରିଏ ମୂର୍ଖ ପରି ଏ ବିଭ୍ରାଟ ଆରମ୍ଭ କରି ଦେଇଚନ୍ତି ! ! ପୁଲିସ୍ ଡରରେ ଏବେ କାନ୍ତୁ ସବୁ ସାବାଡ଼ ହେଇ ଗଲେଣି । ହେଲେ ମତେ ଆଉ ଏତେ ଦୂରକୁ ଯିବାକୁ ପଡ଼ିଲା ନାହିଁ । ଟିକେଟ୍ କଣାରେ ତ ଯାହା ଗଲା ଗଲା—ବାକି ଯାହାଥିଲା, ସିଂହ ଦରଜା, ମନ୍ଦିର ବେଢ଼ାରେ ସବୁ ଶେଷ । ଦାତା ବି ଖୁସୀ—ଗ୍ରହୀତା ବି ଖୁସୀ ।

ଗଣେ—ଓ ! ଏଇଥିପାଇଁ ତମେ ପୁଣି ଆସିଥିଲ ! ! ଏଇକଥା ମୁଁ ବିଶ୍ୱାସ କରିବି ? ଶୁଣ ! ଅଚଳ ଦୋଣୀ ଚଳେଇବାର ବାହାନା କରି ପୁଣି ହାଓ୍ୱା ଖାଇବାକୁ ଆସି ନିଜେ ଯେମିତି ଏଠି ଅଚଳ ହେଇ ବସି ଯାଅନା ··କାଲି କଟକ ଫେରିଯାଅ, ବୁଝିଲ ? (ପ୍ରସ୍ଥାନ)

ନବ—(ନମ୍ର ସ୍ୱରରେ) କ'ଣ କରିବି ମା' ?

ପାର୍ବତୀ—ତମେ ପାଗଳ ହେଲ ନବଘନ ? ସୋମବାର ଦିନ ଗୋଟାଏ ଭାରି ଜରୁରୀ କାମ ଅଛି—ତୁମକୁ ରହିବାକୁ ହେବ ।

ନବ—ରହିବ ମା' ହେଲେ, ବାବୁଙ୍କ କୋପ......

ପାର୍ବତୀ—ସେ କଥା ମୁଁ ବୁଝିବି । ତମେ ରୁହ—ବୁଝିଲ ?

ନବ—ହଉ ମା । (ନବଘନ ଭିତରକୁ ଗଲେ । ଟିକଏ ପରେ ବାହାରୁ ଆସିଲେ କାଶୀନାଥ )

ପାର୍ବତୀ—କିଏ ତୁମେ ? କୋଉଠୁ ଆସିଛ ?

କାଶୀ—ମୋ ନାଁ କାଶୀନାଥ ରାଏ । ମୁଁ ସୀତାଦେଇପୁରରୁ ଆସିଛି ।

ପାର୍ବତୀ—ସୀତାଦେଈପୁର ! ! ମାମୁଁ ତମକୁ ପଠେଇଛନ୍ତି ? ରାଘବ ଚୌଧୁରୀ ?

କାଶୀ—ହଁ ଆଜ୍ଞା ! ଚୌଧୁରୀଏ ମତେ ପଠେଇଛନ୍ତି । ...ମା' କ'ଣ... ?

ପାର୍ବତୀ—ହଁ, ମୁଁ ତାଙ୍କ ଭଣିଜୀ । ମାମୁଁ କାହାନ୍ତି ?

କାଶୀ—ଦେହ ଦୁଃଖରେ ପଡ଼ି ଆସି ପାରିଲେ ନାହିଁ ମା—ମତେ ପଠେଇଲେ । ଏଇ ଚିଠି ଦେଇଛନ୍ତି । (ଚିଠି ଦେଲେ)

ପାର୍ବତୀ—ଚିଠି ! (ମନେ ମନେ ପଢ଼ି) ହୁଁ, ଜର ହେଇଛି ତାଙ୍କୁ—ନା ?

କାଶୀ—ହଁ ମା', ଜର ତ ହେଇଛି । ଏଣେ ବୟସ ଆସି ହେଲାଣି । ଧାଁ ଧଉଡ଼କୁ ପାରୁ ନାହାନ୍ତି ।

ପାର୍ବତୀ—ମୋ ପାଖକୁ କଣ୍ଟକ ଚିଠି ଲେଖିଥିଲେ "ତମେ ସବୁ ଶୁକ୍ରବାରକୁ ଆସ—ମୁଁ ଏଣୁ ସେଇ ଶୁକ୍ରବାର ଯାଇଁ ପୁରୀରେ ପହଞ୍ଚିବି । କାନଗୋଇ ପହଞ୍ଚିବେ ରବିବାର ଦିନ । ସମବାର ଦିନ ସବୁ କାମ ହେଇଯିବ ।" ଶୁକ୍ରବାର ଯାଇ, ଶନିବାର

ଯାଇ, ଆଜ ଆସି ରଇବାର ହେଲାଣି—ତାଙ୍କର ଦେଖାନାହିଁ ।
ଏଣେ ମୋ ମନ ଅଥୟ । ହଁ, କାନଗୋଇ ଆସିଚନ୍ତି ତ ?

କାଶୀ—ହଁ ମା, ଆସିଥିବେ ।

ପାର୍ବତୀ—ଆସିଥିବେ ! ! ତମେ ଦେଖିନ ତାଙ୍କୁ ?

କାଶୀ—ଏଠୁ ହେଇ ମୁଁ ତାଙ୍କ କୋଠାକୁ ଯିବ । ଗାଁରେ ତାଙ୍କଠୁ ବାର୍ତ୍ତନ ପାଇ ଚୌଧୁରୀଏ ମତେ ଏଠିକି ପଠେଇଲେ ।

ପାର୍ବତୀ—ଦେଖ କାଶୀ ! ମାମୁଁ ତ ଆସି ପାରିଲେ ନାହିଁ । ସବୁ ଭାର ତମ ଉପରେ ।

କାଶୀ—ଖାସ୍ ସେଇଥିପାଇଁ ପରା ମା, ମୁଁ କୋଡ଼ିଏ କୋଶ ବାଟରୁ ଏଠିକି ଆଇଚ । (ଟିକିଏ ନମ୍ର ସ୍ୱରରେ) ବାବୁ କାହାନ୍ତି ?

ପାର୍ବତୀ—ନା, ସେମାନେ କେହି ନାହାନ୍ତି । ଥିଲେ ତମକୁ ଏଠି ଏଇନେ କେତେ ଜେରା ହେଇଥା'ନ୍ତା । ହଁ, କାନଗୋଇଙ୍କ କଥା ମୁଁ ଯାହା ଶୁଣିଚ ଇଏ ଯେମିତି କି ସିଏ ସେମିତି । ଦୁହେଁ ଅବାଗିଆ ଲୋକ । ସବୁ କାମ ତୁମେ ତୁଲେଇ ପାରିବତ କାଶୀ ?

କାଶୀ—ଆପଣ ଥୟ ଧରନ୍ତୁ ମା—ଦେଖିବେ ସମସ୍ତେ ବାଗକୁ ଆସିଯିବେ ।

ପାର୍ବତୀ—ହଁ, ଏ ଚିଠିରେ ତ ମାମୁଁ ସବୁ କଥା ଲେଖିଚନ୍ତି । ଆଜ ମନ୍ଦିରରେ ତା' ହେଲେ ଦେଖା ? ଆମେ ଲକ୍ଷ୍ମୀ ମନ୍ଦିରରେ ବସିଥିବୁ ।

କାଶୀ—ମୁଁ ବେଢ଼ା ବୁଲେଇ ଠିକ୍ ସେଇଠି ନେଇ ତାଙ୍କୁ ପହଞ୍ଚେଇ ଦେବ ।

ପାର୍ବତୀ—ମୁଁ ତେବେ ନିଶ୍ଚିନ୍ତ ରହିଲି ।

କାଶୀ—ଏକଥା ଆଉ ପଚାରିବାକୁ ଅଛି ମା ?

ପାର୍ବତୀ—ହଉ, ତମର ଡେରି ହେଇ ଯାଉଚି--ତମେ ଯାଅ ।
(ଟିକଏ ରହି) କାଶୀ···ଶୁଣ···ଶୁଣ . ଏ ଗୋଳମାଳଆରେ
ମୋର କଥା ମନେ ରହୁନ । ଆସ, ଟିକଏ ମହାପ୍ରସାଦ ପାଇ-
ଯିବ, ଆସ ।

କାଶୀ—ନାଇଁ ମା'······

ପାର୍ବତୀ—ମୁଁ ତମକୁ ଅଟକଉ ନାଇଁ ମ--ହାତେ ହାତେ ମହାପ୍ରସାଦ
ଟିକେ ପାଇ ଚାଲିଯିବ ।

କାଶୀ—(ହସିହସି) ସେଇ ବଳୀୟାରଭୁଜର ଦୟା ମା—ପୁଣ୍ୟ-
ଧାମରେ ପହଞ୍ଚୁ ପହଞ୍ଚୁ ମା'ଙ୍କ ଘରେ ମହାପ୍ରସାଦ ସେବା ! !

ପାର୍ବତୀ—ଆସ—ଏଇ ଘରକୁ ଆସ ।

—*—

## ପଞ୍ଚମ ଦୃଶ୍ୟ

[ପୂର୍ବର ସେଇ ଘର । ବାହାର ବାରନ୍ଦାରେ ପାର୍ବତୀ କାହାକୁ ଯେପରି ଅପେକ୍ଷା କରି ରହିଛନ୍ତି ]

ପାର୍ବତୀ—[ମନକୁ ମନ] କାହିଁ ? କାଲି ରାତି ପାହି ଆଜ ସକାଳ ହେଲାଣି—ତା'ର ଦେଖା ଦର୍ଶନ ନାହିଁ ! !

[ଖୁବ୍ ଜୋରରେ ହସି ହସି ଭିତରୁ ଆସିଲା ମୀରା]

ପାର୍ବତୀ—ଆଲୋ ଇଏ କ'ଣ ମୀରା ? କିଛି କଥା ନାହିଁ, ଭୁଛାଟାରେ ଏମିତି ହସୁଚୁ କାହିଁକି ?

ମୀରା—ମୋର କାଲି ସେ ଲକ୍ଷ୍ମୀ ମନ୍ଦିର କଥା ମନରୁ ଯାଉନାହିଁ ବୋଉ । ସେଇଯୋଉ ପଂଝାଏ ଲୋକ ଆସି ଆମକୁ ଆଖି ତରାଟି ତରାଟି ଅନେଇଲେ ! ତୁ ଦେଖିଚୁନା—କେମିତି ଠାଣିରେ ସେମାନେ ଧାଡ଼ିବାନ୍ଧି ସେଠି ଠିଆ ହେଇଗଲେ ! !

ପାର୍ବତୀ—ଉଁ ! ଏଇ କଥାକୁ ଏମିତି ହସ ଉଛୁଳି ପଡ଼ୁଚି । ଯା-ଯା-ଟିକେ ବାପା ଗାଧୋଇଲେଣି କି ନାହିଁ ଦେଖ ।

ମୀରା—ତୁ ଏ ବାରଣ୍ଡାରେ ଆସି ଠିଆ ହେଇଚୁ କାହିଁକି ? କାହାକୁ ଅନେଇ ରହିଚୁ ?

ପାର୍ବତୀ—ଆଲୋ ଅନେଇ ରହିବି କାହାକୁ ? ତୁ ଗଲୁ ଟିକେ ।

[ ଭିତରୁ ଅଜୟ ଆସିଲା ]

ଅଜୟ—ବୋଉ, ଗୋଟାଏ ମଜା ଦେଖିବୁ ଆ ।

ମୀରା—କ'ଣ ? କାଲିକା ଲକ୍ଷ୍ମୀମନ୍ଦିର ମଜା ?

( ଅଜୟ ଓ ମୀରା ହସିଲେ )

ପାର୍ବତୀ—ତମେ ଦିନ୍‌ଠା ଦିନକୁ ଦିନ ପିଲା ହେଇ ଯାଉଚ ନା କ'ଣ ?

ମୀରା—ତୋ'ର ଆଜ କ'ଣ ହେଇଚ ବୋଉ, ଏମିତି ଚଡ଼ୁଚୁ କାଇଁକି ?

ଅଜୟ—ତୁ ଆ'ନା ବୋଉ ଏଣେ ଦେଖିବୁ ଆ । ବାପା ଗାଧୋଇ-ସାରି କେମିତି ସୁଟ୍ ପିନ୍ଧି ରେଡ଼ି ହେଲେଣି !

ପାର୍ବତୀ—କାଇଁକି ? ଆଉ କ'ଣ କଟକ ଫେରି ଯିବାକୁ କହୁବେ ?

( ଓକିଲ ପୋଷାକ ପିନ୍ଧି ଗଣେଶ୍ୱର ଅସିଲେ )

ଇଏ କ'ଣ ? ଇଏ କ'ଣ ହଉଚ ?

ଗଣେ—କ'ଣ ହଉଚ ?

ପାର୍ବତୀ—ତମେ ତମ କଚେରୀ ପୋଷାକ ପିନ୍ଧିଲଣି କାହିଁକି ?

ଗଣେ—କଚେରୀ ପୋଷାକ ! !

ପାର୍ବତୀ—ହଁ, ଇଏ କି ନବରଙ୍ଗ ଲାଗିଚ ?

ଗଣେ—(ଜୋର୍‌ରେ ହୋ ହୋ ହୋଇ ହସି ଉଠିଲେ )

ପାର୍ବତୀ—ମଲା, ତେମେ ପାଗଳ ହେଇଗଲଣି ନା କ'ଣ ? ଏମିତି ହସୁଚ କାଇଁକି ? ପଚାରୁଚ ପରା ଏ ପୋଷାକ କାଇଁକି ପିନ୍ଧିଚ ?

ଗଣେ—ଅଭ୍ୟାସ ।

ପାର୍ବତୀ—ଓଃ ! ମୁଁ ପାଞ୍ଚବର୍ଷିଆ ପିଲା ହେଇଚି··· ମତେ ଭୁଲେଇ ଦବ !! କହିଲେ କ'ଣ ନା—ଅଭ୍ୟାସ ।

ଗଣେ—ଡର ଯାଅନା ପାର୍ବତୀ—ମୁଁ କଟକ ଫେରି ଯିବାକୁ କହୁନ ।

ପାର୍ବତୀ—ତେମେ ତ ପୁରୀ ଆସିଥିଲ ଜଗନ୍ନାଥ ଦର୍ଶନ କରିବାକୁ, ସାଙ୍ଗରେ ଏ ପୋଷାକ କାଇଁକି ଆଣିଥିଲ ?

ଗଣେ—ରଘୁପତି ରାମଚନ୍ଦ୍ର ବନବାସକୁ ଗଲାବେଳେ ଧନ ସମ୍ପତ୍ତି, ଦାସ—ଦାସୀ, ଏମିତିକି ନିଜର ପିନ୍ଧା ଲୁଗା ଖଣ୍ଡିକ ସୁଦ୍ଧା ସାଥିରେ ଆଣି ନ ଥିଲେ । କିନ୍ତୁ ନିଜର ଧନୁଶରକୁ ତ୍ୟାଗ କରି ପାରିଥିଲେ କି ?

ପାର୍ବତୀ—ମତେ ଆଉ ଚଡ଼ାଅନା କଥା ଦଉଚ । ସେ ପୋଷାକ ଆଗେ ବଦଳାବଟି ।

ଗଣେ—ନବଘନ କାହାନ୍ତି ? କାଲି କଟକ ଫେରିଚନ୍ତି ନା ନାହିଁ ।

ପାର୍ବତୀ ମୁଁ କି ଜାଣେ ? ସେ ତମ ମୋହରିର—ତମେ ତାଙ୍କ ଓକିଲ ··

ଗଣେ—(ବାଧା ଦେଇ) ମୁଁ ତାଙ୍କ ଓକିଲ ସତ—କିନ୍ତୁ ତାଙ୍କ ପାଇଁ ଓକିଲାତି କରିବାକୁ ହେଲେ ତମେ ଅଣ୍ଟାରେ ଲୁଗା ପିନ୍ଧି ବାହାରି ପଡ଼ ।

ପାର୍ବତୀ—କ'ଣ ମିଳିବ ମତେ ସେ ଅଲଣା କଥାରୁ ! ଆଲୋ ମୀରା, ଦେଖିଲୁ ପୂଝାରୀ ରୁ' କଲାଣି କି ନାହିଁ—

ଗଣେ—ହଁ ମା, କପେ ରୁ' ଆଗେ ଆଣ ତ ।

[ମୀରା ଓ ପଛରେ ପଛରେ ଗଣେଶ୍ୱର ଆଉ ଅନ୍ଦର ଭିତରକୁ ଗଲେ, ପାର୍ବତୀ ସେଇଠି ଥା'ନ୍ତି—କାଶୀନାଥ ଆସିଲେ ]

ପାର୍ବତୀ—କିଓ କାଶୀନାଥ, କାଲି ତମେ କୁଆଡ଼େ ଗଲ ?

କାଶୀ—ଦେହ ହାତ ଭାରି ଅସ୍କତ ଲାଗୁଥିଲା ମା—ପଣା ମୁନ୍ଦାଏ ପିଇ ଶୋଇ ପଡ଼ିଲି ।···ବାନଗୋଷ୍ଠିଙ୍କୁ ଚହ୍ଲି ଲିତ ମା ?

ପାର୍ବତୀ—ସେମାନେତ ଗୁଟେପାଞ୍ଚ ଜଣ ଆସିଥିଲେ—ମୁଁ ଚହ୍ନନ୍ତି କେମିତି ? ତମେ ପୁଣି ତାଙ୍କର ସାଙ୍ଗରେ ବାହାରି ଗଲ । ମତେ ଟିକିଏ ଚହ୍ନେଇ ଦେଇଥିଲେ ହେଇ ନ ଥା'ନ୍ତା ?

କାଶୀ - ସେଇ ଯୋଉ ଜଣକ ମା—ହାତରେ ବଙ୍କୁଲ ବାଡ଼ି—କାନ୍ଧରେ ମଠା ଗୁଦରି—ନାକତଳେ ବାଦୁଆ ନିଶ —

ପାର୍ବତୀ—ସିଏ ତିନଗୁର ଜଣଙ୍କ ହାତରେ ବଙ୍କୁଲା ବାଡ଼—ସମସ୍ତଙ୍କ କାନ୍ଧରେ ମଠା ଗୁଦର—ନାକ ତଳେ ବାଘୁଆ ନଶ—

କାଶୀ—ହଁ ମା—ଏଇଟା ଏକା ଠିକ କଥା ।

ପାର୍ବତୀ—ଆଚ୍ଛା, କ'ଣ ସେ ଭଲ କହୁଲେ ?

କାଶୀ—(ଖୁସିହୋଇ ବଡ଼ ପାଟିରେ) ଆଉ ପଗୁରିବାକୁ ଅଛୁ ମା !

ପାର୍ବତୀ—ଆସ୍ତେ କୁହ ।

କାଶୀ—କାମ ଖତମ ।

ପାର୍ବତୀ—ସତ କହୁଚ ?

କାଶୀ—କାନରେ ପଶ୍ମ ମହାପ୍ରସାଦ ବନ୍ଧା ହୋଇଚ ! ମିଛ କହୁବ ?

ପାର୍ବତୀ—ଆମର ଏଠିକି ଆସିବେ ବୋଲ କହୁଚନ୍ତ ତ ?

କାଶୀ—ନାଇଁ ମା, ଆଜ କଚେରୀରେ ତାଙ୍କର ଗୋଟାଏ କ'ଣ ତାରଖ ଅଛୁ । କଚେରୀ କାମ ସାର ବାରଟା ଗୋଟାଏ ବେଳକୁ ମନ୍ଦରକୁ ଯିବେ । ସେଇଠି ସବୁ କଥାବାର୍ତ୍ତା ।

ପାର୍ବତୀ—ହଉ, ହେଇ ବଡ଼ ଠାକୁରଙ୍କ ଇଚ୍ଛା ! ତମେ ଯାଅ । ହଁ, ଆଜ ସେଇଠି ତାଙ୍କର ମହାପ୍ରସାଦ ସେବା ହବ—ବୁଝିଲ ?

କାଶୀ—ଏ କଥା ଆଉ ପଗୁରିବାକୁ ଅଛୁ ମା !! ( ବଡ଼ପାଟିରେ ) ମୁଁ ଗୁଲଲ । (ପ୍ରସ୍ଥାନ)

ପାର୍ବତୀ—ଓଃ ! କେଡ଼େ ପାଟିଟାଏ କଲା !

[ ହାତରେ ଚ୍ଛା' କପ ଧର ଗଣେଶ୍ୱର ଆସିଲେ ]

ଗଣେ—କିଏ ସେ ଗୁଲଲେ ?

ପାର୍ବତୀ—ସେ·· କାଶୀନାଥ ।

ଗଣେ—କିଏ ସେ କାଶୀନାଥ ?

ପାର୍ବତୀ—ସେ କେହୁ ନୁହେଁ ।

ଗଣେ – କେଣ୍ଟ ନୁହେଁ ! ପୁଣି ଏଡ଼େ ମନଖୁସିରେ ଏମିତି ଚମତ୍କାର ଖବରେ ଗୃହଯାଇ ପାରନ୍ତ !! କିନ୍ତୁ ତା'ହେଲେ ଗୋଟାଏ ଭିତରେ ଭିତରେ ଗୃହଚି ?

ପାର୍ବତୀ – ହଁ, ଗୃହଚି । ମୀରା ଅଜୁ, କାହିଁ ଗଲ ? ଦୁହେଁଯାକ ତମ ସାଙ୍ଗରେ ଆସ । ମନ୍ଦିରକୁ ଯିବା (ଗଣେଶ୍ୱରଙ୍କୁ) ହେଇଛି ଶୁଣ, ମୁଁ ଗାଡ଼ି ନେଇ ଯାଉଚି – ତମେ ଆଉ କୁଆଡ଼େ ଯିବ ନାହିଁ । ମୁଁ ମନ୍ଦିରରେ ଭୋଗ ବନ୍ଦୋବସ୍ତ କରି ଦେଇ ଆସିବି । ତା'ପରେ, ମୀରାର ସାଙ୍ଗ—ଅଜୁର ସାଙ୍ଗ—ଆମେ ସମସ୍ତେ ମନ୍ଦିରକୁ ଯିବା । ମୁଁ ଫେରୁ ଫେରୁ ପ୍ରାୟ ବାରଟା ଗୋଟାଏ ବାଜିବ । ତେମେ ଯିବନାହିଁ କୁଆଡ଼େ କହି ଦଉଚି । ଅଜୁ, ଡ୍ରାଇଭର୍‌କୁ ଗାଡ଼ି ବାହାର କରିବାକୁ କହ ।

ଗଣେ—ତା' ହେଲେ ମୋ' ଅନୁମାନ ଠିକ୍ ?

ପାର୍ବତୀ—ଠିକ୍ କି ଭୁଲ୍ ବଡ଼ନ ଜାଣିବ ନାହିଁ ! ଆ'ଲୋ ମୀରା ।

(ଅଜୁ, ମୀରା ଓ ପାର୍ବତୀଙ୍କ ପ୍ରସ୍ଥାନ)

ଗଣେ—ଆଚ୍ଛା ! ! ପୁଝାରୀ, ସେ ଘରୁ ଖବର କାଗଜଟା ଆଣିବଟି । (ଚୌକି ଟାଣି ଆଣି ସେଇଠି ବସିଲେ । ଟିକିଏ ପରେ ନବଘନ ଓ କାନଗୋଇ ଆସିଲେ )

ନବ – ଆସନ୍ତୁ ଆଜ୍ଞା, ଆସନ୍ତୁ ! ବାବୁ ତ ଏଇଠି ଅଛନ୍ତି ।

କାନଗୋଇ – ନମସ୍କାର ।

ଗଣେ—ନମସ୍କାର, ବସନ୍ତୁ ।

କାନ – ମତେ ଆପଣ ହୁଏତ ଚିହ୍ନି ପାରିବେ ନାହିଁ । ମୋର ନାମ କାନନ୍‌ଗୋ ଭ୍ରମରବର ମହାପାତ୍ର ଚୌଧୁରୀ ବଳଭଦ୍ର ପ୍ରସାଦ ଦାସ । ଘର ଏଇ ପୁରୀଜିଲ୍ଲା । ଆପଣ ଆସିଚନ୍ତି ଶୁଣି ମୁଁ ଆସିଲି ।

ଗଣେ- କାହିଁକ ଆଜ୍ଞା ? ମୁଁ ତ ନେତା ନୁହେଁ କ ବକ୍ତା ନୁହେଁ କ
ଗାୟକ ନୁହେଁ କି ସିନେମା ଷ୍ଟାର ନୁହେଁ ! (ହସୁଥାନ୍ତି)

କାନ—କନ୍ତୁ ଆପଣ ଓକିଲ ।

ଗଣେ—ପୁରୀକୁ ତ ମୁଁ ଆଉ ଓକିଲତି କରିବାକୁ ଆସିନି –

କାନ—ରାମଚନ୍ଦ୍ର ବି ରାବଣ ବଧ କରିବାକୁ ପ୍ରତିଜ୍ଞା କରି ଘର ଛାଡ଼ି
ନଥିଲେ ! !

ଗଣେ—ବାଃ ! ଆପଣ ତ ମୋ ମନକଥା ଜାଣିଲା ପରି କଥା
କହୁଚନ୍ତି ।

କାନ—ମୋ ମନକଥାଟା ତେବେ ଶୁଣ । ପୁରୀ ଅଦାଲତରେ ଆଜ
ମୋର ଗୋଟାଏ କେଶ୍ ଥିଲା । ଓକିଲ ଶ୍ରୀ ରାଧାଶ୍ୟାମ ମିଶ୍ର ।

ଗଣେ—ଜାଣେ ତାଙ୍କୁ ।

କାନ—ଆଜ ମକଦ୍ଦମାର ଜବାବ୍-ସୁଆଲ ।

ଗଣେ—ହୁଁ ।

କାନ—ଆପଣ କେବେ ଥରେ ପୁରୀକୁ ଗୋଟାଏ କେଶ୍‌ରେ
ଆସିଥିଲା ବେଳେ ସେ ଆପଣଙ୍କ ସହିତ ଏ ମକଦ୍ଦମା ସମ୍ବନ୍ଧରେ
କେତେକ ପରାମର୍ଶ କରିଥିଲେ ।

ଗଣେ—କରିଥିବେ ।

କାନ—ଆଜ ସକାଳୁ ମୁଁ ଆସି ଦେଖେ ତ ମିଶ୍ର ମହାଶୟ ରକ୍ତଚାପ
ରୋଗରେ ଶଯ୍ୟାଶାୟୀ ।

ଗଣେ—ଓ ।

କାନ—ତାଙ୍କ ଜୁନିଅର୍‌ମାନଙ୍କ କୌଣସି କଥା ନ ଶୁଣି, ସେ
ଆପଣଙ୍କ ପାଖକୁ ମତେ ପଠେଇଲେ । ତାଙ୍କ ମତରେ ଆପଣହିଁ
ଏ କେଶ୍‌ରେ ଜବାବ୍ ସୁଆଲ କରି ପାରିବେ ।

ଗଣେ—ଏଇଟା କ'ଣ ଉଚିତ ହବ ବୋଲି ଆପଣ ଭାବୁଚନ୍ତି ?

କାନ—ଦେଖନ୍ତୁ ଆଜ୍ଞା, ମକଦ୍ଦମାର ମାଲିକ ଓକିଲ । ମୋର ଓକିଲ ମତେ ପରାମର୍ଶ ଦେଲେ ଆପଣଙ୍କ ପାଖକୁ ଆସିବାକୁ । ମୁଁ ଆପଣଙ୍କୁ ହାତଯୋଡ଼ି ପ୍ରାର୍ଥନା କରିବି ନାହିଁ କି ଟଙ୍କାର ଲୋଭ ଦେଖାଉ ନାହିଁ । ଆପଣ ଯଦି ମତେ ଫେରାଇ ଦେବେ, ତେବେ ମୁଁ ଜାଣିବି ଯେ ଆପଣ ଆପଣଙ୍କ ଧର୍ମରକ୍ଷା କଲେନାହିଁ ।

ଗଣେ—ହୁଁ । ଆପଣ ତ ଖୁବ୍ ସ୍ପଷ୍ଟବାଦୀ ମୁଁ ଦେଖୁଛି । ଆଚ୍ଛା, ଚାଲନ୍ତୁ । ଅଦାଲତଙ୍କୁ ମୁଁ ଦୁଇଘଣ୍ଟା ସମୟ ମାଗିବି । ଯଦି ସମୟ ମିଳେ—ମୁଁ ଜବାବ୍ ସୁଆଲ କରିବି ।

କାନ—ମୁଁ ରାଜି ।

ଗଣେ—ନବଘନ, ତମେ ଘରେ ରୁହ—ମା' ଆସିଲେ କହିଦେବ ।

ନବ—ହଉ ଆଜ୍ଞା, ମୁଁ ରହୁଛି ।

ଗଣେ—ଚାଲନ୍ତୁ । (ଦୁହିଁଙ୍କର ପ୍ରସ୍ଥାନ )



## ଶେଷ ଦୃଶ୍ୟ

[ ସେଇ ଘରର ଏକ କୋଠରୀ । ପାର୍ବତୀଙ୍କ ପାଖରେ ନବଘନ ଅପରାଧିଙ୍କ ପରି ଠିଆ ହୋଇଛନ୍ତି । କାଶୀ ମଧ୍ୟ ଅଛନ୍ତି ]

ପାର୍ବତୀ—ଏଇଥିପାଇଁ ମୁଁ ତମକୁ କାନେ କାନେ ଶିଖେଇ ପୁରୀରେ ଅଟକେଇ ରଖିଥିଲି ! ଏଣେ ଗୋଟାଏ କାମ ବୋଲି ମୁଁ ତମକୁ ଖୋଜିଲିଣି—ତେମେ ଯାଇ ତମ ବାବୁଙ୍କୁ ମହକିଲ ଜୁଟେଉଛ !

ନବ—ମୁଁ ଆଉ କଣ କରନ୍ତି ମା ! ମିଶ୍ରବାବୁ ମତେ ବାଧ୍ୟ କଲେ ।

ପାର୍ବତୀ—ତେମେ ସେଠିକି ଯାଇଥିଲ କାହିଁକି ?

ନବ—ତାଙ୍କ ସିରସ୍ତାର ମୋହରର ମୋର ଭଣ୍ଡୁ ।

ପାର୍ବତୀ—ବାବୁ ଏକା ତମକୁ ଲୁହା ଜାଣି ପାଣି ଦଅନ୍ତି । ତମକୁ କଟକ ପଠେଇ ଦେଇଥିଲେ ଠିକ୍ ହୋଇଥାନ୍ତା ! ତାଙ୍କୁ ତ ମକଦ୍ଦମା ଜୁଟେଇ ଦେଲ—ସେ ଯାଇ କଚେରୀରେ । ଏଣେ ଦିନ ଆସି ଦି'ଟା ବାଜିଲାଣି । ........ ......ହଇଏ କାଶୀ, କାନଗୋଇ ତମକୁ କଣ କହିଥିଲେ ?

କାଶୀ—କହିଥିଲେ ତ ଆପଣମାନଙ୍କୁ ନେଇ ଦିନ ଦି'ଟା ସୁଦ୍ଧା ମନ୍ଦିରକୁ ଯିବାକୁ ।

ପାର୍ବତୀ—କ'ଣ ମୁଁ ଏବେ କରିବି ! ଭଦ୍ର ଲୋକ ସିଏ ! ଯଦି ଅପେକ୍ଷା କରି କରି ଫେରି ଯା'ନ୍ତି !

ନବ—ଆପଣ କାହାକଥା କହୁଛନ୍ତି ମା ?

ପାର୍ବତୀ—ଶୁଣିବି ! ମୀରାର ବାହାଘର କଥା ! ଆଜି ମନ୍ଦିରରେ ଜବାବ ଦିଆହୋଇଥା'ନ୍ତା ! ଖାସ୍ ତମରି ପାଇଁ ସବୁ ଭଣ୍ଡୁର ହେଲା !

ତମମାନଙ୍କ ଜାଳାରୁ ମୋର ମନ ହଉଚ୍ଛି ପଗ୍ ବିଷଖାଇ ମରିଯିବାକୁ !

ନବ—ଏ କଥାଟା ମତେ ଆଗରୁ ଟିକେ କହିଲେ ନାହିଁ ମା ?

ପାର୍ବତୀ—ଏ ଯାଏଁ ତ ଚନ୍ଦ୍ର ସୂର୍ଯ୍ୟ ଜାଣି ନ ଥିଲେ, ତମକୁ କହି-ଥା'ନ୍ତି କାହିଁକି ! ଆଉ ଗୋଟାଏ ମହିକିଲ ଆଣି ଜୁଟେଇ ଦେଇଥା'ନ୍ତି ! ତମେ ଯାଅ । ବାବୁଙ୍କୁ ଡାକିଆଣ ।

ନବ—ସିଏ ସେଠି ଜବାବ୍ ସୁଆଲ କରୁଛନ୍ତି ମା !

ପାର୍ବତୀ—ତାଙ୍କୁ ଯାଇ କୁହ—ମିଶଲ ଉପରେ ଜବାବ୍ ସୁଆଲ୍ ସେତିକି ଥାଉ । ଘରକୁ ଆସନ୍ତୁ—ଏଠି ଜବାବ୍ ସୁଆଲ୍ କରିବେ ।

ନବ— ଏଇ ପଗ୍ ମା, ଆଇଲେଣି ! ବାବୁ ଆଉ ତାଙ୍କର ସେ ମହିକିଲ—ଦୁହେଁଯାକ ହେଇ ଆସୁଛନ୍ତି ।

ପାର୍ବତୀ—ଆସନ୍ତୁ ଆଗେ ! ( ଅନ୍ତରାଳକୁ ଗଲେ )

କାଶୀ—ମା, ଧାଇଁଆସ । କାନଗୋଇଏ ଏଠିକି ଆସିଲେଣି ।

ନବ—କୋଉ କାନଗୋଇ ହେ ! ସିଏ ପଗ୍··········ହେଉ !
ନାଁଟା ତ ହ'ହାତ ଲମ୍ବ—ମୋର ମନେ ରହିଲା କୋଉଠି !
ଆରେ ବାବୁ—ସିଏ ଆମ ବାବୁଙ୍କ ମହିକିଲ—ମୁଁ ନିଜେ ତାଙ୍କୁ ଆଣି ବାବୁଙ୍କ ପାଖରେ ପହଞ୍ଚେଇଛି ।

କାଶୀ—ତମେ ଗୋଟାପାଟା ଜାଣିଛ ! ସିଏ ଛତିଶ ପାଟଣା କାନଗୋଇ; ତାଙ୍କର ପୁଅ ସାଥିରେ ତମ ଦେଈଙ୍କ ବାହାଘର······

ନବ—ତମ ଆଖିକି ଗୁଳଶା ଧଇଲାଣି ! ଏଇ ମୋ ଚଷମାଟା ନେଇ ଦେଖ ।

କାଶୀ—ତମର ସେ ଚଷମାଟାରେ ମୋଟେ ପାବାର ନାହିଁ—ତମେ ଖାଲି ଆଖିରେ ଦେଖ । ସେଇ ବଙ୍କୁଲ ବାଡ଼, କାନ୍ଧରେ ମଠା ଚଦର—ନାକତଳେ ବାଙ୍ଗୁଆ ନିଶ ।

(ପାର୍ବତୀ ପଶିଆସିଲେ)

ପାର୍ବତୀ—ଆରେ—ଆରେ, ତମେ ଦୁହେଁ କଣ ଏମିତି ଭେଳକି ଲଗେଇଲ ଭଳି କଥା କହୁଛ ମ ?

ନବ—ଆପଣ ଭିତରକୁ ଯା'ନ୍ତୁ ମା—ସିଏ ଦାଣ୍ଡଘରକୁ ଆସିଲେଣି ।

(ପାର୍ବତୀ ଯିବା ପୂର୍ବରୁ ଗଣେଶ୍ୱର ଓ କାନଗୋଇ ଆସିଲେ)

କାନ—ଆହା—ହା—ଆଉ କାହିଁକି ? ସମୁଦୁଣୀ—ଆଉ ଲୁଚି ଯାଉଛ କାହିଁକି ? ଯୋଗ ପୁଣି ମଣିଷ ଜୀବନରେ ଏମିତି ଘଟେ !

ଗଣେ—ଆସ ପାର୍ବତୀ, ଏଣିକି ଆସ । ଆଉ କଟମଟ କରି ଅନେଇଚ କ'ଣ ? ମୋ' ଆଖି ଉଢ଼ାଳରେ ତ କମ୍ କାମ ତମେ କରିନ !!

ପାର୍ବତୀ—ସମୁଦ୍ଧ ସବୁ ଶୁଣିଲେଣି ?

କାନ—ହଁ, ସବୁ ଶୁଣିଲି । କଟକରେ କେବେ କୁଆଡ଼େ କୋଉ ସଭାରେ ଆମ ମୋହନ ସାଙ୍ଗରେ ତମ ମୀରାର ପରିଚୟ ହୋଇଥିଲା । କଥାଟା ତା ବୋଉ ଜରିଆରେ ମୋ କାନରେ ପଡ଼ିଲା । ହେଲେ ବାବୁ, କାହା ଝିଅ ସେ, ଘର କୋଉଠି, ଏ ସବୁ ଖବର ମୁଁ କିଛି ରଖି ନ ଥିଲି । ରଖନ୍ତି କାହିଁକି ! ମୁଁ ତ ବରୁଣେଇ ପାହାଡ଼, ଟଳୁଚି କେତେବେଳେ ! କନ୍ୟାତରଫରୁ ବୋହୂ ଦେଖାର ନିମନ୍ତ୍ରଣ ନ ଆସିଲେ ମୁଁ ବୋହୂ ଦେଖି ଯିବି ନାହିଁ କି ବୋହୂ ପସନ୍ଦ ନ ହେଲେ ଏ ମୁଖରୁ ବଚନ ବାହାରିବ ନାହିଁ !! ଏତିକି ବେଳେ ମୋହନ ବିଲାତ ଗଲା ! ଆଉ କିଏ କାହାକୁ ପଚାରେ !...ହେଲେ ସମୁଦୁଣୀ ଯେ ଏକଥା ଏ ଦ'ବର୍ଷ କାଳ ମନେ ରଖି ବସିଚନ୍ତି—

ପାବଣ୍ଡ—ମନେ ରଖିଲେ ହବ କ'ଣ ? ମାମୁଁ ମତେ ଖବର ଦେଲେ ଯେ କାନଗୋଇଏ ବିନା ନିମନ୍ତ୍ରଣରେ କନ୍ୟା ଦେଖି ଯିବେ ନାହିଁ ! ଏକଥା ସ୍ୱାଙ୍କୁ କହିଲାରୁ ଇଏ ଜିଦ୍ ଧରି ବସିଲେ ଯେ କାହାକୁ ଡାକି ଆଣି ନିଜ ଝିଅକୁ ଦେଖେଇବେ ନାହିଁ । ମୁଁ ଆଉ କରନ୍ତି କ'ଣ ? ଶେଷକୁ କାହାକୁ ନ ଜଣେଇ ଏଇ ଶ୍ରୀକ୍ଷେତ୍ର ଆଶ୍ରା ଧରିଲି !

କାନ—ସୀତାଦେଈପୁର ଗୈଁଧୁରୀ କ'ଣ ମତେ ଏତେ କଥା ଜଣେଇଚନ୍ତି ? ଏଇ ହ'ଗୃହର୍ଦ୍ଦନ ତଳେ ଖଣ୍ଡେ ଚିଠି ଲେଖି ଦେଲେ ଯେ—"ମୋ ଭଣିଜୀର ଗୋଟିଏ ଝିଅ ପୁରୀ ଆସିଚି —ମନ୍ଦିରରେ ଦେଖିଲେ କିଛି ଦୋଷ ନାହିଁ । ଝିଅକୁ ଦେଖି ମନ ମାନିଲେ ପରେ କଥାବାର୍ତ୍ତା ।" ବାସ୍, କିଏ ତାଙ୍କ ଭଣିଜୀ, କୋଉଠି ତାଙ୍କର ଘର, କିଛି ହେଲେ ମତେ ସେ ଜଣେଇଚନ୍ତି !!

ଗଣେ—ଆଉ କାନନ୍‌ଗୋ ଭ୍ରମରବର ମହାପାତ୍ର ଗୈଁଧୁରୀ ବଳରାମ ଦାସଙ୍କ ଭଳି ବରିଷ୍ଠ ଲୋକ ଯେ ହଉଚନ୍ତି ଏଇ କାନଗୋଇ, ଏକଥା ଅବା ମୁଁ ଜାଣିଲି କେମିତି ?

ନବ—ଆଜ୍ଞା ! କଟକରେ ମକଦ୍ଦମା ଗୁଡ଼ୁ ଆସିଲି ବୋଲି ବାବୁଙ୍କଠୁ ଗାଳି ଶୁଣିଲି । ପୁରୀରେ ଆସି ମକଦ୍ଦମା ଜୁଟେଇ ଦେଲି ବୋଲି ମା ରାଗିଲେ । ହେଲେ ମୋହରିର ଗିରି କରି ଓକିଲ ଆଉ ମହକିଲଙ୍କୁ ଜୁଟେଇ ଦେଲି ବୋଲି ସିନା ଏଇନେ ହ'ସମ୍ବନ୍ଧ ଏମିତି ମନ-ଖୁସିରେ ଭେଟା ଭେଟି ହେଇ ପାରିଲେ ! ନଇଲେ ମକଦ୍ଦମା ଯେମିତି ବଗିଡ଼ି ଯାଇଥିଲା, କାନଗୋଇ ମହାଶୟ ତ ଏତେବେଳକୁ ଘର ଧରନ୍ତେଣି !

କାନ—(ହସିହସି) ଯାହା କହୁଚ ହେ ନବଘନ !

ପାଷଣ୍ଡ—ହଉ ଉଠ ସମୁଦ୍ର—ମନ୍ଦରକୁ ଯିବା ପରା !!

କାନ—ହଁ; ଚାଲ ସମୁଦୁଣୀ, ମନ୍ଦରକୁ ଚାଲ । ସେଇଠି ମୋ' ମା'କୁ ଆଶୀର୍ବାଦ କରିବ । ବୁଢ଼ିଲ ସମୁଦ୍ର—ଦେଖି ଏକା ଭାରି ଖୁସି ହେଲ !! ଆମ ଓକିଲବାବୁ ଯେମିତି—ତାଙ୍କ ପରିବାରଟି ସେମିତି—ଆଉ ତାଙ୍କ ନବଘନଟି ବି ସେମିତି—ଏକୁ ଆରେକ ଧୁରନ୍ଧର !

( ସମସ୍ତେ ହସି ଉଠିଲେ )



---

ସୂଚନା—୧୯୪୮ ମସିହା ଡିସେମ୍ବର ମାସ ପରେ ପିତଳ ବା ହଳଦିଆ ଦୋ'ଣି ସବୁ ପ୍ରତ୍ୟାହୃତ ହୋଇଯିବ ବୋଲି ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ନିର୍ଦ୍ଦିଷ୍ଟ ସମୟର ବହୁ ପୂର୍ବରୁ ବେସରକାରୀ କ୍ଷେତ୍ରରେ ପିତଳ ଦୋ'ଣି ଅଚଳ ହୋଇ ପଡ଼ିଲା । ଏ ଛନ୍ଦରେ ନବଘନ ମୁହଁରେ ସେଇ ଘଟଣାର ଉଲ୍ଲେଖ କରାଯାଇଛି ।

## ଏ ପରିବାରରେ ଅଛନ୍ତି

ଡାକ୍ତର ବାବୁ—ଗୃହସ୍ୱାମୀ

ଲକ୍ଷ୍ମୀ—ତାଙ୍କ ସ୍ତ୍ରୀ

ମାଧବୀ—ତାଙ୍କ କନ୍ୟା

ବିକ୍ରମ—ତାଙ୍କ ଭାବୀ ଜାମାତା

ଶ୍ୟାମ—ତାଙ୍କ ଭୃତ୍ୟ

କମ୍ପାଉଣ୍ଡର୍

ଓ

ଜଣେ ରୋଗୀ ।



(ଏ ଚିତ୍ରର ରଚନାକାଳ—ସେପ୍ଟେମ୍ବର ୧୯୫୮)

# ଡାକ୍ତରବାବୁଙ୍କ ପରିବାର

## ପ୍ରଥମ ଦୃଶ୍ୟ

[ ଡାକ୍ତର ବାବୁଙ୍କ ଗୃହର ଏକ ପ୍ରକୋଷ୍ଠ । ବନ୍ଦମ ଓ ମାଧବୀ ବସିଛନ୍ତି । ବନ୍ଦମ ପୂର୍ଣ୍ଣ ବୟସ୍କ ଶିକ୍ଷିତ ଯୁବକ । ମାଧବୀର ବୟସ ପ୍ରାୟ ଷୋଳ ହେଲାଣି । ସେ କଲେଜର ଛାତ୍ରୀ ଓ ବନ୍ଦମର ବାଗ୍‌ଦତ୍ତା ]

ମାଧବୀ—କାହାଣୀ ଶୁଣାଇବାରେ ମୋର ବେଶ୍ ସୁଖ୍ୟାତି ଅଛି । ... ଶୁଣ, ମୁଁ କହୁଛି ।

କମ୍ପାଉଣ୍ଡର—[ ଅନ୍ତରାଳରୁ ] ଓଃ ! [ମରିଗଲି—ମରିଗଲିରେ ବାବା ! ମରିଗଲି !

ବନ୍ଦମ—ଏଇ ଶୁଣୁଚ ମାଧବୀ—

ମାଧବୀ - ଓଃ ! ରୁହନା ! ତୁମେ ଆଗେ ମୋ କଥା ଶୁଣ । [ମନେମନେ ଚନ୍ଦ୍ରାକଳ୍ପଭଳି] ସେଇଟା କୋଉ ମସିହାର କଥା ହେବ ? ଇତିହାସ ବହିଟା କାହିଁ ?

ବନ୍ଦମ—ଇତିହାସ ବହିର ପୃଷ୍ଠା ଓଲଟେଇ, ଖ୍ରୀଷ୍ଟପୂର୍ବ ଦୁଇହଜାର ବର୍ଷ ପଛକୁ ଫେରିଯାଇ, ପୁଣି ଖ୍ରୀଷ୍ଟଜନ୍ମର ପ୍ରାୟ ଦୁଇହଜାର ବର୍ଷ ଏପାଖକୁ ଲେଉଟି ଆସି, ତୁମେ ମତେ କଥା ଶୁଣେଇବ ମାଧବୀ ? [ ସେ ଯେପରି ଆତଙ୍କିତ ହୋଇ ପଡ଼ନ୍ତି ]

ମାଧବୀ—ରୁହ, ଇତିହାସ ବହିଟା ଆଣେ ।

( ଅଲମିରା ପାଖକୁ ଉଠିଗଲା )

କନ୍ୟା—( ପୂର୍ବପରି ) ଓହୋ ହୋ ! ମରିଗଲରେ ବାବା—ମୁଣ୍ଡଟା ଗଲା !

ବିକ୍ରମ—ମାଧବୀ !

ମାଧବୀ—ଇଏତ ଏଠି ସାତ ଆଠଟା ଇତିହାସ ବହି—ଏଥିରୁ କୋଉଟି ନେବ ?

ବିକ୍ରମ—ତମେ ଏଣେ ଶୁଣିଲ ।

ମାଧବୀ—ଆରେ ଠିକ ତ । ତମେ ତ ସ୍ୱୟଂ ଇତିହାସ ! ତମର ପରା ଇତିହାସରେ ଅନର୍ସ ଥିଲା ?

ବିକ୍ରମ—ତମର କଣ ଦରକାର ?

(ମାଧବୀ ତା' ସ୍ଥାନକୁ ଫେରି ଆସିଲା)

ମାଧବୀ—ଇଂରେଜମାନେ ପ୍ରଥମେ କୋଉ ଶତାବ୍ଦୀରେ ଏ ଦେଶରେ ସାମ୍ରାଜ୍ୟ ବିସ୍ତାର କରିଥିଲେ ? ଷୋଳଶହ ନା ସତରଶହ ?

ବିକ୍ରମ—ତଥାପି ତମେ ଦୁଇ ଶତାବ୍ଦୀ ବ୍ୟାପୀ ଇତିହାସରୁ ଗୋଟିଏ ମସିହା ଖୋଜି ବାହାର କରିବାକୁ ଚାହୁଁଚ ?

ମାଧବୀ—ତମେ ଡରି ଯାଉଚ କାହିଁକି ? ତମେ ପରା ଇତିହାସର ଛାତ୍ର ?

ବିକ୍ରମ—ମୁଁ ମାନୁଚି ମାଧବୀ—ଇତିହାସରେ ବହୁ ସାଲ, ମସିହା, ସନ ରହିଚି । କିନ୍ତୁ ଗୋଟିଏ ମସିହାର ଇତିହାସ ନିର୍ଦ୍ଧାରଣ କରିବା ଯେ କି ଦୁଃଖ ଦାୟକ !

କନ୍ୟା—(ପୂର୍ବପରି କିନ୍ତୁ ଖୁବ୍ ଜୋରରେ) ମରିଗଲିଲେ ବାବା—ମରିଗଲି !

ବିକ୍ରମ—ଶୁଣୁଚ ମାଧବୀ !!

ମାଧବୀ—ତମେ ଡାକ୍ତର ଘରକୁ ଆସିଚ ବନ୍ଧମ । ବାପାଙ୍କ ଡାକ୍ତର-ଖାନାକୁ ପ୍ରତିଦିନ ବହୁ ରୋଗୀ ଆସନ୍ତି । ଆଉ ରୋଗୀ ଯେତେ-ବେଳେ ଆସନ୍ତି ସେମାନେ ନିଶ୍ଚୟ ଚିତ୍କାର କରିବେ । ମୁଁ ଆଉ ଶୁଣିବି କଣ ? ତମେ ଶୁଣ ମୁଁ ଯାହା କହୁଥିଲି ! ହଁ, ସେଇଠା କୋଉ ମସିହାର କଥା ତ ?

ବନ୍ଧମ—ମସିହା କାହିଁ ? ତମେ ତ ଏଯାଏଁ ଶତାବ୍ଦୀ ପାର ହୋଇନ ।

କମ୍ପା—(ପୂର୍ବପର ଆହୁରି ଜୋରରେ) ଓହୋ ହୋ—ମୁଣ୍ଡଟା କଣ ଆଉ ରହିବ ନାହିଁ !!

ବନ୍ଧମ—ଏ ଚିତ୍କାର ତ ରୋଗୀର ନୁହେଁ ମାଧବୀ !

ମାଧବୀ—ରୋଗୀର ନୁହେଁ ? ରୋଗୀ ନହେଲେ ପୁଣି ଚିତ୍କାର କରିବ କିଏ ?

ବନ୍ଧମ—ରୋଗୀ ତ ନିଶ୍ଚୟ—କିନ୍ତୁ ଇଏ ଯେମିତି ବାହାରର ରୋଗୀ ନୁହେଁ—ତମ କମ୍ପାଉଣ୍ଡର ବାବୁ !

ମାଧବୀ—ସତେତ ! କମ୍ପାଉଣ୍ଡର ବାବୁଙ୍କ ପାଟିପରି ଶୁଭିଲା ନା କଣ ? ଚେମ୍ବାରକୁ ଆସ ତ । (ଦୁହିଁଙ୍କର ପ୍ରସ୍ଥାନ)



## ଦ୍ୱିତୀୟ ଦୃଶ୍ୟ

(ଡାକ୍ତର ବାବୁଙ୍କ ଚେମ୍ବାର୍ । ପ୍ରାୟ ସବୁ ଝରକା କବାଟ ବନ୍ଦ ; ଭିତର ପାଖ ଦରଜା ଠେଲି ମାଧବୀ ଓ ବିକ୍ରମ ଆସିଲେ । ଗୋଟିଏ ବେଞ୍ଚ ଉପରେ ଆପାଦ ମସ୍ତକ ଗୁଦରରେ ଢାଙ୍କି ହୋଇ କମ୍ପାଉଣ୍ଡର ଶୋଇଅଛନ୍ତି )

କମ୍ପା—(କମ୍ପି କମ୍ପି) ଓହୋ ହୋ—ଓହୋ ହୋ !

ବିକ୍ରମ— ଇଏ କ'ଣ ଘୋଡ଼ାଘାଡ଼ି ହେଇ ଶୋଇଛନ୍ତି ! (ଡାକିଲା) କମ୍ପାଉଣ୍ଡରବାବୁ ! କମ୍ପାଉଣ୍ଡର ବାବୁ ! ( କମ୍ପାଉଣ୍ଡର ସେମିତି ଶୋଇ ରହି ଉତ୍ତର ଦେଲେ )

କମ୍ପା—ନାହାନ୍ତି । ଡାକ୍ତର ବାବୁ ନାହାନ୍ତି । ରୋଗୀ ଦେଖି ଯାଇଚନ୍ତି । ଓହୋ ହୋ ..

ମାଧବୀ—କମ୍ପାଉଣ୍ଡର ବାବୁ !

କମ୍ପା—(ପୂର୍ବପରି) ଘଣ୍ଟାଏ । ଡାକ୍ତର ବାବୁ ଫେରୁ ଫେରୁ ଆଉରି ଘଣ୍ଟାଏ ; ଘଣ୍ଟାଏ ପରେ ଆସ, ଓହୋ, ହୋ...

ମାଧବୀ—କିଏ ଆସିବ କମ୍ପାଉଣ୍ଡରବାବୁ ? ମୁଁ ପରା ମାଧବୀ ।

କମ୍ପା—(ଉଠିବସି) ମାଧବୀ ! କଣ ହେଇଚ ମା ? ପୁଣି ଦାନ୍ତ ମୂଳ ଧରିଲା ? ଆସ ମା, ଏଇ ପଟାସ୍ ପାଣିରେ ଟିକେ କୁଲକୁଞ୍ଚା କରି ପକାଅ ତ । ମୁଁ ଏ Paintଟା ଲଗେଇ ଦିଏ । ଏଇ ପିଲା ବୟସୁ ଯଦି ଏମିତି ଦାନ୍ତ ବେମାର ବାହାରେ—କି ମଣିଷ ଯେ ତମେ ହବ !! ଗୁବିଟା କୁଆଡ଼େ ଗଲା ? (ଆଲମିରା ଖୋଲିଲେ)

ମାଧବୀ—ଇଏ କଣ ? ଆପଣ ଆଲମିରା ଖୋଲିଲେଣି କାହିଁକି ? ଆପଣଙ୍କର କଣ ହେଇଚ ?

କମ୍ପା—ମୋ କଥା ଥାଉ ମା, ତମେ ଆସିଲ ।

ବଙ୍କମ—କମ୍ପାଉଣ୍ଡରବାବୁ !
କମ୍ପା—ଏଁ !
ବଙ୍କମ—ରୋଗୀ କଏ ?
କମ୍ପା—ମାନେ ?
ବଙ୍କମ—ଏଠି ଆମ ଭିତରେ ରୋଗୀ କଏ ?
କମ୍ପା—ଓ, ତେମେ ବଦେଁ ଆସିଚ ମୋ ରୋଗ ଭଲ କରିବାକୁ ?
ମାଧବ—କୁହନ୍ତୁ, ଆପଣଙ୍କର କଣ ହେଇଚ ?
କମ୍ପା—କଚ୍ଛୁ ହେଇନାହିଁ । ତମେ ବଦେଁ ଗଲ—ଯାଅ । ଓହୋ ହୋ —ଓହୋ ହୋ ! (ଗୁଦର ଘୋଡ଼ି ହୋଇ ବସିଲେ)
ବଙ୍କମ—ପୁଣି ହେଇତ ଘୋଡ଼ ଘାଡ଼ି ହେଇ ବସି ଓହୋ ହୋ ହେଲେଣି—କହୁଚନ୍ତି କ'ଣନା କଚ୍ଛୁ ହେଇନ !!
କମ୍ପା—ବୁଝିଲ ବଙ୍କମ ବାବୁ ! ଏ ଘରକୁ ଆସି ଆସି ତମକୁ ବ ଏ ରୋଗ ଧରିଲାଣି !
ବଙ୍କମ—ମତେ ରୋଗ ଧରିଲାଣି ?
ମାଧବ ଆପଣଙ୍କୁ ଜର ଆସୁଚ କମ୍ପାଉଣ୍ଡର ବାବୁ ? ପୁଣି ସେଇ ପୁରୁଣା ପାଳିଜର ?
କମ୍ପା—କଠକରୁ ମେଲେରିଆ ଉଠିଗଲାଣି, ସେ ଜର ନାଁ ଆଉ ଧରନାଇଁ । ( ଗୁଦରରେ ମୁହଁ ଢାଙ୍କିଲେ)
ମାଧବ—ଦେଖି—ଆପଣଙ୍କୁ କେମିତି ଜର ହେଇନ ? ମୁହଁରୁ ଚଦର କାଢ଼ିଲେ ।
କମ୍ପା—ଓହୋ, କାହିଁକ ମୋ ସାଥିରେ ଏମିତି ଲଗେଇଚ ? ମୋ ଦେହରେ ହାତ ଦିଅନାଇଁ । ଗଲ ତମେ ଏଠୁ—ଯାଅ, ଓହୋ ହୋ ।
ଲକ୍ଷ୍ମୀ—ମାଧବ—ମାଧବ । ( ଡାକ ଡାକ ଲକ୍ଷ୍ମୀ ଆସିଲେ)
ମାଧବ—ଦେଖିଲୁ ବୋଉ, କମ୍ପାଉଣ୍ଡର ବାବୁଙ୍କୁ !

ଲକ୍ଷ୍ମୀ—କ'ଣ ହୋଇଛି ତାଙ୍କର ? କମ୍ପାଉଣ୍ଡରବାବୁ, କ'ଣ ହୋଇଛି ? ବନ୍ଧମ, ତମେ ବି ତ ଏଠି ଅଛ ।

ବନ୍ଧମ—ମୁଁ ଥିଲେ କ'ଣ ହବ ? ସିଏ ପରା କିଛି କହୁ ନାହାନ୍ତି ।

ଲକ୍ଷ୍ମୀ—କମ୍ପାଉଣ୍ଡରବାବୁ, କ'ଣ ହୋଇଛି ?

ବନ୍ଧମ—ମୁଣ୍ଡଟା ଆଉ ନାହିଁ ବୋଲି ଏଇନେ ଏତେ ବଡ଼ ପାଟିରେ ଚିତ୍କାର କରୁଥିଲେ ।

ଲକ୍ଷ୍ମୀ—ତା'ହେଲେ ମୁଣ୍ଡ ଧରିଛି ନା, ମୁଣ୍ଡ ବନ୍ଧୁଛି ? (କମ୍ପାଉଣ୍ଡର ଶୋଇଲେ )

ମାଧବୀ—ମୁଣ୍ଡ ଧମକୁଛି ବୋଧହୁଏ । ଦେଖୁନୁ କେମିତି ହାଲିଆ ହୋଇ ପଡ଼ିଗଲେଣି !

ଲକ୍ଷ୍ମୀ - ମୁଣ୍ଡ ଯଦି ଧମକୁ ଥାଏ ତେବେ ହୋଇ, ଏ ପାଉଡରଟା ! ଆଉ ଯଦି ମୁଣ୍ଡ ଧରିଥାଏ—ତାହାହେଲେ· · ·କ'ଣ ସେ ପିଲ ନାଁ ଟି ! ସେଇ ହଳଦିଆ ଡବାରେ ଥାଏ ! ଏଇପରା, ଏଇଠି ଅଛି । ଆଲମାରି ଗୁଡିକଟା କାହିଁ ?

ବନ୍ଧମ—ସେ ନିଜେ କମ୍ପାଉଣ୍ଡର—ଆଉ ଆପଣ ରୋଗ ବ୍ୟବସ୍ଥା କରୁଚନ୍ତି ?

ଲକ୍ଷ୍ମୀ—ବୁଝିଲ ବାପା— ଇଏ ତ କୁଆଡ଼େ ରୋଗୀ ଦେଖି ଯାଇଚନ୍ତି । ଆଉ ଆମର ଏ କମ୍ପାଉଣ୍ଡର ବାବୁଟି ଗୋଟିଏ ଏମିତି ଲୋକ ଯେ, ରୋଗ ହେଲେ ଔଷଧର ପାଖ ପଶିବେ ନାହିଁ ! ଠିକ୍ ସମୟରେ ଯଦି ରୋଗର ବ୍ୟବସ୍ଥା ନ ହେଲା—ତା'ହେଲେ ଡାକ୍ତର ହଇରାଣ - ରୋଗୀ ହଇରାଣ । ଆଲମାରି ଗୁଡିକଟା କାହିଁ ମାଧବୀ ?

ମାଧବୀ—ସେଇ କମ୍ପାଉଣ୍ଡରବାବୁ ରଖିଚନ୍ତି । (ଡାକିଲା)କମ୍ପାଉଣ୍ଡର-ବାବୁ — କମ୍ପାଉଣ୍ଡରବାବୁ !

ବିକ୍ରମ—ସେ ଶୋଇଲେଣି ।
ଲକ୍ଷ୍ମୀ—ଶୋଇଲେଣି ?
ବିକ୍ରମ—ଏଇ ଦେଖୁନାହାନ୍ତି କେମିତି ନିଦ୍ଭୋଳ ନିଦରେ ଶୋଇଲେଣି !
ଲକ୍ଷ୍ମୀ—ହଉ ହଉ—ସେ ଶୋଇଥାନ୍ତୁ । ତମେ ସବୁ ଚାଲିଆସ ।
(ନିଜେ ଭିତରକୁ ଗଲେ)
ବିକ୍ରମ—ମୁଁ ଗୋଟାଏ କଥା ଭାବୁଚି ମାଧବୀ ।
ମାଧବୀ—କ'ଣ ?
ବିକ୍ରମ—ତମ ବାପା ତ ଡାକ୍ତର—
ମାଧବୀ—ହଁ ।
ବିକ୍ରମ—ଘରେ ତମର ଡାକ୍ତରଖାନା—
ମାଧବୀ—ହଁ ।
ବିକ୍ରମ—ଏଠି ରୋଗୀ ଅଛନ୍ତି—ଔଷଧ ବି ଅଛି—
ମାଧବୀ—ତୁମେ ଆଜି ନୂଆକଥା କ'ଣ କହୁଚ ?
ବିକ୍ରମ—ନୂଆକଥା ଏଇଯେ, ଏଠି ସବୁ ଅଛି—କିନ୍ତୁ କାହା ସହିତ କାହାର କିଛି ସମ୍ପର୍କ ନାହିଁ ।
ମାଧବୀ—ମିଛକଥା । ଅନେକ ଦିନ—ପ୍ରାୟ ଦୁଇବର୍ଷ ପରେ ତମେ ଆମ ଘରକୁ ଆସିଚ । ତମେ ଏ କଥା କିଛି ଜାଣନା । ଆସ ।
ବିକ୍ରମ—କମ୍ପାଉଣ୍ଡର ବାବୁ ଏଠି ଶୋଇଲେଣି ଯେ ?
ମାଧବୀ—ଶୋଇଥାନ୍ତୁ ।
ବିକ୍ରମ—ସେ ଆଦୌ ଶୋଇ ନାହାନ୍ତି ।
ମାଧବୀ—ମାନେ ?
ବିକ୍ରମ—ସେ ଶୋଇବାର ଛଳନା କରିଛନ୍ତି ।

ମାଧବୀ—ଅସମ୍ଭବ ନୁହେଁ । ଔଷଧ ଖାଇବା ଭୟରେ ସେ ପାଳେଇ ପଡ଼ୁଚନ୍ତି ।

ବନ୍ଧୁ—କଜେ କମ୍ପାଉଣ୍ଡର ହୋଇ ଔଷଧ ଖାଇବାକୁ ତାଙ୍କର ଏତେ ଭୟ !

ମାଧବୀ— ସେ ସେମିତିକା ଲୋକ । ଚବିଶ ଘଣ୍ଟା ତାଙ୍କର ଏଇ ଘରେ କଟେ । ଏଇଠି କାମ କରନ୍ତି, ଠାକୁର ପୂଜା କରନ୍ତି ଏଇଠି—ଏଇଠି ଖା'ନ୍ତି, ଏଇଠି ଶୁଅନ୍ତି – ଔଷଧପତ୍ର ସାଙ୍ଗରେ ସେ ଏମିତି ମିଶିଗଲେଣି ଯେ ଆଉ ଔଷଧ ଖାଇବାକୁ ତାଙ୍କର ଟିକେ ହେଲେ ଆଗ୍ରହ ନାହିଁ ।

ବନ୍ଧୁ – ତାଙ୍କର ଏ ରୋଗଟା ଏ ପରିବାରର ଆଉ କାହାକୁ ଧରି ନାହିଁ ତ ? ରୋଗ ହେଲେ ପୁଣି ମଣିଷ ଔଷଧ ଖାଇବ ନାହିଁ ?

ମାଧବୀ—ତମେ ଆସ ତ ।

ବନ୍ଧୁ—କାହିଁକି ଆଉ ଯିବା ? ଆଉ ଦୁଇ ମିନିଟ୍ ଗଲେ କମ୍ପାଉଣ୍ଡରବାବୁଙ୍କ ବିକଟ ଚିତ୍କାରରେ ସେଠି ବସି ରହିବା ଆଦୌ ସମ୍ଭବ ହବ ନାହିଁ । ବରଂ ଏଇ ଚେମ୍ବାର୍‌ରେ ହିଁ ବସ ।

ମାଧବୀ—ତା'ହେଲେ ଆସ—ମୋ ଶୋଇବା ଘରକୁ ଆସ । ସେଇଠି ବସି ଗପ କରିବା । ବାପା ତ ଏଯାଏଁ ଆସି ନାହାନ୍ତି—ଖାଇବାକୁ ଏଇନେ ବହୁତ ଡେରି—ଆସ ।

[ ଭିତରକୁ ଗଲେ । ଟିକିଏ ପରେ ସଦର ଦରଜା ଠେଲି ଈଷତ୍ ଶଙ୍କିତ ପଦରେ ଜଣେ ରୋଗୀ ଆସିଲା । ସେ ମଫସଲର ଲୋକ । ତା କଥାବାର୍ତ୍ତା କମ୍ବା ଗ୍ଭଲଚଳନରେ କିନ୍ତୁ ରୋଗର କୌଣସି ଲକ୍ଷଣ ପ୍ରକାଶ ପାଉ ନଥାଏ ]

ରୋଗୀ—ଏଇଟା ଡାକ୍ତର ବାବୁଙ୍କ ଘର ? ନରହରିବାବୁ ଡାକ୍ତରଙ୍କ ଘର ଏଇଟା ? ( କବାଟରେ ମରି ହୋଇଥିବା ନାମ ଲେଖା ପଟାକୁ ଗ୍ହିଁ ) ହେଇଚି, ଏଠି ନାଁ ଲେଖା ହେଇଚ ! ( ପଢ଼ିଲ ) "ଡାକ୍ତର ନରହରି ଦାସ—ନାହାନ୍ତି" । ଏଁ ! କୋଠାଟା ଅଛୁ—ନାଁ ଟା ଲେଖା ହେଇଚ – ଡାକ୍ତର ବାବୁ ନାହାନ୍ତି ! !

କମ୍ପା – ଓ ହୋ ହୋ ! କଏ ?

ରୋଗୀ—ମୁଁ । ମୁଁ ହରିପୁର ମୌଜାରୁ ଆସିଚି । ମୋ ନାଁ –

କମ୍ପା—ନାଁ ଥାଉ । ଏଣିକି ଆସ ।

ରୋଗୀ—ଇଏ କଣ ସତକଥା ଭାଇ ! ଡାକ୍ତରବାବୁ ଆଉ ନାହାନ୍ତି ?

କମ୍ପା—କ'ଣ କହୁଲ ? ଓହୋ – ହୋ ! ( କମ୍ପାଉଣ୍ଡର ଉଠିବସିଲେ )

ରୋଗୀ – ଏଇ ସେ ପଟା ଖଣ୍ଡିକରେ ପରି ଲେଖା ହେଇଚ— "ନାହାନ୍ତି" ।

କମ୍ପା—( ଚିଡ଼ିଯାଇ ) ନାହାନ୍ତି ବୋଲି କ'ଣ ରାଜ୍ୟ ଛାଡ଼ି ଚାଲିଯାଇ-ଚନ୍ତି !

ରୋଗୀ—କ'ଣ ଛାଡ଼ି କୁଆଡ଼େ ଯାଇଚନ୍ତି ମୁଁ ଜାଣିଲି କେମିତି ?

କମ୍ପା—ରୋଗୀ ଦେଖି ଯାଇଚନ୍ତି । ବସ । ଏଇ ସେ ବେଞ୍ଚଟାରେ ବସ । ଏଇଟା ଡାକ୍ତରବାବୁଙ୍କ ରୋଗୀ ଦେଖିବା ବେଳ ନୁହଁ । ଏ ଅବେଳଟାରେ କାହିଁକି ଆସିଲ ? ଓହୋ ହୋ ! ( ରୋଗୀ ବସିଲ )

ରୋଗୀ—ରୋଗର ପୁଣି ଭାଇ, ବେଳ ଅବେଳ କ'ଣ ? ତମେ ତ ପୁଣି ହେଇ ଆଇଚ ।

କମ୍ପା—ମୁଁ ଆଇଚ !

ରୋଗୀ—ରୋଗ ହେଇଚି ବୋଲି ଆଇଚନା । ନଇଲେ ମିଛଟାରେ କାଇଁକି କଏ ଡାକ୍ତର ଘରକୁ ଆସନ୍ତା ?

କମ୍ପା—ମୁଁ ରୋଗୀ ? ଓହୋ ହୋ ।
ରୋଗୀ—ଛଟପଟ ହଉଚ—
କମ୍ପା— ମୋ ରୋଗ କଥା ତେମେ ମତେ କହିବ ?
ରୋଗୀ—କ'ଣ ମୁଁ ଆଉ କହିଲି ଭାଇ !! ଡାକ୍ତରବାବୁ ତ
ନାହାନ୍ତି ।
କମ୍ପା—କମ୍ପାଉଣ୍ଡର୍ ବାବୁ ତ ଅଛନ୍ତି । ଓହୋ-ହୋ ।
ରୋଗୀ – ଆଁ--ଆପଣ କମ୍ପାଉଣ୍ଡରବାବୁ ?
କମ୍ପା—ହଁ ।
ରୋଗୀ—କି ଅଭାଗ୍ୟ କଥା ଆଜ୍ଞା ! ମୁଁ ଜାଣିପାରିଲି ନାହିଁ ।
ଦଣ୍ଡବତ ଆଜ୍ଞା । ଆପଣଙ୍କ ଦେହ ତ ଭଲନାହିଁ ।
କମ୍ପା—ମୋ ଦେହ କଥା ଥାଉ, ତମର କ'ଣ ହେଇଚି ?
ରୋଗୀ— ଭାରି ଜବର ରୋଗ ଆଜ୍ଞା ।
କମ୍ପା—ଜବର ରୋଗ ?
ରୋଗୀ— ହଁ ଆଜ୍ଞା, ଭାରି ଜବର ରୋଗ ହୋଇଚି ।
କମ୍ପା— କୁହ କ'ଣ ହେଇଚି, କି ରୋଗ ?
ରୋଗୀ—ନିଦ ଆଜ୍ଞା, ଆଉ କିଛି ନୁହେଁ—ନିଦ ।
କମ୍ପା—ନିଦ !!
ରୋଗୀ—ହଁ ଆଜ୍ଞା । କାମ କରୁଚି ତ କରୁଚି – ଚାଲୁଚି ତ
ଚାଲୁଚି—ଯେମିତି ବସିବି, ଶୋଇବାକୁ ମନ ହବ ।
କମ୍ପା—ସେଇଠୁ ?
ରୋଗୀ—ସେଇଠୁ ତ ଆଜ୍ଞା, ଶୋଇବି ଯେ ଶୋଇବି—ଦିନ ନାହିଁ,
ରାତିନାହିଁ— ଶୋଇଥିବି ! ବ୍ରହ୍ମା ଆସିଲେ ବି ଉଠିବି ନାହିଁ ।
ମଟରରେ କଟକ ଆସୁଥିଲି, ବେଞ୍ଚରେ ଯେମିତି ବସିଚି—
ଶୋଇଲି ।

କମ୍ପା—ସେଇଠୁ ?

ରୋଗୀ—ଡ୍ରାଇଭର ଗାଡ଼ିରୁ ଓହ୍ଲେଇ ଦେଲା । ଗୁଳିଗୁଳି ଆସିଲା ।

ରୋଗୀ—ଆଚ୍ଛା ରୋଗଟା ତମକୁ ଧରିଚି ?

ରୋଗୀ—(ହାଇମାରି) କାଇଁକି କହୁଚନ୍ତି ଆଜ୍ଞା ( ଶୋଇଲା )

କମ୍ପା—ଆରେ ଆରେ ସେଠି ଶୋଇଲଣି କ'ଣ ?

ରୋଗୀ—( ଅର୍ଦ୍ଧଚେତନା ଅବସ୍ଥାରେ ) ବସିବାକୁ କହିଲେ ପରା । ବସିଲେ ତ ଶୋଇବ ।

କମ୍ପା—ବସିବାକୁ କହିଲି ବୋଲି ତମେ ଶୋଇବ ! ଏ-ଇ ! ଉଠ । ଏଇଟା ତମ ଶୋଇବା ଜାଗା ନୁହେଁ—ଉଠ । ବାସ୍ ! ନିଘୋଡ଼ ନିଦରେ ଶୋଇଲାଣି ! ଆସନ୍ତୁ ଡାକ୍ତରବାବୁ—ବୁଝନ୍ତୁ । ମୋର ତ ଦେହ ଯାହା ହଉଚି—ଓହୋ--ଓହୋ ! ( ନିଜେ ପୁଣି ଶୋଇଲେ )



## ତୃତୀୟ ଦୃଶ୍ୟ

(ମାଧବୀ ଓ ବସନ୍ତ ଆଳାପରତ)

ମାଧବୀ—ହଁ, ଶୁଣ ସେଇଠୁ କ'ଣ ହେଲା ?

ବସନ୍ତ—କଥା ନ କହି ତା ହେଲେ ତୁମେ ରହିବ ନାହିଁ ?

ମାଧବୀ—ବେଶ୍ ଲୋକ ତ ତମେ ! ଏତେ ଦିନ ପରେ ଦେଖା ହେଲା । ପଦେ କଥା କହିଲେ ତମେ ଅଧୀର ହୋଇ ପଡ଼ୁଚ ?

ବସନ୍ତ—ତମ କଥାରୁ, ମୋ ପାଇଁ ଅମୃତ ଝରୁଚି ମାଧବୀ । କିନ୍ତୁ ତମେ ପିଲା ଦିନର ସେଇ ମାଧବୀ ତ ? ପିଲାବେଳେ ତ ତମେ ଏତେ ଗପୁଡ଼ି ନ ଥିଲ ! ଡାକ୍ତରଙ୍କ ଝିଅ ତମେ—ଡାକ୍ତର-ମାନେ ତ ମୋଟେ କଥା ପ୍ରିୟ ନୁହନ୍ତି । କିନ୍ତୁ ତୁମ ବାକ୍ପଟୁତା ଦେଖିଲେ ମନେହଉଚି, ତମେ ଡାକ୍ତର ପରିବାରର ଝିଅ ନୁହଁ !

ମାଧବୀ—ମୋ କଥା ତମେ ଶୁଣସାର—ତା'ପରେ ତମେ କହିବ—ମୁଁ ଡାକ୍ତର ପରିବାରର ଝିଅ କି ନୁହେଁ !

ବସନ୍ତ—ଏମିତି କଥା ! ବେଶ୍, ତେବେ କୁହ ।

ମାଧବୀ—ମସିହା କଥା ଗୁଡ଼ିକ—ଶତାବ୍ଦୀରୁ ଆରମ୍ଭ କରୁଚି ।

ବସନ୍ତ—ବେଶ୍ ।

ମାଧବୀ—ପ୍ରାୟ ଅଠରଶହ ଶତାବ୍ଦୀର କଥା । ସେତେବେଳେ ଆମ ଦେଶର ଅବସ୍ଥା କେମିତି ଥିଲା ?

ବସନ୍ତ—ଘିଅ ମହୁରେ ଭାସୁଥିଲା । ଟଙ୍କାରେ ଘିଅ ଆଠ ସେର, ମହୁ ଅଠର ସେର ।

ମାଧବୀ—ଲୋକଙ୍କ ଅବସ୍ଥା ଜାଣିଥିବ ତ—ଖୂବ୍ ସୁସ୍ଥ ସବଳ ଥିଲେ !

ବାଙ୍କମ—ଘିଅ ଟଙ୍କାକୁ ଆଠସେର ମିଳିଲେ ଅବସ୍ଥା ଯାହା ହବାର କଥା ହୋଇଥିବ ।

ମାଧବୀ—ଆଚ୍ଛା, ସେତେବେଳେ ମେଲେରିଆ ଜର ଭଲ ଆମ ଦେଶରେ ଥିଲା ?

ବାଙ୍କମ—ମେଲେରିଆ ଜର ! ! ତମ କଥାର ଧାରା ତା'ହେଲେ ମେଲେରିଆ ଜର ଆଡ଼କୁ ଗତି କରୁଚି ?

ମାଧବୀ—( ହସି ) ଡାକ୍ତରଙ୍କ ଝିଅ ପରା !

ବାଙ୍କମ—ନାଁ, ଏଥର ଆଉ ଅସ୍ୱୀକାର କରିବାର ଉପାୟ ନାହିଁ ।

ମାଧବୀ—ଠିକ୍ ଏତିକବେଳେ—ବମ୍ବେ ବନ୍ଦରରେ ଲଗିଲା ଏକ ଇଂରେଜ ଜାହାଜ ।

ବାଙ୍କମ—Very interesting ! କୁହ, କୁହ, ତା'ପରେ କ'ଣ ହେଲା ?

ମାଧବୀ—ଜାହାଜରେ ଆସିଥିଲେ ବହୁ ସଂଖ୍ୟକ ଇଂରେଜ ନାବିକ, ବଣିକ, କର୍ମଚାରୀ, ସୈନିକ, ସ୍ତ୍ରୀ, ପୁରୁଷ, ବାଳକ, ବାଳିକା—ଆଉ ଆସିଥିଲେ ଜଣେ—

ଲକ୍ଷ୍ମୀ—( ଅନ୍ୟ ଘରୁ ) ଓହୋ-ହୋ-ହୋ ! ମରିଗଲି ଲେ ବୋଉ ଓହୋ-ହୋ !

ବାଙ୍କମ—ଇଏ ପୁଣି କାହାର ଚିତ୍କାର ମାଧବୀ ? କାହାର ପୁଣି କ'ଣ ହେଲା ?

ଲକ୍ଷ୍ମୀ—ଓହୋ ହୋ ! ( ଲକ୍ଷ୍ମୀ ଆସିଲେ )

ମାଧବୀ—ବୋଉ ! କ'ଣ ହଉଚି ତୋର ବୋଉ ?

ଲକ୍ଷ୍ମୀ—ଏଇ ଅଗିଆଙ୍ଗୁଳିଟାଲୋ' ! ସକାଳୁ କିଛି ନ ଥିଲାଟି—ଏଇନେ ଟିକେ ମାଂସଟା କସି ବସିଲି ଯେ, ପୁଣି ଧକ୍‌ଧକ୍ ହୋଇ ଉଠୁଚି ।

ମାଧବୀ—ତୁ କାହିଁକି ମାଂସ କସିବାକୁ ଯାଉଥିଲୁ ?

ଲକ୍ଷ୍ମୀ—କି କଥା କହୁଚୁଲେ ? ଏତେ ଦିନକେ ପୁଅଟା ମୋ ଘରକୁ ଆଇଚ—ଗୃକର ପୁଝାରୀଙ୍କ ହାତରେ ସବୁ ଛାଡ଼ି ଦେଇ ନିଶ୍ଚିନ୍ତ ହେଇ ବସିବି ? ଶାମ ! ଆଣିଲୁ ନା ନାଇଁମ ?

ମାଧବୀ—ଶାମ କଣ ଆଣିବ ?

ଲକ୍ଷ୍ମୀ—ଗୋଟାଏ କାଗିଜ ଲେମ୍ବୁ କାଟି ଆଣିବାକୁ କହିଚ ( ଶାମକୁ ) ଆଣିଲୁ [ କଟା କାଗଜଲେମ୍ବୁସହ ଶାମ ଆସିଲା ]

ଶାମ—ହିଁ, ମା ନିଅ ।

ଲକ୍ଷ୍ମୀ—ଖଣ୍ଡେ ପତଳା କନା ଆଣ । ହିଁ, ସେଇ ଖଣ୍ଡିକ ହବ, ଦିଅ, ଏଇ କାଗିଜ ମିଶାକର ଆଙ୍ଗୁଠିରେ ପଟି ବାନ୍ଧିଦିଅ । ଓହୋ, ହୋ ! (ଶାମ ପଟି ବାନ୍ଧିବାରେ ଲଗିଲା )

ମାଧବୀ—ବୋଉ ? ସେଁ କଣ ହଉଚ ବୋଉ ?

ଲକ୍ଷ୍ମୀ—ଦେଖୁଚୁ ପରୀ—କାଗିଜ ମଡ଼େଇ ପଟି ବାନ୍ଧୁଚ ।

ମାଧବୀ—ଘରେ ଦଶ ଦଶଟା ଆଲମାରୀରେ ଔଷଧଭର୍ତ୍ତି । ତୁ ଟୋ ମନଇଚ୍ଛା ଚିକିତ୍ସା କରିବୁ, ବାପା ଘରେ ନାହାନ୍ତି ବୋଲି ସିନା ! ରହ, ମୁଁ ତୋ ପାଇଁ ଔଷଧ ଆଣୁଚ । ( ଦ୍ରୁତଗତିରେ ଚାଲିଗଲା )

ଲକ୍ଷ୍ମୀ—ଆଲୋ ହେ ମାଧବୀ । ଆଲୋ ଶୁଣିଯା । ମାଧବୀ !! ଦେଖୁଚ ସେ ପାଗଳୀଟାକୁ ? ଓହୋ ହୋ···

ବିକ୍ରମ—ମୋ ପାଇଁ ଆଜ ଆପଣ ଏ କଷ୍ଟ ଭୋଗିଲେ ।

ଲକ୍ଷ୍ମୀ—କଷ୍ଟ ! କି କଷ୍ଟ ଭୋଗିଲି । ଅଙ୍ଗୁଳିଟା ଟିକିଏ ଧକ୍ ଧକ୍ ହଉଚ । ଆଉ ଘଡ଼ିକୁ ରହିଯିବ ନାଇଁଯେ—ଓହୋ-ହୋ ।

ବିକ୍ରମ—ଏଇନେତ ହେଇ ଯନ୍ତ୍ରଣା ପାଉଚନ୍ତି । ପୁଝାରୀ କ'ଣ ମାଂସ ରାନ୍ଧିଥିଲେ ହେଇ ନଥାନ୍ତା ! ଆପଣ ଏତେ କଷ୍ଟ କରିବାକୁ ଗଲେ ?

ଲକ୍ଷ୍ମୀ—ମଣିଷ ଜୀବନ କେତେ କଷ୍ଟ ଭୋଗୁଚ ! ଏଇ ଘୁରୁ କଥାଟା ପାଇଁ ତେମେ ସବୁ ଏମିତି ହଉଚ ! କୁଆଡ଼େଗଲ ସେ ପାଗଳୀଟା—( ଟ୍ରେପେଇ ଘରକୁ ପୁଣି ଗଲେ । କିଛି ପରେ ମାଧବୀ ଓ କମ୍ପାଉଣ୍ଡର ଆସିଲେ )

ମାଧବୀ—ବୋଉ, ବୋଉ ! କାହିଁ ନାହିଁତ ଏଠି ! ବସନ୍ତ, ବୋଉ କୁଆଡ଼େ ଗଲା ?

ବସନ୍ତ—ପୁଣି ଯାଇ ଟ୍ରେପେଇ ଘରେ ।

କମ୍ପା—କ ଆଶ୍ଚର୍ଯ୍ୟ କଥା ! ହାତରେ ଅଘଙ୍ଗୁଳ—ସେ ଯାଇ ଟ୍ରେପେଇ କଲେଣି ।

ମାଧବୀ—(ଡାକିଲା) ବୋଉ, ବୋଉ !

ଲକ୍ଷ୍ମୀ—( ଅନ୍ତରାଳରୁ ) କ'ଣ ?

ମାଧବୀ—ପଦାକୁ ବାହାରିଆ । ( ଲକ୍ଷ୍ମୀ ଆସିଲେ )

ଲକ୍ଷ୍ମୀ—କାଇଁକ ? କ'ଣ ହେଇଚ ?

କମ୍ପା—ଏଇ ପିଲ୍‌ଟା ଖାଇ ଦିଅନ୍ତୁ ମା ? ସେଥର ଅଘଙ୍ଗୁଳ ବାହାରି ଥିଲା ବେଳେ ଯୋଉ ଔଷଧ ଖାଇଥିଲେ, ଏଇଟା ଠିକ୍ ସେଇ ଔଷଧ ।

ଲକ୍ଷ୍ମୀ—ଔଷଧ କ'ଣ ତମର ମାଗଣା ଆଉଚକି କମ୍ପାଉଣ୍ଡର ବାବୁ ? ଯାହା କଲୁ ହେଲେ—ଔଷଧ !! ମୁଁ ଔଷଧ ଖାଇବିନାହିଁ । ମୋ ଆଙ୍ଗୁଠି ଭଲ ହେଇ ଗଲାଣି ।

ମାଧବୀ—ଏଇ ପାଞ୍ଚ ମିନିଟି ଭିତରେ ଭଲ ହେଇଗଲା ?

ଲକ୍ଷ୍ମୀ—ହଁ ।

କମ୍ପା—ଆଗୁ ! ଔଷଧ ନଖାଇଲେ ନାହିଁ—ଆସନ୍ତୁ ଏ ମଲମଟା ଦେଇ ପଟି ବାନ୍ଧିଦିଏ ।

ଲକ୍ଷ୍ମୀ—ତମେତ ଆଗୁ ଲୋକ କମ୍ପାଉଣ୍ଡର ବାବୁ ! ପଟିଟା ବାନ୍ଧ-

ଦେଇ କହୁଚ—ଏଗୁରାକ ବିଷ, କୋଉଥିରେ ହାତ ଦିଅନା—ଚୁପ୍ ହୋଇ ଶୁଅ ।

ମାଧବୀ—ହଁ ତ ! ତୁ ଚୁପ୍ ହୋଇ ଯାଇ ଶୁଅ ।

ଲକ୍ଷ୍ମୀ – କୋଉ ଦିନ ଏଡ଼େ ଘରଣୀ ହୋଇଗଲୁ ? ଏତେ ଦିନରେ ଜୁଆଁଟା ମୋ ଘରକୁ ଆଇଚ । ମୁଁ ଯାଇ ତେଣେ ଶୋଇବି – ଏଣେ ପୃଥ୍ୱୀଯାକ କଞ୍ଚା ଦରସିଝା ଯାହା ପାରିବ – ତା ଆଗରେ ନେଇ ଥୋଇଦବ ।

ଶାମ – ଦି' ଦି' ବର୍ଷ ହେଲା ଆପଣଙ୍କ ଘରେ ରହିଲଣି— କୋଉଦିନ ଭଲ କଞ୍ଚା ଦରସିଝା କରିଚ ?

ଲକ୍ଷ୍ମୀ—ଥାଉ, ତେମେ ଆଉ ପାଟି କରନା ! ନଡ଼ିଆ ରସ କଲ ?

ଶାମ—ଏଇ ଏ ପ୍ଲେଟରେ—

ଲକ୍ଷ୍ମୀ—ଏଇକ୍ଷେ ମା—ଇଏ କୁଆଡ଼େ ନଡ଼ିଆ ରସ ବାହାରିଚ ! ଏମିତି ମେଞ୍ଚା ମେଞ୍ଚା ହୋଇ ବଟା ହୋଇଚ କ'ଣ ?

ଶାମ—ମୁଁ 'ତ ମଧିଆକୁ କହିଲି—ମଧିଆ ଏମିତି ବାଟିଦେଲା ।

ଲକ୍ଷ୍ମୀ—ତମକୁ ତା'ସାଥିରେ ମିଶେଇ ବାଟି ଦେଲା ନାହିଁ ! ଅପଦାର୍ଥ ! ସିଏତ ନୂଆଲୋକ—ତାକୁ ତମେ କହୁଥିଲ କାହିଁକି ? ଯାଅ ଆଉ ଠିଆହୋଇ ଦେଖୁଚ କ'ଣ ? ଆଉ ଗୋଟିଏ ନଡ଼ିଆ ଛେଚି ରସ ବାହାର କରି ଆଣ । ଫୁର୍ତ୍ତି ! ଏଥିରେ ପୁଣି କୁଆଡ଼େ ମୁଁ ଯା' ଜମା ଶୋଇହେବ ଘର ଗୁଡ଼ ଦେଇ ହାତରେ ଔଷଧ ବାନ୍ଧ ଖଟ ଉପରେ ଶୋଇବି !

ବିକ୍ରମ—କେବଳ ମୋ'ରି ପାଇଁ ସିନା ଆପଣ ଏମିତି ହଇରାଣ ହଉଚନ୍ତି ।

ଲକ୍ଷ୍ମୀ—ତେମେ ବି ଯା'ଙ୍କରି ଭଳି ପାଗଳ ହେଲଣି ପୁଅ ! ତେମେ ସବୁ ଯିବଟି ଏଠୁ, ଯାଅ ! କଉ କମ୍ପାଉଣ୍ଡରବାବୁ—ମୁଣ୍ଡରେ

କମ୍ପୋଟଂ'ଟା ବାନ୍ଧ ଏମିତ୍ତ ମୁହିଁ ଶୁଖେଇ ଠିଆ ହେଇଚ କାହିଁକି ? ତମ ନିଜ ଦେହ କଥା ଆଗେ ଯାଇ ବୁଝ ।

ବନମ—ଆପଣ କମ୍ପାଉଣ୍ଡର ବାବୁଙ୍କୁ ଔଷଧ ଖାଇବାକୁ କହୁଚନ୍ତି— କିନ୍ତୁ ନିଜେ—

ଲକ୍ଷ୍ମୀ—ଆରେ ବାବୁ—ଯେତେ ହେଲେ ସେ ପରପୁଅ ।

କମ୍ପା—ପରପୁଅ ! ପଚଶ ବର୍ଷ ହେଲା ଏ ଘରେ ବାନ୍ଧ ହେଇ ପଡ଼ିଲ ଭଳି ପଡ଼ିଚ—ଆଜି ମୁଁ ହେଲି ପରପୁଅ !

ଲକ୍ଷ୍ମୀ—(ହସି ହସି) ଦେଖୁଚ ଯୁାଙ୍କ ବୁଦ୍ଧିକୁ ! କଓ, ମୁଁ କ'ଣ ଏଇଆ କହିଲି ? ତମେ ଯେତେବେଳେ ଏ ଘରେ ବାନ୍ଧ ହେଇ ପଡ଼ିଚ— ତମ ହାନିଲାଭ ଆମେ ନ ବୁଝିବୁ ତ ବୁଝିବ କିଏ ? ଆଜି ଡାକ୍ତର ବାବୁ ଥିଲେ ତମେ ଏମିତ୍ତ ଫାଙ୍କି ଦେଇ ଥା'ନ୍ତ !

କମ୍ପା—ସେଇ କଥାତ ମା ! ବାବୁ ନାହାନ୍ତି ବୋଲି ଆପଣ ବି ମତେ ଫାଙ୍କି ଦେଲେ ! ହଉ—ତେଣେ ଯାଇ ଦେଖେ—ସେ ରୋଗୀଟା ଶୋଇଥିଲା, କ'ଣ ହେଲା ! ( ପ୍ରସ୍ଥାନ )

ମାଧବୀ—ସତ କହୁଚୁ ବୋଉ, ତୋ' ଆଙ୍ଗୁଠି ଆଉ ବିନ୍ଧୁ ନାହିଁ ?

ଲକ୍ଷ୍ମୀ—ଆଲୋ ନାହିଁ ପର—ଭଲ ହେଇ ଗଲାଣି ।

ମାଧବୀ—ମିଛ । ତୋ' ମୁହଁରୁ ଜଣା ପଡ଼ୁଚି, ତୋ' ଆଙ୍ଗୁଠି ବିନ୍ଧୁଚି । ଖାଲି ଔଷଧ ଖାଇବା ଭୟରେ ତୁ ମନା କରୁଚୁ ।

ଲକ୍ଷ୍ମୀ—ଏଇଟା ! ଏଠି ବକର ବକର ହେଇ ମତେ କାମ କରେଇ ଦବ ନାହିଁ—ମୁଁ ଯାଏଁ । ( ପ୍ରସ୍ଥାନ )

ମାଧବୀ—ଦେଖିବ ଆଜି—ନଡ଼ିଆ ରସ, ଜାଫ୍ରାନ୍ ଆଉ ଭିନିଗାର୍ ଦେଇ ବୋଉ ଆଜି ଯୋଉ ମାଂସ ତରକାରି ରାନ୍ଧିବ ନା — ଫାଷ୍ଟକ୍ଲାସ !

ବନମ— ହଉ । ତା'ଆଗରୁ ତମ ଗପଟା ଶୁଣାଯାଉ—ଭାରି ଚମତ୍କାର କହୁଥିଲ ।

ମାଧବୀ—ହଁ, କ'ଣ କହୁଥିଲିଟି ? ହଁ । ସେ ଜାହାଜରେ ଆସିଥିଲେ ଜଣେ Fashionable ଇଂରେଜ ମହିଳା ।

ବନମ— ମାନେ ?

ମାଧବୀ—ତାଙ୍କ ସଉକରେ ସୀମା ନ ଥିଲା । ନା, ଭୁଲ କହିଲି, ସୀମା ନଥିଲା ନୁହେଁ—ଅତି ବିଚିତ୍ର ତାଙ୍କ ସଉକ ! ଆଚ୍ଛା କୁହତ ଦେଖି, ଲୋକଙ୍କର ଏମିତି ସୃଷ୍ଟିଛଡ଼ା ବିଚିତ୍ର ସଉକ୍ କଥା ତମେ କେତେ ଜାଣ ?

ବନମ—ଶୁଣିଛି—ଆମେରିକାର ଜଣେ ଭଦ୍ରଲୋକ ଦିନେ ରାତିରେ ଘରକୁ ଫେରି ଦେଖନ୍ତି ଯେ ତାଙ୍କ ଶୋଇବା ଘରେ ଗୋଟେ ଗ୍ରେଟ ସାପ ।

ମାଧବୀ—ମା'ଲୋ !

ବନମ —ଶୀତଦିନ ! ସାପଟା ଶୀତରେ ହଇରାଣ ହଉଚି । ଆଉ କିଏ ହୋଇଥିଲେ ହୁଏତ ସାପଟାକୁ ସେଇଠି ମାରି ଦେଇ ଥା'ନ୍ତା । କିନ୍ତୁ ଭଦ୍ରଲୋକ ସାପଟାକୁ ଶୀତ ଦାଉରୁ ବଞ୍ଚେଇବା ପାଇଁ ତାଙ୍କ ସ୍ତ୍ରୀଙ୍କ ଯୋତା ଭିତରେ ନେଇ ରଖିଦେଲେ ।

ମାଧବୀ—ଏଁ !

ବନମ — ତା' ପରଦିନ ତାଙ୍କ ସ୍ତ୍ରୀଙ୍କ ଅବସ୍ଥା ତମେ ବୁଝି ପାରୁଥିବ ! ଆଉ ଜଣେ ବିଶ୍ୱ ବିଖ୍ୟାତ୍ ସିନେମା ଅଭିନେତ୍ରୀଙ୍କର ନିଜର ଗୋଟିଏ ଚିଡ଼ିଆ ଖାନା ଅଛି—ସେ ଚିଡ଼ିଆ ଖାନାରେ କିନ୍ତୁ ସେ ହାତୀ ପୋଷନ୍ତି ନାହିଁକି ସିମ୍ପାଞ୍ଜି ପୋଷନ୍ତି ନାହିଁ । ପୋଷନ୍ତି କେବଳ ବେଙ୍ଗ ।

ମାଧବୀ—ବେଙ୍ଗ !

ବିକ୍ରମ—ହଁ, ହରେକ୍ ରକମର ହଜାର ହଜାର ବେଙ୍ଗ । ତାଙ୍କର ପୁଣି ଏମିତି ସଉକ୍ ଯେ, ସେ ଯୁଆଡ଼େ ଯାନ୍ତି—ପକେଟ୍‌ରେ ପୁଞ୍ଜାଏ ହିପୁଞ୍ଜା ବେଙ୍ଗ ନେଇ ଯା'ନ୍ତି ।

ମାଧବୀ—ଠିକ୍ ଏମିତି ଏକ ଅଦ୍ଭୁତ ସଉକ୍ ଥିଲା ସେ ଭଦ୍ର ମହିଳାଙ୍କର ! ଯୋଡାରେ ଅବଶ୍ୟ ତାଙ୍କର ସାପ ପୋଷା ହୋଇ ନ ଥିଲା କି ପକେଟ୍‌ରେ ସେ ବେଙ୍ଗ ପୂରେଇ ଆସି ନ ଥିଲେ । କିନ୍ତୁ ସାପ—ବେଙ୍ଗଠୁ ବଳି ଆଉ ଏକ ବିଚିତ୍ର ପଦାର୍ଥ ସେ ପକେଟ୍‌ରେ ନେଇ ବିଲାତରୁ ଘରକୁ ଆସିଥିଲେ ।

ବିକ୍ରମ—କୋଉଠୁ ପାଇଲ ଏ କାହାଣୀ ?

ମାଧବୀ—କହିବ ପରି ମୁଁ ଡାକ୍ତରଙ୍କ ଝିଅ !

ବିକ୍ରମ—କିନ୍ତୁ ଏ କାହାଣୀ ସହିତ ଡାକ୍ତରୀ ବିଦ୍ୟାର ଯେ କି ସମ୍ବନ୍ଧ ଅଛି······

ମାଧବୀ—( ଈଷତ୍ ଯନ୍ତ୍ରଣାରେ ) ଉଃ······

ବିକ୍ରମ—ତମର କ'ଣ ହେଲା ?

ମାଧବୀ—କିଛି ନାହିଁ । ପାନଖଣ୍ଡେ ଖାଇଥିଲି—ଭଲ ଲାଗୁନି । ରୁହ ଟିକିଏ, ମୁହଁଟା ଧୋଇ ଆସେ···[ମାଧବୀ ଉଠିଗଲା ]



## ଚତୁର୍ଥ ଦୃଶ୍ୟ

[ ଡାକ୍ତର ବାବୁଙ୍କ ଚେମ୍ବାର । ରୋଗୀଟି ଶୋଇଛି । କମ୍ପାଉଣ୍ଡର ଯୁଦର ଘୋଡ଼ି ହୋଇ ବସିଚନ୍ତି । ଝରକା କବାଟ ସବୁ ବନ୍ଦ ]

ଡାକ୍ତର—(ବାହାରୁ କବାଟରେ ଆଘାତ କରି) କମ୍ପାଉଣ୍ଡର ବାବୁ—କମ୍ପାଉଣ୍ଡର ବାବୁ ! କବାଟ କାହିଁକି ବନ୍ଦ ହୋଇଚି ? ଖୋଲନ୍ତୁ ।

( କମ୍ପାଉଣ୍ଡର ଉଠିଯାଇ କବାଟ ଖୋଲିଲେ । ଡାକ୍ତର ଆସିଲେ ।)

ଡାକ୍ତର—ଏସବୁ କ'ଣ ହୋଇଚି ? ଝରକା କବାଟ ସବୁ ବନ୍ଦ ? ଖୋଲନ୍ତୁ—ସବୁ ଖୋଲନ୍ତୁ ।

( କମ୍ପାଉଣ୍ଡର ସବୁ ଖୋଲିଲେ । ଡାକ୍ତର ଚୌକିରେ ବସିଲେ )

ଡାକ୍ତର—ରଘୁ କାହିଁ ?

କମ୍ପା—ରଘୁ ଆଜି ଦିନଟା ଛୁଟି ନେଇଚି ।

ଡାକ୍ତର—ଆପଣ ଡାକ୍ତର ଖାନା ବନ୍ଦକରି ଦେଇଥିଲେ କାହିଁକି ?

କମ୍ପା—ମୁଁ ଭାବିଲି ସାର୍—ଖାଇବା ବେଳ ହୋଇ ଗଲାଣି—ଆପଣ ଆଉ ଏଣିକି ଆସିବେ ନାହିଁ ।

ଡାକ୍ତର—ଆସିବି ନାହିଁ ତ—ଏ ଔଷଧ ଗୁଡ଼ାକ ପୁଣି ରୋଗୀ ପାଇବେ କେମିତି ? ନିଅନ୍ତୁ—ଏ କେତୋଟା ଔଷଧ ତିଆରି କରି ଦିଅନ୍ତୁ ! ଏଁ ! ଆପଣଙ୍କର କ'ଣ ହୋଇଚି ?

କମ୍ପା—ନା ସାର୍ - କିଛି ହୋଇ ନ ଡ ।

ଡାକ୍ତର—ମୁଣ୍ଡରେ ମଫ୍‌ଲରଟା ଗୁଡ଼ରେଇଚନ୍ତି କାହିଁକି ?

କମ୍ପା—ନା ସାର୍, ସେ କିଛି ନୁହେଁ । ଏ ସବୁଗୁଡ଼ା ଔଷଧ ବର୍ତ୍ତମାନ ତିଆରି ହବ ?

ଡାକ୍ତର—ହଁ ବର୍ତ୍ତମାନ କରିଦିଅନ୍ତୁ—ସେ ଆସି ନେଇଯିବ ।

କର୍ମ୍ମା—ହଉ ସାର୍‌, ବର୍ତ୍ତମାନ କରି ଦଉଚି ।

ଡାକ୍ତର—କର୍ମ୍ମାଉଣ୍ଡର ବାବୁ !

କର୍ମ୍ମା—ସାର୍ ।

ଡାକ୍ତର—ଆପଣଙ୍କର ପୁଣି ସେ ରୋଗ ବାହାରିଲା ?

କର୍ମ୍ମା—କି ରୋଗ ସାର୍ ?

ଡାକ୍ତର—ଦେହ ଅସୁସ୍ଥ ହେଲେ ମଦେ ଲୁଚେଇବା ରୋଗ !

କର୍ମ୍ମା—ନା ସାର୍‌, ମୋ' ଦେହ କିଛି ହେଇନି ।

ଡାକ୍ତର—କିନ୍ତୁ ଆପଣଙ୍କୁ ଦେଖିଲେ ଜଣା ପାଉଚି ଆପଣ ଅସୁସ୍ଥ ।

କର୍ମ୍ମା—(ହସି ହସି ) ଅଣ୍ଟାଟା ଟିକିଏ କପ୍ କପ୍ ହଉଥିଲା—ଭଲ ହୋଇଗଲାଣି ।

ଡାକ୍ତର—ହଉ ଯାନ୍ତୁ, ଔଷଧ ତିଆରି କରନ୍ତୁ ।

( ଘୁଙ୍ଗୁଡ଼ି ଶବ୍ଦ ଶୁଭିଲା )

କିଏ ?······କିଏ ସେଠି ଶୋଇଚି ? କିଏ ?

କର୍ମ୍ମା—କହିବାକୁ ଭୁଲି ଯାଇଥିଲି ସାର୍—ସେ ଜଣେ ରୋଗୀ ।

ଡାକ୍ତର—ରୋଗୀ ! ଅଥଚ ଏମିତି ଆରାମ୍‌ରେ ନିଘୋଡ଼ ନିଦରେ ଶୋଇଛି !

କର୍ମ୍ମା—ସେଇତ ତା'ର ରୋଗ ସାର୍ !

ଡାକ୍ତର—ମାନେ ?

କର୍ମ୍ମା—ନିଦ । ତା'ରୋଗ ହଉଚି—ନିଦ । ସେ କୁଆଡ଼େ ବସିଲେ ଶୋଉଚି—ଆଉ ଶୋଇଲେ ଉଠୁନାହିଁ ।

ଡାକ୍ତର—ସେଇଥି ପାଇଁ ଆପଣ ତାକୁ ଝରକା କବାଟ ବନ୍ଦ କରି ନିଶ୍ଚିନ୍ତରେ ଶୁଆଇ ରଖିଚନ୍ତି ? ଉଠାନ୍ତୁ ତାକୁ ।

କର୍ମ୍ମା—ସେ କ'ଣ ଉଠିବ ?

ଡାକ୍ତର—କି ମୁସ୍କିଲ ! ଉଠିବ ନାହିଁ ତ ତାକୁ ଏଠି ଶୁଆଇଲେ କାହିଁକି ?

କମ୍ପା—ଠିକିଏ ରୁହନ୍ତୁ ସାର୍, ମୁଁ ଆଗେ ଏଇ ମିକ୍‌ଶ୍ଚରଟା ତିଆର କରି ଦିଏ ।

ଡାକ୍ତର—ଆଚ୍ଛା ମୁସ୍କିଲ କଥା—ଲୋକଟା ଏଠି ଶୋଇ ରହିଲା !

ହୋ ବାବୁ—ଶୁଣୁଚ—ଅରେ ଉଠ—କି ଆଶ୍ଚର୍ଯ୍ୟ କଥା !



## ପଞ୍ଚମ ଦୃଶ୍ୟ

( ପୂର୍ବପର ମାଧବୀ ଓ ବିକ୍ରମ ଆଳାପରତ )

ମାଧବୀ—ଶୁଣ, ତା'ପରେ କ'ଣ ହେଲା । ବମ୍ବେରୁ ଅଜନ୍ତା—ଅଜନ୍ତାରୁ କାଶ୍ମୀର—ସେଇଠୁ ଆଗ୍ରା-ତା'ପରେ ସେ ଭଦ୍ର ମହିଳା ଆସି ପହଞ୍ଚିଲେ ବଙ୍ଗ ଦେଶରେ ।

ବିକ୍ରମ—ଓଡ଼ିଶା ଆସି ନାହାନ୍ତି ?

ମାଧବୀ—ନା ! ଓଡ଼ିଶା ନ ଆସି, ସେଇ ବଙ୍ଗଦେଶରେ ଥାଇ ସେ ଓଡ଼ିଶାକୁ ଯୋଉ ଦାନ ଦେଇ ଯାଇଛନ୍ତି—ଓଡ଼ିଶାବାସୀ ତାକୁ କାଳକାଳ ଧରି ଭୁଲି ପାରିବେ ନାହିଁ ।

ବିକ୍ରମ—ଦାନ ! କିଦାନ ?

ମାଧବୀ—ଯାହା ସେ ଏତେ ସଉକରେ ବିଲାତରୁ ପକେଟରେ ପୂରେଇ ଏ ଦେଶକୁ ଆଣିଥିଲେ ବିଲାତିଦଳ ।

ବିକ୍ରମ—କ'ଣ ? ବିଲାତି ଦଳ ?

ମାଧବୀ—ବିଲାତି ଦଳର ସେଇ ଧଳା ଆଉ ନୀଳ ରଙ୍ଗର ଫୁଲ ଉପରେ ତାଙ୍କର ସଉକ । ସଉକ୍ କରି ବଙ୍ଗ ଦେଶର କୋଉ ଏକ ଗାଁରେ, ଗୋଟିଏ ଚମତ୍କାର ପୋଖରୀ ଭିତରେ ସେ ଦଳଟିକ ଭସାଇ ଦେଲେ—ତା'ପରେ ସେଇ ଗୋଟିକ ଦଳ ସାରା ବଙ୍ଗ ଦେଶ ବ୍ୟାପି ଆସିଲା—ଆମ ଓଡ଼ିଶାକୁ ଆଉ ସେଇ ସଙ୍ଗେ ସଙ୍ଗେ ଆସିଲେ କୋଟି କୋଟି ମେଲେରିଆ ମଶା । ମେଲେରିଆ ଜର ଆମର ପରମ ବନ୍ଧୁ ହୋଇ ଏ ଦେଶରେ ଘରଦ୍ୱାର ବାନ୍ଧି ରହିଗଲା ।

ବିକ୍ରମ—ବାସ୍ତବିକ୍ ମାଧବୀ ମେଲେରିଆ ଜର ଉପରେ ଏ

ଚମତ୍କାର କାହାଣୀ ଶୁଣି ତମ ପାଖରେ ହାର ମାନିବାକୁ ପଡ଼ିବ ।

ମାଧବୀ—[ ଯନ୍ତ୍ରଣାରେ ] ଉଃ

ବନ୍ଦନ—କଣ ହେଲା ମାଧବୀ ?

ମାଧବୀ—କିଛି ନାହିଁ ।

ବନ୍ଦନ—କିଛି ନାହିଁ କେମିତି ? ମୁଁ ମଝିରେ ମଝିରେ ଲକ୍ଷ୍ୟ କରୁଛି ତମର କୋଉଠି କେମିତି ଯନ୍ତ୍ରଣା ହଉଛି । କଣ ହେଉଛି ?

ମାଧବୀ—ନାଇଁମ—ଏ ଦାନ୍ତମୂଳଟା ହଠାତ୍ କାଇଁକି ଫୁଲି ଯାଉଛି । ଉଃ !

ବନ୍ଦନ—କମ୍ପାଉଣ୍ଡର୍ ବାବୁ ତା' ହେଲେ ଠିକ୍ କହୁଥିଲେ ।

ମାଧବୀ—ଆରେ ନା ନା ! ତାଙ୍କ କଥା ମୋଟେ ଶୁଣ ନାହିଁ ।

ବନ୍ଦନ—ଶୁଣିବି ନାଇଁ କେମିତି ? ସେତେବେଳେ ସେ ସିନା ନଜାଣି କହୁଥିଲେ—ବର୍ତ୍ତମାନ ତ ପ୍ରକୃତରେ ତମ ଦାନ୍ତ ରୋଗ ବାହାରିଲାଣି । ତମେ ଆସ ।

ମାଧବୀ—କୁଆଡ଼େ ? ଉଃ !

ବନ୍ଦନ—ଔଷଧ ଖାଇବ । ଦାନ୍ତମୂଳେ paint ଲଗେଇବ ।

ମାଧବୀ—ତମେ ପାଗଳ ହେଲ ? ଟିକିଏ ଗରମ ପାଣି କୁଳୁକୁଞ୍ଚା କଲେ ଭଲ ହେଇଯିବ । ମୁଁ ଔଷଧ ଖାଇବି କାହିଁକି ?

ବନ୍ଦନ—ଏ'ତ ଅତି ଅଦ୍ଭୁତ ବ୍ୟାପାର ଏଠି ମୁଁ ଦେଖୁଛି । ଏଠି ସମସ୍ତଙ୍କର ରୋଗ ହେଉଛି—କିନ୍ତୁ ଚିକିତ୍ସା ପାଇଁ ସମସ୍ତେ ନାରାଜ । କ'ଣ ଡାକ୍ତର ପରିବାରର ଲୋକ ବୋଲି ବିନା ଚିକିତ୍ସାରେ ସମସ୍ତଙ୍କର ରୋଗ ଭଲ ହେଇଯିବ ? ତମେ ଆସ ।

ମାଧବୀ—ତମକୁ ଗଣଅଛି ବନ୍ଦନ—କାହାକୁ ଏକଥା କହି କୁହ

ନାହିଁ । ଦାନ୍ତରେ paint ଲଗେଇ ବସିଲେ ଜାପାନ୍ ନଡ଼ିଆ-ରସ ଆଉ ଭିନେଗାର ଦିଆ ମାଂସ ତରକାରୀଟା ଆଉ ଖାଇ ହବନି । ଓଃ !

ବିକ୍ରମ—ମାଂସ ତରକାରୀ ଖାଇବାର ଲୋଭ ଥିଲା ତ ଏମିତି ସଜେଇ ସାଜେଇ ମେଲେରିଆ ଜରର କାହାଣୀ ଗପୁଥିଲ କାହିଁକି ? ଖାଲି ଗୁରୁଏ ଗପିଗପି ତମ ଦାନ୍ତମୂଳ ବିନ୍ଧିଲା । କାହିଁକି ଏତେ ଗପୁଥିଲ ? ମୁଁ କ'ଣ କୁନିକୁଆ ହୋଇଚି ଯେ ମତେ ପାଖରେ ବସେଇ ଗପ ଶୁଣଉଥିଲ ?

ମାଧବୀ—( ହସି ପକେଇଲେ )

ବିକ୍ରମ—ଉଃ ! ଯନ୍ତ୍ରଣାରେ ପଚ୍ଛେ ମୁହଁ କଳା ପଡ଼ି ଗଲାଣି—ଏଣେ ହସ ଉଚ୍ଛୁଳି ପଡ଼ୁଚି । କାହିଁକି ଏତେ ଗପୁଥିଲ ?

ମାଧବୀ—କି କଥା ଯେ ତମେ କୁହ ? ଏତେଦିନ ପରେ ଦେଖା ହେଲେ ଘଣ୍ଟାଏ ଅଧେ ଗପିବାରେ କ'ଣ ଦୋଷ ଥାଏ ?

ବିକ୍ରମ—ଫାଲଗୁନ ସତର ଦିନ ପରେ ତ ରାତି ରାତି ବସି ଗପିବାର ସୁବିଧା ପାଇବ—

ମାଧବୀ—ହେ ! ! ବୋଉ ସେ ଘରେ ଅଛି ।

ବିକ୍ରମ—ଦେଖି, ଆଁ କରିବଟି । ( ମାଧବୀ ଆଁ କଲା ) ଇରେ ବାବା, ଇଏ ତ ଠିକି ଭଳିଆ ଫୁଲି ଯାଇଚି । କ'ଣ କରାଯିବ ଏବେ ?

ମାଧବୀ—କିଛି କରିବା ଦରକାର ନାହିଁ—ତମେ ବସ । ଓଃ !

ବିକ୍ରମ—ତମେ ଏମିତି ଓଃ ଆଃ ହଉଥିବ ଆଉ ମୁଁ ଚୁପଚାପ ବସିଥିବ ! ନାଃ—କିଛି ଗୋଟାଏ କରିବାକୁ ହେବ ।

—*—

## ଶେଷ ଦୃଶ୍ୟ

( ଡେମ୍ବାର । ଲକ୍ଷ୍ମୀ ଆସିଲେ )

ଲକ୍ଷ୍ମୀ—ତମେ ଆସିଲଣି କି ?

ଡାକ୍ତର—ହଁ ! ତମର କ'ଣ ହଉଚି ?

ଲକ୍ଷ୍ମୀ—କାଇଁ କିଚ୍ଛୁ ନାଇଁ ତ ।

ଡାକ୍ତର—ହାତଟା ଏମିତି ଚଟ୍‌କିନ୍ ଲୁଚେଇ ଦେଲ ଯେ ? ଦେଖି ।

ଲକ୍ଷ୍ମୀ—ମଲା । ଲୁଚେଇ ଦେବ କ'ଣ ମ ! ଏଇ ଦେଖୁନ, କିଚ୍ଛୁ ନାହିଁ । ଖାଇବ ଆସ ।

ଡାକ୍ତର—ଆଉ ଟିକିଏ କାମ ଅଛି—ସାରିଦିଏ, ଏ ଲୋକଟା ପୁଣି ଏଠି ଶୋଇଚି ।

ଲକ୍ଷ୍ମୀ—( ଈଷତ୍ କମ୍ପିତଗଳାରେ )—ଶୁଣିଚନା ?

ଡାକ୍ତର—କ'ଣ ?

ଲକ୍ଷ୍ମୀ—ଆମ କମ୍ପାଉଣ୍ଡରବାବୁ—

ଡାକ୍ତର—କଣ ହେଲା ?

ଲକ୍ଷ୍ମୀ—ତାଙ୍କୁ ଦେଖି ବୁଝି ପାରୁନ ? ଜର ହେଇଚି କି କଣ—ଲୁଚଉଛନ୍ତି ।

ଡାକ୍ତର—ଜର ତ ନୁହେଁ—ଅଣ୍ଟା କପ୍ କପ୍ ହଉଥିଲା ବୋଲି କହୁଥିଲେ ।

ଲକ୍ଷ୍ମୀ—ସୁଦ୍ ମିଛକଥା, ଏଇ ଅଧଘଣ୍ଟାଏ ତଳେ ପରା "ମୁଣ୍ଡଗଲା" "ମୁଣ୍ଡଗଲା" ବୋଲି ପାଟି କରୁଥିଲେ । ତାଙ୍କୁ ଡାକ ପଚାର, କଣ ହେଇଚି ନଇଲେ ଏମିତି ଲୁଚେଇ ଲୁଚେଇ ରୋଗ ବଢ଼ିବ । ତମେ ଚାଲିଲ ଆସ—ମୁଁ ବଢ଼ାବଢ଼ି କରୁଚି ।

( ପ୍ରସ୍ଥାନ )

ଡାକ୍ତର—କମ୍ପାଉଣ୍ଡର ବାବୁ । ( କମ୍ପାଉଣ୍ଡର ପାଖକୁ ଆସିଲେ )
କମ୍ପା - ସାର୍—ଭୁଲିଯାଇଥିଲି ସାର୍ ।
ଡାକ୍ତର—କଣ ଆପଣ ସବୁକଥା ଏମିତି ଭୁଲି ଯାଉଛନ୍ତି ?
କମ୍ପା—ନାଇଁ ଆଜ୍ଞା—ଆମ ମା ।
ଡାକ୍ତର—କଣ ହୋଇଛି ତାଙ୍କର ?
କମ୍ପା—ଆପଣ ଜାଣି ନାହାନ୍ତି ?
ଡାକ୍ତର—ନା, ଏଇତ ସିଏ ଅସିଥିଲେ – କିଛିତ କହିଲେ ନାହିଁ ।
କମ୍ପା—ତା'ହେଲେ ଆଜ୍ଞା ସିଏ ଲୁଚେଇଚନ୍ତି ।
ଡାକ୍ତର—କଣ ହୋଇଛି ତାଙ୍କର ?
କମ୍ପା—ଡାହାଣ ହାତ ମଝି ଆଙ୍ଗୁଠିରେ ଅଗଙ୍ଗୁଲି ବାହାରିଛି । ବନ୍ଧା ଛୁଟିବାର ସୀମାନାହିଁ । ବୋପାଲେ ମାଲେ କହୁ ଗଡୁଥିଲେ । ଔଷଧ ଖାଇବାକୁ କହିଲି – ମନାକଲେ । ହାତରେ ଫାଳେ କାଗିଜି ଲେମ୍ବୁ ବାନ୍ଧିଚନ୍ତି ।
ଡାକ୍ତର—କାଗିଜି ଲେମ୍ବୁ ! ଆରେ ସତେତ ଲେମ୍ବୁ ଫାଳଟା ଏଠି ପଡ଼ିଚି । ଏଇଥିପାଇଁ ହାତଟା ସେତେବେଳେ ଲୁଚେଇ ଦେଲେ । ( ଡାକିଲେ ) ଆରେ ଶାମ ! ମା'ଙ୍କୁ ଡାକିଦେ ତ ।
କମ୍ପା—ଆପଣଙ୍କ ନ ଆସିଥିଲେ ମତେ ଫାଙ୍କି ଦେଇଥାନ୍ତେ !
ଡାକ୍ତର—ଆପଣଙ୍କର ମିକ୍ସ୍‌ଚର ତିଆରି ସରିଲା ?
କମ୍ପା—ଆଉ ଗୋଟାଏ ଅଛି ସାର୍ ! ସାରି ଦଉଚି । ( ବଙ୍କମ ଅସିଲା)
ଡାକ୍ତର—ଆରେ ! ବଙ୍କମ ! ବସ ! ତମ ବାପା ଆଜି ଚିଠି ଦେଇଛନ୍ତି । ସେ କାଲି ଏଠିକି ଆସୁଚନ୍ତି । କାଲି ସମସ୍ତେ ମିଶି ଭୁବନେଶ୍ୱର ଯିବା । କ'ଣ ହୋଇଚି ତମର ?
ବଙ୍କମ—ମୋର କିଛି ହୋଇନି ସେ······
ଡାକ୍ତର—ଆଉ କାହାର କ'ଣ ହୋଇଚି ?

ସନ୍ତମ—ମାଧବୀ—
ଡାକ୍ତର—ମାଧବୀର କ'ଣ ହେଲା ?
ସନ୍ତମ—ଦାନ୍ତମୂଳ ଫୁଲ ଯନ୍ତ୍ରଣା ସନ୍ଧ୍ୟା—ଅଥଚ···
ଡାକ୍ତର—ଅଥଚ ସେ ଔଷଧ ଖାଇବାକୁ ନାରାଜ !
ସନ୍ତମ—ଆଜ୍ଞା !
ଡାକ୍ତର—ବୁଝିଲ ସନ୍ତମ—ଏଇଟାଇ ଆମ ପରିବାରର ସବୁଠୁ ବଡ଼ ରୋଗ ! ଡାକ୍ତର ପରିବାର କ'ନା—ରୋଗ ଆପେ ଆପେ ଭଲ ହୋଇଯିବ !
ସନ୍ତମ—ଠିକ୍ ଏଇ କଥା ମୁଁ ତାକୁ କହୁଥିଲି ।
ଡାକ୍ତର—କାହିଁ ଗଲା ସେ ?
ସନ୍ତମ—ଶୋଇଚି । ଡାକି ଆଣିବି ?
ଡାକ୍ତର—ହଁ, ଯାଅ—ଡାକିଆଣ । ( ସନ୍ତମର ପ୍ରସ୍ଥାନ ) କମ୍ପାଉଣ୍ଡର-ବାବୁ !
କମ୍ପା—ସାର୍ !
ଡାକ୍ତର—ମିକ୍ସ୍‌ଚର ତିଆରି ସରିଲା ?
କମ୍ପା—ହଁ ସାର୍—
ଡାକ୍ତର—ମୁହଁରେ ଥର୍ମାମେଟର୍ ଦେଇ ଏଠିକି ଆସନ୍ତୁ ।
କମ୍ପା—ସା···ର୍ !
ଡାକ୍ତର—ମୁହଁରେ ଥର୍ମାମେଟର୍ ଦେଇ ଏଠିକି ଆସନ୍ତୁ ।
[ ଏତିକି ବେଳେ ଲକ୍ଷ୍ମୀ ପୁଣି ଆସିଲେ ]
ଲକ୍ଷ୍ମୀ—ମତେ ଡାକୁଥିଲ ?
ଡାକ୍ତର—ହଁ । ତମ ଦେହ ଭଲ ଅଛି ?
ଲକ୍ଷ୍ମୀ—ମଲା ! ଦେଖୁଚ—ଭଲ ମଣିଷଟା ମୁଁ ତମ ଆଗରେ ଠିଆ ହୋଇଚି—ଆଉ ପଚାରୁଚ କ'ଣ ?

ଡାକ୍ତର—ହାତଟା ଦେଖି ! ଏ ହାତ ନୁହେଁ—ଡାହାଣ ହାତ ।

ଲକ୍ଷ୍ମୀ—ଦେଖନ୍ତୁ··ଉଃ···ମରିଗଲି ଲୋ ବୋଉ··ଜାଣିଶୁଣି ହାତଟା ଚିପି ଦଉଚ !!

ଡାକ୍ତର—ଜାଣିଲି ଆଜ କେମିତି ? ଖାଲି ଶୁଣିଲି ଯେ ହାତରେ ଅସୁଙ୍ଖଳ ହୋଇଚି । ବସ ଏଠି । ଅପରେସନ୍ ହବ ।

ଲକ୍ଷ୍ମୀ—କଣ ହେଲା ?

ଡାକ୍ତର—କଷ୍ଟ ହୋଇନ—ବସ । କମ୍ପାଉଣ୍ଡରବାବୁ—

ଲକ୍ଷ୍ମୀ—ସେଇ କମ୍ପାଉଣ୍ଡର ବାବୁ ତମ ଆଗରେ ଆସି ଏ କଥା ଫୋଡ଼ଚନ୍ତି ।

ଡାକ୍ତର—କମ୍ପାଉଣ୍ଡର ବାବୁ ! ଓ ! ପାଟିରେ ଥର୍ମମେଟର ଅଛି ପରା । କାଢ଼ନ୍ତୁ ଦେଖି । ( ଥର୍ମମେଟର ଦେଖି ) ହୁଁ, ଶଏଦୁଇ ! ବସନ୍ତୁ ଏଠି । ( ମାଧବୀ ଓ ଶ୍ୟାମ ଆସିଲେ ) କିଏ ? ମାଧବୀ ! ଦେହ ଭଲ ଅଛି ମା ।

ମାଧବୀ—ହୁଁ ବାପା, ମୋର କଷ୍ଟ ହୋଇନି । ହେଲେ ବୋଉର ଅସୁଙ୍ଖଳ ବାହାରିଛି ଆଉ କମ୍ପାଉଣ୍ଡର ବାବୁଙ୍କ···

ଡାକ୍ତର—ତୁ ପାଟି ଆଁ କଲୁ !

ମାଧବୀ—ଶ୍ୟାମ ! ତମେ ଆସି ବାପାଙ୍କୁ ଏକଥା କହୁଚ ?

ଡାକ୍ତର—ଘରେ ତିନିଜଣ ରୋଗୀ !! ଇଏ କହୁଚି ତା ଦେହ ଖରାପ, ସିଏ କହୁଚି ତା ଦେହ ଖରାପ—ଅଥଚ ନିଜ ଦେହ ବେଳକୁ ସମସ୍ତେ ଚୁପ୍‌ଚାପ !

ଲକ୍ଷ୍ମୀ—କି ଗୋଟାଏ ନବରଙ୍ଗ ଏଠି ଲଗିଚି ଶୁଣେ ? ତମର ରୋଗୀ ଯିଏ—ସିଏ ହେଇ ସେଠି ଶୋଇଚି । ଆମର କାହାରି କଷ୍ଟ ହୋଇନି । ( ରୋଗୀ ଉଠି ବସିଲା )

ରୋଗୀ—ଏଁ ! ଡାକ୍ତର ବାବୁ ଆଇଲେଣି ? ଦଣ୍ଡବତ ଆଜ୍ଞା ।

ଡାକ୍ତର—କଓ—ତମର କ'ଣ ହୋଇଚ ?
ରୋଗୀ—ନାଇଁ ଆଜ୍ଞା ରୋଗ ଛୁଡ଼ିଗଲା ।
ଡାକ୍ତର—ଛୁଡ଼ିଗଲା ?
ରୋଗୀ—ହଁ ଆଜ୍ଞା । ଏଠି ଯୋଉ କଡ଼ା ଔଷଧ ଗନ୍ଧ ! ! ମଝିରେ ଦୁ'ଥର ମୋ ନିଦ ଭାଙ୍ଗି ଯାଇଚି ।
ଡାକ୍ତର—ଔଷଧ ଗନ୍ଧରେ ତମ ରୋଗ ଛୁଡ଼ିଗଲା ?
ରୋଗୀ—ହଁ ଆଜ୍ଞା ! ଏ ଘରେ ଶୋଇଲେ ଆଉ ନିଦ ନା ରୋଗ ! ହଜୁରଙ୍କ ପାଖରେ ଗୃହକଥା ବାକଥା ନାହିଁ—ରକ୍ଷାପାଉ ! ମୋ ଘର ହରିପୁର, ଆଜ୍ଞା । ନର ଚୌଧୁରୀଏ ମତେ ଆପଣଙ୍କ ପାଖକୁ ପଠେଇଥିଲେ ।
ଡାକ୍ତର—ଓ ! ଚୌଧୁରୀଏ ତମକୁ ପଠେଇଥିଲେ ! ଆଚ୍ଛା ରୁହ, ତମ କଥା ବୁଝାଯିବ ।
ଲକ୍ଷ୍ମୀ—ତାଙ୍କ କଥାତ ବୁଝିବ—ଏଣେ ବେଳ କେତେ ହେଲାଣି ? ଖାଇବ ଆସ । ଯମ ପରା ତମକୁ ଅନେଇ ଅନେଇ ଏ ଯାଏ ଖାଇନି ।
ଡାକ୍ତର—ଯମ ନାଁରେ ପାର ହୋଇ ଯିବାକୁ ବସିଚ ? ଆଗେ ତମ ଭିଜିଜଣଙ୍କ ବ୍ୟବସ୍ଥା ନ ହେଲେ - ଆରେ ଏ କଣ ? ତମେ ଚାଲ ଯାଉଚ ଯେ—
ଲକ୍ଷ୍ମୀ—ମୁଁ ଏଣେ ବଢ଼ାବଢ଼ି କରୁଚି—ଆସ । ( ପ୍ରସ୍ଥାନ )
ଡାକ୍ତର—କମ୍ପାଉଣ୍ଡର ବାବୁ ! ଆପଣଙ୍କ ପାଇଁ ଏଇ ମିକ୍ସ୍‌ଚରଟା ତିଆରି କରନ୍ତୁ—ବର୍ତ୍ତମାନ । ଆଉ ମାଧବୀ, ତୁ ଆଁ କର ତ—ଏ paintଟା ଆଗେ ଲଗେଇଦିଏ ।
ମାଧବୀ—ଖାଇସାରିଲା ପରେ ଲଗେଇଲେ ହବ ନାଇଁ ବାପା ?
ଡାକ୍ତର—ଖାଇସାରିଲା ପରେ ? ଦେଖି ତୋ ନାଡ଼ୀ ଦେଖି ।

( ଦେଖିଲେ ) ଆରେ ! ତୋ’ ଦେହରେ ଟି’ଚ ସାମାନ୍ୟ ଜର ଅଛି ।

କମ୍ପା—ହେଲେ ମାଧବୀ ମା ମୋର ଠିକ୍ କହୁଛ । ଖାଇ ସାରିଲା-ପରେ ଯାହାର ଯାହା ବ୍ୟବସ୍ଥା କରିବେ । ଆଗେ ଖାଇବେ ଚାଲନ୍ତୁ ।

ଡାକ୍ତର—କଣ ହେଲା ? ଶଏଦୁଇ ଡିଗ୍ରୀ ଜରରେ ଆପଣ ଭାତ ଖାଇବେ ?

କମ୍ପା—ଭାତ ନୁହେଁ ସାର୍ ।

ଡାକ୍ତର—ଆଉ ?

ବନ୍ଦମ—( ହସି ) ଜାଫ୍ରାନ୍, ନଡ଼ିଆରସ ଆଉ ଭିନେଗାର ଦିଆ-ମାଂସ ତରକାରି—ଏଇଆ ନା ?

କମ୍ପା –( ଖୁସିହୋଇ ) ହଁ ବାବୁ, ସେଇଆ ।

ଡାକ୍ତର—ଏମିତି କଥା ! ଆଚ୍ଛା ! ମୁଁ ସମସ୍ତଙ୍କ କଥା ଆଜି ବୁଝୁଛି ।···ସେ ଗଲେ କୁଆଡ଼େ ? ( ପ୍ରସ୍ଥାନ )

ମାଧବୀ—ବାପା ଏଇ ଚେମ୍ବରେ ଘରକୁ ଗଲେଣି ! ବୁଝିଲେ କମ୍ପାଉଣ୍ଡର ବାବୁ, ଆପଣଙ୍କ ସକାଶେ ଏ ସବୁ ଗଣ୍ଡଗୋଳ ! ମୋ ଦାନ୍ତମୂଳ ଫୁଲିବା କଥା ଆପଣ କାହିଁକି ବାପାଙ୍କ କାନରେ ଫୋଡ଼ିଲେ ?

ବନ୍ଦମ—ସିଏ ଫୋଡ଼ ନାହାନ୍ତି—ମୁଁ ଫୋଡ଼ିଛି ।

ମାଧବୀ - ତମେ ଜାଣିନ ବନ୍ଦମ—କମ୍ପାଉଣ୍ଡରବାବୁ ବି କମ୍ ନୁହନ୍ତି ।

କମ୍ପା—ଖାଲି ମୋ’ରି ଦୋଷ ଦଉଚ ? ମା’ କେମିତି ମତେ ଜର ହବା କଥା ବାବୁଙ୍କ କାନରେ ଫୁସ୍ ଫୁସ୍ କରି ଫୋଡ଼ି ଦେଇ ଗଲେ ! !

ବନ୍ଦମ—ବର୍ତ୍ତମାନ ଏବେ କଣ କରାଯିବ ?

କମ୍ପା—କଛୁ ନାଇଁ । ଆଗେ ଖିଆପିଆ ହେଇଯାଉ । ଖାଇ ସାରିଲାକ୍ଷଣି ତ ବାବୁ ଘଣ୍ଟାଏ ଅଧେ ଶୋଇବେ । ତା'ପରେ ଆଉ କିଏ କାହାକୁ ପଚୃରେ ! ନିଦରୁ ଉଠି ବାବୁ ଯେମିତି ଚେମ୍ବାରକୁ ଆସିବେ—ଦଶ କୋଡ଼ିଏଟା ବ୍ଲଡ଼ ରିପୋର୍ଟ, ଷ୍ଟୁଲ୍ ରିପୋର୍ଟ ଆଉ ଏକ୍ସ୍‌ରେ' ରିପୋର୍ଟ ଧରେଇ ଦେବ । ତା'ପରେ ଲାଗିଯିବ ରୋଗୀଙ୍କ ଭିଡ଼—ବାବୁଙ୍କୁ ଆଉ କଥା-କହିବାକୁ ଫୁର୍‌ସତ୍ ନ ଥିବ ! ନା, କଣ କହୁଚ ମା ?

ମାଧବୀ—ଠିକ୍ । ଦେଖିଲତ ବନ୍ଧନ, କମ୍ପାଉଣ୍ଡର୍‌ଙ୍କ ବୁଦ୍ଧି ! !

ବନ୍ଧନ—ଦେଖିଲି । ଡାକ୍ତରଙ୍କ ପରିବାରର ରୋଗୀମାନେ ତା' ହେଲେ ନିଜ ରୋଗ କଥା ଭୁଲି ସ୍ୱୟଂ ଡାକ୍ତରଙ୍କ ପାଇଁ ଏ ଭଳି ସୁନ୍ଦର ବ୍ୟବସ୍ଥା କରିଥା'ନ୍ତି ?

ମାଧବୀ—ହଁ ବାବୁ, ଠିକ୍, ସେଇଆ । ତମେ ଆସ, ବୋଉ ତେଣେ ବଡ଼ାବଡ଼ି କରିବଣି । ଆସନ୍ତୁ କମ୍ପାଉଣ୍ଡରବାବୁ ।

କମ୍ପା—ଚାଲ ମା, ଚାଲ । [ ସମସ୍ତଙ୍କର ପ୍ରସ୍ଥାନ ]



## ଏ ପରିବାରରେ ଅଛନ୍ତି

ମହାଜନ ସଦେଇ ସାହୁ—ଗୃହସ୍ୱାମୀ

ସନେଇ—ତାଙ୍କ ବଡ଼ପୁଅ, ବୟସ ୨୦

କୁଣିଆ—ତାଙ୍କ ସାନପୁଅ, ବୟସ ୧୨

ମାଳି— ତାଙ୍କ ଝିଅ, ବୟସ ୧୫

ସନାବୋଉ—ତାଙ୍କ ସ୍ତ୍ରୀ

ମଥୁରି—ତାଙ୍କ ଗୁମାସ୍ତା

ଓ

ବଦେଇ – ଜଣେ ଗ୍ରାମ୍ୟ କୃଷୀ



[ ଏ ପରିବାରର ରଚନାକାଳ—ଅକ୍ଟୋବର ୧୯୪୮ ]

# ଗାଁ ମହାଜନ ସଦେଇ ସାହୁଙ୍କ ପରିବାର

## ପ୍ରଥମ ଦୃଶ୍ୟ

[ସଦେଇ ସାହୁଙ୍କ ଦାଣ୍ଡଘର । ସେଦିନ ଦୁର୍ଗାଷ୍ଟମୀ । ସକାଳ — ପ୍ରାୟ ଆଠଟା । ସଦ୍ୟସ୍ନାତ, ପଟ୍ଟବସ୍ତ୍ରପରିହିତ ସଦେଇ ଖଣ୍ଡିଏ ପଟି ଉପରେ ବସି ଦୁର୍ଗା ସ୍ତୋତ୍ର ପାଠ ଆରମ୍ଭ କରିଚନ୍ତି ]

ସଦେଇ—ଓଁ ମା ଦୁର୍ଗା—ମା ଦୁର୍ଗତିନାଶିନୀ ମା, ଦକ୍ଷକନ୍ୟା !! (ସ୍ତୋତ୍ରପାଠ) "ଦୁର୍ଗାଦେବୀ ଶିରଃ ପାତୁ ଲଲାଟଂ ଶୂଳଧାରିଣୀ; ଚକ୍ଷୁଷି ଖେଚରୀ ପାତୁ କର୍ଣ୍ଣୌଚ ବରବାହିନୀ । ନାସାଂ କପାଳିନୀ ପାତୁ ଶ୍ରୋତ୍ରେ ଦୈତ୍ୟଧାରିଣୀ, ହୃଦୟଂ ଲଳିତା ଦେବୀ, ଉଦରଂ ସିଂ........" (ଅଗଣା ଭିତରକୁ ଚାହିଁ, ସ୍ତୋତ୍ର ବନ୍ଦକରି) ସିଏ ସେଠି କଣ ହେଉଚ ? ବଉଳ ଧାନ କଣ ଆଜି-କାଲି ଧାନରେ ଗଣା ହଉନି ନା କ'ଣ ? ଗଲାସନ ପରା ବଉଳ ବଲକୁ ଦା' ଯାଇ ନ ଥିଲା ! ଏସୁ ଧାନ ଦ'ଟା ହେଉଚି ବୋଲି କାହାରି ଆଖି ସେଠିକି ପଡୁନି ! ତିନି ଦିନ ହେଲା ମେଲା ଘରଟାରେ ଗଦା ହେଉଚି !! (ଡାକିଲେ) ମଥୁରୀ ! ହୋ

ମଥୁରା !···କାଇଁ, ତାଙ୍କର କ'ଣ ଦେଖା-ଦର୍ଶନ ଅଛି ? ମୁଁ ତାଙ୍କୁ ଗୁମାସ୍ତା କରି ରଖିଚି, କି ସିଏ ମତେ ଏଠି ମହାଜନ କରି ଥାପିଚନ୍ତି—ସେ କଥା ସେଇ ମା' ଦୁର୍ଗା ଜାଣେ ! ମା' ଗୋ ···ମା ! (ସ୍ତୋତ୍ରପାଠ) "ନାସାଂ କପାଳମା ପାତୁ ଶ୍ରୋତ୍ରେ ଦୈତ୍ୟଧାରିଣୀ ; ହୃଦୟଂ ଲଳିତା ଦେବୀ, ଉଦରଂ ସିଂ···' (ପୁଣି ପୂର୍ବପରି) ହେଇ·····! ହେଇ·····!! ହାସ୍—ହାସ୍—ହାସ୍ ! ଆରେ ସେ ଦାମୁରାଣ୍ଡା କାହାର ? ସେରେ କି ପାଞ୍ଚପା ଧାନ ଚକ୍ରୁ କରି ଦେଲାଣି !!·····ମଥୁରା ! ହୋ ମଥୁରା—

[ ସନା ବୋଉ ଆସିଲେ ]

ସନାବୋଉ—କ'ଣ ହେଲା ? କାଇଁକି ଏମିତି ହୁରି ପକେଇଚ ?

ସଦେଇ—କୋଠିଆ ଗୁଡ଼କର ପାଞ୍ଚ ପାଞ୍ଚଟା ! କ'ଣ ଏମିତି ଲାଟବନ୍ଦୀ କାମ ଗୁଡ଼ାଲଚ ଯେ, ବରିଆଳଧାନ ଦି'ଟା ଓଳିଆ ବନ୍ଧା ହୋଇ ରହି ପାରୁନ ?

ସନାବୋଉ—ଦଶହରା ପର୍ବରେ ପୁଣି କୁହକର କୋଠିଆ ତମ ଘରକୁ ଆସି ଓଳିଆ ବାନ୍ଧିବେ ?

ସଦେଇ—ଦଶହରା ପର୍ବ ବୋଲି ତା'ହେଲେ ଘରେ ମୋର ଆଉ କୁଟା ଖିଏ ବି ରହିବ ନାଇଁ—ଏଇଆ ତମ ଇଚ୍ଛା ?

ସନାବୋଉ—ମୋ ଇଚ୍ଛା !! ତମ ଡାକ ଶୁଣି ମୁଁ ଏଠିକି ନ ଆସିଥିଲେ ଭଲ ହୋଇଥାନ୍ତା ପରା ?

ସଦେଇ—ମଥୁରା କାଇଁଗଲା ?

ସନାବୋଉ—ତେମେ ଜାଣିନ ମଥୁରା କୁଆଡ଼େ ଯାଇଚି ? କାଲଠୁଁ ପରା ତାକୁ ତାଗିଦାରେ ଯିବାକୁ କହିଥିଲ !

ସଦେଇ—ଏଣେତ ଘର ଉଜାଡ଼ ହୋଇ ଯାଉଚି—ସେ ତେଣେ ତାଗିଦାରେ ବାହାରିଗଲେ କାଇଁକି ? ତେମେ ପୁଣି କୁଆଡ଼େ ଯାଉଚ ?

ସନାବୋଉ—ଧାନଉପରେ ପାଲଟା ଘୋଡ଼େଇ ଦେବା ଯାଉଚ !
ସଦେଇ—ହଁ ଯାଅ । ( ସନାବୋଉଙ୍କ ପ୍ରସ୍ଥାନ ) ମା' ଦୁର୍ଗତି ନାଶିନୀ ।
"ହୃଦୟଂ ଲଳିତା ଦେଶୀ ଉଦରଂ ସିଂ..."
( ଆଖିବୁଜି ସ୍ତୋତ୍ର ପାଠ ଆରମ୍ଭ କଲା ବେଳକୁ ତାଙ୍କର ୧୯।୨୦ ବର୍ଷର ପୁଅ ସନାତନ ହେଇବାଟେ ଯାଉଥିଲା )
ସଦେଇ—କୁଆଡ଼େ—କୁଆଡ଼େ ଯିବା ହଉଚ ? ଏମିତି ଜାମାଯୋଡ଼ ହେଇ ସକାଳୁ କୁଆଡ଼େ ବାହାରିଲ ? କଉ' ପାଟିରେ କଣ କଥା ନାହିଁ ? ସନେଇ !!
ସନା—ଆଜ୍ଞା ।
ସଦେଇ—ଦେଖି, ଟିକେ ବୁଲି ଠିଆ ହେଲ । ହୁଁ, କୁଅଁଟା ଗୁଡ଼ାଇଦିଅ । ହୁଁ ! ଏଇଟା କୋଉ ଧୋତି ପିନ୍ଧା ହେଇଚ ?
ସନା—ମୋ ଜନ୍ମଦିନ ଧୋତି ।
ସଦେଇ—କଣ ହେଲା ? ଏଇଟା ତୋ' ଜନ୍ମଦିନର ସେଇ ଆଠ—ବୟାଳିଶି ଧୋତି ?
ସନା—( ରହି ରହି ) ହଁ ।
ସଦେଇ—ମିଛ କହୁଚୁ । ବାପା ଆଗରେ ଠିଆ ହେଇ ମିଛ କହୁଚୁ ।
ସନା—ନାଇଁ ବାପା, ଦେଖନ୍ତୁ—ସେଇ କଳା ଧଡ଼ିଆ ଆଠ—ବୟାଳିଶି ଧୋତିଟା—ଆଣ୍ଠୁ ତଳକୁ ପଡ଼ି ପାଉନି ।
ସଦେଇ—ପାଇବ କେମିତି ? ଧଡ଼ିଟା ସିନା କଳା ! ହେଲେ ଅଣ୍ଟା ପାଖରେ ଯେ କଳାବଜାର କାରବାର ଚାଲିଚ !! ମେଞ୍ଚେ ଲୁଗା ଅଣ୍ଟାପାଖରେ ଜାକିଦେଇ ପିନ୍ଧି, ଆମକୁ କୁହା ହଉଚି କଣନା—ଆଠ—ବୟାଳିଶ ଧୋତି !! ଆଣ୍ଠୁ ତଳକୁ ପାଉନି ! ଯେମିତି ଦାଣ୍ଡ ପାହାଚ ପାରି ହେଇଯିବ—ଝାଡ଼ି ଝୁଡ଼ି ହେଇ ବାବୁଆନା ଢଙ୍ଗରେ ଲୁଗାପିନ୍ଧି—ପାଲିବାଲିଙ୍କ ପରି ପାହୁଣ୍ଡ ତଳକୁ ଫେର

ଝୁଲେଇ ଗାଁ ଦାଣ୍ଡରେ ହାତହଲେଇ ଗୃଲବ—ଏ ଖଞ୍ଜ କ'ଣ ଆମକୁ ଜଣାନାହିଁ ? ଆଚ୍ଛା ବାପ, ଏ ଦଶ—ପନ୍ଦରଜଣ ଧୋତି ନ ପିନ୍ଧିଲେ କ'ଣ ତମକୁ ସଦେଇ ସାହୁ ମହାଜନଙ୍କ ପୁଅ ବୋଲି କେହି ଚହ୍ନିବେ ନାହିଁ ! ହଉ, ଯାଅ। ମୁହଁ ତଳକୁ କରି ଠିଆ-ହେଲ କାହିଁକି ? ବାପାଙ୍କରତ ଲୁଗା ଗୋଦାମ ! କୋଉ ଏବେ ଦଶ-ପନ୍ଦରଜଣ ସୁପର୍ ଫାଇନ୍ ଧୋତିର ଅଭାବ ଅଛି ଯେ—ଆଠ— ବର୍ଷକଣ ଲୁଗା ତମକୁ ପସନ୍ଦ ହଉନି !! ( ସନାତନ ଯିବାକୁ ଲଗିଲ ) ହେ—ହେ—ସନେଇ ! କହି ଦେଲ ବୋଲତ ଠୁଙ୍ଗୁ ଠୁଙ୍ଗୁ ହେଇ ଗୃଲ ଯାଉଚ !! ହେଲେ ଯାହାଙ୍କା କୁଆଡ଼େ ତ ଆମେ ଆଉ ଜାଣିଲୁ ନାହିଁ !!

ସନା—ଦେଖା ଘରକୁ ଯାଉଚି ।

ସଦେଇ—ଦେଖା ଦର୍ଶନ ତ ହବ !! ତେଣେ ଦୋକାନ ?

ସନା— ଦେଖା ଘର ହେଇ ଦୋକାନକୁ ଯିବି ।

ସଦେଇ– ଦୋକାନ ତା ହେଲେ ଏ ଯାଏଁ ଖୋଲି ହେଇନି ।

ସନା—କାହିଁକି ବାପା, ଦୋକାନ ଖୋଲି ହେଇଥିବ ।

ସଦେଇ—ହେଇଥବ !! ତେମେ ତ ଏଠି—ଦୋକାନ ଖୋଲି ହେଇଥବ କେମିତି ?

ସନା—ମଥୁରୀ ପରି ସକାଳୁ ଦୋକାନ ଖୋଲଥିବ । ମୁଁ ଏଣୁ ଦେଖା ଘର ହେଇ ଦୋକାନକୁ ଯିବି ।

ସଦେଇ—ହଉ, ହଉ, ଯାଅ—ଦୁର୍ଗାଙ୍କ ପାଖରେ ମୁଣ୍ଡିଆଟେ ମାରି ଚଞ୍ଚଳ ଦୋକାନକୁ ଯାଅ । ( ସନାତନର ପ୍ରସ୍ଥାନ ) ମା ! ଦୁର୍ଗେ—ମା' ଦୁର୍ଗତି ନାଶିନୀ···! କୋଉଠି ଥିଲି— ହଁ ! "ନାସା କପାଳସ୍ଥ ପାତୁ ଶ୍ରୋତେ, ଦୈତ୍ୟବଧାରିଣୀ । ହୃଦୟଂ ଲଳିତା ଦେଖା ଉଦରଂ ଶିଂ···( ପାଠ ବନ୍ଦକରି ) ଆରେ !! କ'ଣ ମତେ

କହିଗଲା !! ମଥୁରି ଦୋକାନ ଫିଟେଇଚ !! ମଥୁରି ପରି କୁଆଡ଼େ ଚାଗିଦାକୁ ଯାଇଚ ! ଓଃ ! ଏଗୁରିଙ୍କୁ ନେଇ ଆଉ ଚଳହବ ନାଇଁ ପରି ! ଆଜ ପରି ଦିନରେ ମଣିଷ ମା'ଙ୍କ ନାଁ। ଦି'ପଦ ନେଇ ପାରିଲା ନାହିଁ। କୁଆଡ଼େ ଗଲା ସେଇଠା ? ( ଡାକଲେ) ସନଆ

— ସନଆ—

ସନା — (ଦୂରରୁ) ଆଜ୍ଞା।

ସଦେଇ – ଏଠିକି ଆଇଲୁ!

ସନା—(ଦୂରରୁ) ଆଜ୍ଞା ?

ସଦେଇ—ସେଠି ଠିଆ ହେଇ ଆଜ୍ଞା, ଆଜ୍ଞା, କ'ଣ ହଉଚୁ ଏଠିକି ଆ—ଚଞ୍ଚଳ। ( ଭିତରୁ ସନାବୋଉ ଅସିଲେ)

ସନାବୋଉ—କ'ଣ ହେଲା ? ପିଲାଟା ସକାଳୁ କୁଆଡ଼େ ଟିକେ ବାହାରିଚି—କାଇଁକି ତାକୁ ଏମିତି ଡାକ ହାଲୋଳ ପକେଇଚ ?

ସଦେଇ - ଠିଆହୁଅ—ସବୁ ଶୁଣିବ । ( ବଡ଼ପାଟିରେ ) କ'ରେ ଆଇଲୁ ?

ସନା — ( ବାହାରୁ ) ଯାଉଚି ପରି ! ମରିଗଲି ଲୋ ବୋଉ !!

ସନାବୋଉ — କ'ଣ ହେଲା ? କ'ଣ ହେଲାରେ ସନା ?

(ସନାଭିତର ଆସିଲା)

ସନା—ଝୁଣ୍ଟି ପଡ଼ିଲି ।

ସନାବୋଉ—ପଡ଼ିବ ନାହିଁ ! କଥା ନାଇଁ—ବାର୍ତ୍ତା ନାଇଁ—ଏମିତି ଅତର ଗୁନିଆଁ ଡାକ ଗୁଡ଼ିଚନ୍ତି—

ସଦେଇ—ନାଇଁ ହେ ! ଆମ ଡାକରେ ନୁହେଁ । ଏଇ ଦେଖ, ଫେର ଓହଳେଇ କେମିତି ଦଣ - ହସ୍ତଆଳଣ ଧୋତି ପିନ୍ଧା ହେଇଚି— ପାଦ ତଳକୁ କୁଞ୍ଚ ଓହଳାଚ୍ଛି ! ନ ପଡ଼ିବେ କେମିତି ।

ସନାବୋଉ—ଆରେ କୋଉଠି ଆଣୁ ଗଣ୍ଠି ଛୁଡ଼ ନାଇଁ ତ !

ସନା—ନାଇଁ ବୋଉ । ହେଲେ ଏ ଲୁଗାଟା ଏଠି .....

ସଦେଇ—ଫାଟିଗଲା ! ବାସ ! ଚପୁଁ ଗୃହଳଶ ଲୁଗା ପିନ୍ଧି ଚାହୁଁଲ ତଳକୁ କୁଞ୍ଚ ଝୁଲେଇ ଦିନକେ ଗୋଟାଏ ଲୁଗା ନ ଫଟେଇଲେ ମହାଜନଙ୍କ ପୁଅ ବୋଲି ଲୋକେ ଜାଣିବେ କେମିତି ? ଯାଅ— ଆଉ ଠିଆ ହେଲ କାହିଁକି—ଆଉ ଗୋଟାଏ ସୁପର ଫାଇନ ଦଶପଗୃଣ ଲୁଗା ପିନ୍ଧି ଆସ ।

ସନାବୋଉ—ଯା'ରେ ସନା, ତୁ ଘର ଭିତରକୁ ଯା ।

( ସନାତନ ଯାଉଥିଲା )

ସଦେଇ—ହୋ ବାବୁ, ହୋ ! କୁଆଡ଼େ ତେଣେ ଯାଉଚ ? ପାଟିରୁ କଥା ନ ବାହାରୁଣୁ ପୁଣି ବାକ୍‌ସ ପେଟରୁ ଖୋଲିବାକୁ ତିଆର ହେଇ ଗଲଣି ? ସେ କଥା ହେଇ ପାରିବ ନାହିଁ । ଯାଅ, ସେଇ ଚିରା ଲୁଗା ପିନ୍ଧି ଦୋକାନକୁ ଯାଅ । (ସନାତନ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଠିଆ ହେଇଥାଏ )

ସନାବୋଉ ମଲି ! ଏ ଦଶରା ପର୍ବଟାରେ ପୁଅ ମୋର ଚିରାଲୁଗା ପିନ୍ଧିବ !

ସଦେଇ—ଚିରା ଲୁଗା ନ ପିନ୍ଧିଲେ, ଏଇ ନିଅ—ଏ ଛୁଞ୍ଚିସୁତା ତାକୁ-ଦିଅ । ଲୁଗା ସିଲେଇ କରି ପିନ୍ଧିକରି ଯାଉ ।

ସନାବୋଉ ତମେ କଣ ଦିନକୁ ଦିନ ଛୁଆ ହେଇ ଯାଉଚନ୍ତି ! ଦଶରାପର୍ବରେ ପୁଣି କିଏ ଛୁଞ୍ଚିସୁତା ଧରେ !

ସଦେଇ—ଛୁଞ୍ଚିସୁତା ନ ଧରିବତ ସେ ଆଠ ବୟାଳିଶି ଲୁଗା ତାକୁ ଆଣିଦିଅ—ମୋର ଆଗରେ ଏଇଠି ସେ ପିନ୍ଧୁ । ଦଶରା ବୋଲିତ ପଅରଦିନ ସମସ୍ତେ ନୂଆଲୁଗା ପିନ୍ଧିବେ । ବାବୁଙ୍କର ଆଜଠୁ ଏମିତି ଫେସନ୍ ବାହାରି ପଡ଼ୁଚି କାହିଁକି ! ଯାଅ—ମଣିଷକୁ ଟିକେ ପୂଜା ପାଠ କରେଇ ଦେଲେ ନାହିଁ ! ହେ,ହେ ସନେଇ, ଶୁଣ । ଦୋକାନ କିଏ ଫିଟେଇଚ ? ମଥୁରି !

ସନା—ହଁ ।

ସଦେଇ—ତୁ ଜାଣୁ ?

ସନା ହଁ, କାଲିତ ମୁଁ ତାଙ୍କୁ କହିଥିଲି ସେ ସକାଳୁ ଆସି ଦୋକାନ ଫିଟାଇବେ ।

ସଦେଇ ପଗ୍ଳିରଲୁ ପଗ୍ଳିରଲୁ-ତୋ ବୋଉକୁ ପଗ୍ଳିରଲୁ—ମଥୁରି ଆଜ ସକାଳୁ ମଽୁରିପୁରିରେ ଅଛନ୍ତ ନା ଗୋପପୁରି ଯାଇଚନ୍ତ—ସେ କଥା ସେ କହନ୍ତୁ ।

ସନାବୋଉ—ମଲି ! ମୁଁ କଣ କହିବିମ ? ତେମେ ତ କାଲି ସ୍ତିରେ ନିଜେ ବରାଦ କଲି ଯେ ମଥୁରି ଆଜ ସକାଳୁ ଡାକଦାକୁ ଯିବେ-

ସଦେଇ ମୁଁ ଯଦି ତାକୁ ଡାକଦାକୁ ବରାଦ କରିଥିଲି, ତମ ଗୁଣମଣି ପୁଅ ତାକୁ ଦୋକାନ ଫିଟେଇବା ବରାଦ କରିଦେଲେ କେମିତି ? ସିଏ ତ ମଥୁରି ସାମଲ ! ରଜାଙ୍କ ଆଗରେ ପୁଅ - ରାଣୀଙ୍କ ଆଗରେ ଝିଅ କଲିବାଲି ସେ ! ସେ ଡାକଦାକୁ ଯାଇ ନଥିବ କି ଦେକାନ ଖୋଲି ନ ଥିବ । ମଝିରେ, ସେ ନାଳ ପୋଲି ଉପରେ ବସି ବନସୀ ପକାଉଥିବ । ମୁଁ ତା ଢଙ୍ଗ ଜାଣି ନାଇଁ !

ସନାବୋଉ—ଏ ପର୍ବ ପର୍ବାଣି ଦିନରେ ସବୁକଥା ଏମିତି ହେଲାରେ ହେଲାରେ ଯାଏ—ଏ କଥା କଣ ତେମେ ଜାଣିନ ?

ସଦେଇ—କଣ ହେଲି ? ପର୍ବ ବୋଲି ସବୁକଥା ହେଲାରେ ହେଲାରେ ଯିବ ? ଧାନ ଓଳିଆ ବନ୍ଧା ହବନାଇଁ—ଦୋକାନ ଫିଟିବ ନାହିଁ—ଦୋକାନ ବାକୀ ମିଆଦରେ ଯିବ !! ଆଉ ଖାଲି ତମଆଡ଼ୁ ଦୁଧ,ଦହି, ଛେନା ଗୁଡ଼, କଦଳୀ ବରାଦରେ ହେଲା ନାହିଁ କି ବାବୁଙ୍କର ଗୋଟାକୁ ଗୋଟା ଦଶ ପନ୍ଦର ଧୋତି ଚିକ୍ଷବାରେ ହେଲା ନାଇଁ !! ସଦେଇ ମହାଜନ ଘରେ ଏଇ ଦଶରି ହଉଚି ନା !

ସନାବୋଉ—ତୁ ଆସିବୁଟିରେ ସନା—ତାଙ୍କର ଆଜ ହେଇଚ କଣ କେଜାଣି ? ସକାଳୁ ଉଠି ଖାଇଖାଇ ହଉଚନ୍ତ—ତୁ ଆସ୍ ।

( ବୁହିଁଙ୍କର ପ୍ରସ୍ଥାନ )

ସଦେଇ—ହଁ ଯାଅ । ହେଲେ କଣ୍ଠ ଦଉଚ ସନା, ଦଣନମିଠ ଭିତରେ ଯେମିତ ଦୋକାନ ଫିଟିବ !! ଅରେ ! ପୂଜା ପାର୍ବଣ ବୋଲି ଘରଟାକୁ ଉଜାଡ଼ ଦବାକୁ ବସିଚନ୍ତ ! ମା ଦୁର୍ଗା—ମା ଗୋ ଦୁର୍ଗତିନାଶିନୀ—ଦୁର୍ଗେ ! କୋଉଠି ଗୁଡ଼ିଲା—କୋଉଠି ଗୁଡ଼ିଲା—ଉଁ ଉଁ ଉଁ......

( ମାଲ ଓ କୁଣିଆ ଅସିଲେ )

ମାଲ—ଆରେ କୁଣିଆ ଦେଖିଲୁ ବାପା କଣ କରୁଚନ୍ତ ? ଏଇ ପାଖରେ ଥାଇ ଦେଖ ।

କୁଣିଆ—ଜାଣ

ମାଲ—କ'ଣ !

କୁଣିଆ—ବାପା ଆଖିବୁଜ ଜପ କରୁଚନ୍ତ ।

ମାଲ—କାଇଁ ପାଟି ଶୁଭୁ ନାଇଁ ତ ?

କୁଣିଆ—ମନେ ମନେ ଜପ କରୁଚନ୍ତ, ଆ ଏତିକ ବେଳେ ଖସିଯିବା ।

ମାଲ—ଆଖିବୁଜ ବଇଚନ୍ତ ତ ?

କୁଣିଆ—ହଁ ଏଇ ଦେଖୁନ୍

ମାଲ—ତେବେ ଚାଲ ( ଦୁହେଁ ସେଇ ବାଟ ଦେଇ ଗଲେ )

ସଦେଇ—ଓଃ କୋଉଁଠି ଗୁଡ଼ିଲାମ—ହଁ ! ନାସାକପାଳମା ପାତୁ ଶୋଭେ ଦେବି ଚନ୍ଦ୍ରଧାରିଣୀ—ହୃଦସ୍ଥଂ ଲକ୍ଷିତା ଦେଖ୍ମା ଉଦର ସ୍ଥିଂ...କଏ ? କଏ ଗଲ ଏ ବାଟେ ?

[ ସଦେଇ ଆଖି ବୁଜ ବସିଥାନ୍ତ । ଏ ଦୁହେଁ ଅଟକିଲେ ]

କୁଣିଆ—ଅପା ?

ମାଳ—ତୁ ଗୃହଳଆ ।

ସଦେଇ—କଏ ଗଳ୍ପ ଏ ବାଟେ ?

ମାଳ—ନାଇରେ କୁଣିଆ ଆଉ ହବନାଇଁ ।

ସଦେଇ—କଏ ?

ମାଳ—(ହସି) ବାପା ଆମେ

ସଦେଇ—ଆମେ ?

ମାଳ—ମୁଁ ଆଉ କୁଣିଆ—

ସଦେଇ—ଓ ! ଆସ । ବସ ଏଠି । କହେ ମାଳ, ଭାଇ ତେଣେ କଣ କରୁଚ ?

କୁଣିଆ—ଭାଇକ ତେମେ ଗୋଟାଏ ଗ୍ଳେଟିଆ ଲୁଗା ପିନ୍ଧବାକୁ କହଲ ବାପା ?

ସଦେଇ—ହଁ । ଭାଇ କଣ କହୁଚ ?

ମାଳ—କଛୁ କହୁନାଇଁ ଯେ—ଆଠହାତ ଲୁଗାଟା ପିନ୍ଧ ଦାଣ୍ଡ ବାଟେ ନଯାଇ ବାଡ଼ପଟେ ଦୋକାନକୁ ଯିବ ବୋଲି କହୁଚ ।

ସଦେଇ—ଆଉ ତେମେ ଦହେଁ କୁଆଡ଼େ ବାହାରିଚ ? କେରେ କୁଣିଆ ?

କୁଣିଆ—ଆମେ ? ଆମେ ବାପା· · ·ଆମେ କୁଆଡ଼େ ବାହାରିଥିଲେଟି ନାମି ?

ସଦେଇ—ଏଇଟା ସନଆଠୁ ଆହୁରି ବେଶୀ ପାରକା ପଡ଼ିବ । ଘରୁସାଇ ମଝିଦାଣ୍ଡରେ ହେଇଥିଲ—କହୁଚ କଣନା—"କୁଆଡ଼େ ବାହାରିଥିଲେଟି ନାମି" !

କୁଣିଆ—ନାଇଁବାପା, ମୁଁ କଛୁ ଜାଣିନାଇଁ । ନାମି କହୁଲା ଆ—ମୁଁ କହଲି ଗୃଲ ।

ମାଳ—ମିଛୁଆଟା ! ହଇରେ, ମୁଁ କହିଲି ନା ତୁ କହିଲୁ ? ତୁ ପରା
କହିଲୁ ଆ ମୁଁ କହିଲି ଗୃଲ ।
କୁଣିଆ—ତୁ ମିଛେଇଚେ ।
ସଦେଇ ଆଚ୍ଛା, ଆଚ୍ଛା, ଆଚ୍ଛା ! ହେଲା ଏବେ—ଦୁହେଁ ସତ
କହୁଚ । ଜଣେ କହିଚ ଆ ! ଆଉଜଣେ କହିଚ—ଗୃଲ !
ଏଇଆ ତ ? ନା' କଣ କୋ ମାଳ ?
ମାଳ—ହଁ ।
ସଦେଇ—ତା'ହେଲେ ଏ ଆ'ଟା କୋଉଠିକ 'ଆ'—ଆଉ ଗୃଲ୍‌ଟା
କୋଉଠିକ 'ଗୃଲ' । ଏତିକ କହି ଦେଲେତ ପାଠ ସରିଲା !
କୁହ !
କୁଣିଆ – କହୁନୁ ନାଣ ?
ମାଳ – ତୁ କହୁନୁ ?
ସଦେଇ – ଦୁହେଁ ଯାକ ଏକାବେଳକେ କହିଦଅ ଯେ ଆଉ କଛୁ
ଦୋଷ ଲାଗିବ ନାହିଁ ।
ମାଳ – ନାହିଁ ବାପା ଆମେ ଠିକେ ଦୋକାନକୁ ଯାଉଥିଲୁ ।
ସଦେଇ – କାହିଁକିଲେ ମା ? ତମ ଭାଇ ଭଉଣୀଙ୍କର ଦୋକାନରେ
କି କାମ ? ( ଦୁହେଁ ନୀରବ ) ଓ, କଛୁ କାମ ନାହିଁ – ଖାଲି
ଏମିତ ବୁଲି ଯାଉଥିଲ ନାଁ ? ହେଲେ ଦୋକାନକୁ ବୁଲିଯିବାର
କଛୁ ନାହିଁ । ଏଇଠି ବସ । ଆଜ ମହାଷ୍ଟମୀ – ମୁଁ ଦୁର୍ଗାନାମ
ଜପକରୁଛି – ଦୁହେଁ ବସି ଶୁଣ । ହୁଁ, କୋଉଠି ଥିଲି······
କୁଣିଆ – ବାପା ।
ସଦେଇ – କଣ କହୁଚୁ ?
କୁଣିଆ – ଆମେ କଣ ଦୋକାନକୁ ବୁଲ ଯାଉଥିଲୁକ ?
ସଦେଇ – ଆଉ ?
କୁଣିଆ – କଟକରୁ ଲୁଗାଗାଡ଼ି ଆଇଲାଣି ବୋଲି କଏ କହିଲା ଯେ –

ସଦେଇ — ତେବେ ବର୍ଷେ ହିସାବ କିତାବ କରି ତାଲିକା ମତେଇ ଲୁଗା ସଜାସଜ କରି ରଖିବାକୁ ବାହାରିଥିଲ ନା ?

ମାଳି — ନାଇଁମ, ବାପା ଆମେ ମିଛ କାହିଁକି କହିବୁ ! ଆମପାଇଁ ଏ' ଦଶହରାକୁ ଲୁଗା କିମିତି ଆସିଚି ଦେଖିବାକୁ ଆମେ ଯାଉଥିଲୁ ।

ସଦେଇ — ହୁଁ ! ତାହେଲେ ଏତେବେଳକୁ କଥାଟା ଯାଇ ପଦାକୁ ବାହାରିଲା ! ଦଶହରା ଲୁଗା ତଦାରଖ କରିବାକୁ ଭାଇ ଭଉଣୀ ଦୁହେଁ ବାହାରି ପଡ଼ିଥିଲ ! ଯାହାର ଯଉ ଲୁଗା ହବାର କଥା ଆଗରୁ – ସ୍ଥିର ହେଇଚି – ଲୁଗା ଆସିଥିବ – ତମେ ଦୋକାନକୁ ଯାଇ ଦେଖିବ କ'ଣ ?

ମାଳି—ଆମ ପାଇଁ କି' ଲୁଗା ବରାଦ ହେଇଚି ବାପା ?

ସଦେଇ—ଗଲାବର୍ଷ ଯାହା ହେଇଥିଲା—

ମାଳି – ଗଲାବର୍ଷ ଯାହା ହେଇଥିଲା, ଏବର୍ଷ କ'ଣ ସେମିତି ଲୁଗା ମୋର ହବ ?

ସଦେଇ—ହଁ ।

ମାଳି—ଗଲାବର୍ଷ ମୋ ପାଇଁ ଗୋଟେ ଦେଶୀ ତନ୍ତର ଶାଢ଼ୀ ହେଇଥିଲା ।

ସଦେଇ—ବଢ଼ିଆ ଶାଢ଼ୀ ଖଣ୍ଡେ ତ ! ମୋର ମନେ ଅଛି । ଏଥର ସେମିତିକା ଶାଢ଼ୀ ତାଲିକା କରିବାକୁ ମୁଁ ମଥୁରିକୁ କହିଥିଲି ।

କୁଟିଆ — ମୋ ପାଇଁ କ'ଣ ତାଲିକା ହେଇଚି ବାପା ?

ସଦେଇ — ଗଲାବର୍ଷ ତୋର କ'ଣ ହୋଇଥିଲା ?

କୁଣିଆ — ପେଣ୍ଟ୍ ଖଣ୍ଡେ—ଜାମା ଖଣ୍ଡେ ।

ସଦେଇ—ଏଥର ସେମିତି ପେଣ୍ଟ୍ ଖଣ୍ଡେ—ଜାମା ଖଣ୍ଡେ ।

କୁଣିଆ—କି ପେଣ୍ଟ ?

ସଦେଇ ଓଃ ! ଧିଅକସାକ ଛ ଆମର ଖସା ଖଣ୍ଡେ—କରଆ ଖଣ୍ଡିକରେ ବନଗଲ ! ଆମକୁ ପୁଣି ପଚରା ହଉଚ—କ ପେଣ୍ଟ ! ! ଏଇ ଯୋଡ଼ ଅଧା ପେଣ୍ଟ ପିନ୍ଧଚୁ, ସେଇ ପେଣ୍ଟ୍— ବୁଝିଲୁ ?

କୁଣିଆ—ବେଲ୍ଟ ଦଆ ପେଣ୍ଟ୍ ମୋର ଆସିବ ନାହିଁ ?

ସଦେଇ—କ ଦଆ ?

କୁଣିଆ—ବେଲ୍ଟ । ଦାସସାହୁ ସୁଭାଷ ଯେମିତ ପିନ୍ଧ କାଲ ଆମ ଘରକୁ ଆସିଥିଲ ! ତେମେ ତାକୁ ପଚ୍ଚରଲ ନାଇଁ—"କରେ ଅଣ୍ଟାରେ ଏଇଟା କାଇଁକ ଭିଡ଼ିଚୁ ?" ସେଇ ବେଲ୍ଟ ।

ସଦେଇ—ଓ ! ତୁ ବ ଗୋଟାଏ ସେମିତକା ବେଲ୍ଟ ଅଣ୍ଟାରେ ଭିଡ଼ବୁ ?

କୁଣିଆ—ହଁ ।

ସଦେଇ—କାଇଁକ ? ଏ ରାଜ୍ୟରୁ କ'ଣ କନାଧଡ଼ି ଉଠିଗଲ କ ? ପେଣ୍ଟ୍ ଉପରେ ଭିଡ଼ବା ପାଇଁ ପଇସା ଦଆ ହେଇ ବେଲ୍ଟ୍ କଣାହବ ?

କୁଣିଆ—ନାଇଁ ବାପା—ସେ ଯୋଡ଼ ପେଣ୍ଟ୍ ନା—ସେଥିରେ କ'ଣ କନାଧଡ଼ି ଭିଡ଼ି ହବ କ ? ବେଲ୍ଟ ନ ହେଲେ ସେ ପେଣ୍ଟ୍ ପିନ୍ଧ ହବ ନାଇଁ ।

ସଦେଇ—ଏମିତ କଥା !! ବେଲ୍ଟ ନ ହେଲେ ସେ ପେଣ୍ଟ ପିନ୍ଧହବ ନାଇଁ ?

କୁଣିଆ—ହଁ ପର୍ । ତେମେ ଦେଖିବ ନାଇଁ—

ସଦେଇ—ଦେଖିବ ଆଉ କ'ଣ ? କାଦୁଅରେ ପଶିଲେ ସିନା ଗୋଡ଼ ଧୋଇବ ! ମୂଳରୁ ସେ ପେଣ୍ଟ୍ ଛ ଆସିବ ନାଇଁ— ବେଲ୍ଟ କ'ଣ ହବ ?

କୁଣିଆ—ବେଲ୍‌ଟ୍ ଦିଆ ପେଣ୍ଟ୍ ଆସିବ ନାହିଁ ?
ସଦେଇ—ମୁଁ ତ ବରାଦ ଦେଇ ନାହିଁ—ଆସିବ କେମିତି ? ହଁ, ମାଳ ! ତୋର କ ଶାଢ଼ୀ କଥା ତୁ କହୁଥିଲୁ ?
ମାଳ – ପାରଗାଁଓ ଶାଢ଼ୀ ।
ସଦେଇ—କୋଉ ଗାଁ ?
ମାଳ—ପାରଗାଁଓ ଶାଢ଼ୀ ମ !
ସଦେଇ – ପିଲାଟି ଦିନରୁ ଲୁଗା ବେବସା କରି ଆସିଛି । ମାଣିଆବନ୍ଧୀ—ଗୋଲ୍‌ନଗରୀ—ପାଟେଣୀଗାଁ ଶାଢ଼ୀ କାରବାର କରିଛି । ହେଲେ ପାରଗାଁ କୋଉଠି—ସେ ଶାଢ଼ୀ କେମିତି—ସେ ହାଲ୍ ତ ମତେ କରୁ ଜଣାନାହିଁ ମା !
ମାଳ—ସୁଭାଷ ଭଉଣୀ ସୁଷମା ସେଦିନ ଆମ ଘରକୁ ପିନ୍ଧି ଆସି ନଥିଲା—ତମେ ଦେଖିନ ?
ସଦେଇ—ନାହିଁଲୋ ମା । ମୁଁ ସେସବୁ ଦେଖିନ କ ଦେଖିଥିଲେ ବି ସେ କୋଉଗାଁ—କ ଶାଢ଼ୀ ସେ କଥା ମୋର ହେଜ ନାହିଁ । ମଥୁରାକୁ ଯୋଉ ଲୁଗାପଠାର ବରାଦ ଦିଆଯାଇଛି, ସେଇ ଲୁଗା ଆସିବ—ବୁଝିଲୁ ? (ମାଳ ଓ କୁଣିଆ ଦୁହିଁଙ୍କ ମନରେ ରାଗ)
ମାଳ—ହଉ । ଆ'ରେ କୁଣିଆ ଯିବା ।
ସଦେଇ—କୁଆଡ଼େ ଯିବ ? ଦୋକାନକୁ ?
ମାଳ—ମନା ତ କଲ—ଆଉ ଦୋକାନକୁ କାହିଁକି ଯିବୁ ?
ସଦେଇ—ଠିକ୍ କଥା । ଦୋକାନକୁ ଯିବା ଦର୍କାର ନାହିଁ । ଭିତରକୁ ଯାଅ । (ଦୁହିଁଙ୍କର ପ୍ରସ୍ଥାନ) (ମନକୁମନ) କ'ଣ କହିବ କହିଲ ? କୁଆ ଦି'ଟା—ଯୁଆଙ୍କ ଢଙ୍ଗ ଦେଖ ! ଇଏ କହୁଛି—ବେଲ୍‌ଟୁ ! ସିଏ କହୁଛି—ପାରଗାଁ ! ! ଦଶରା ହେଉଛି ବୋଲି ଏ ଗୋବରିଆ ନଙ୍ଗ ଘୁଅ ସାଙ୍ଗରେ କ'ଣ ମୋ ଘରଦ୍ୱାର

ଏମାନେ ଭସେଇ ଦେବେ ବୋଲି ଷଡ଼ଯନ୍ତ୍ର ! ସକାଳୁ ଗୋଟାଏ ନବରଙ୍ଗ ଲଗିଛି ଏଠି ! ମଣିଷ ନିର୍ଜଞ୍ଜାଳ ହୋଇ ବସି ଟିକଏ ନାମ ବି ନେଇପାରୁ ନ ! ( ବଡ଼ପାଟିରେ ) ଆରେ ଆରେ ! ସେ ଛୁଆ ଦ'ଟା ସେଠି କାହାର ? ଧାନ ଉପରେ ପାଲ ଘୋଡ଼ା ହୋଇଥିଲା, କ'ଣ ଯା' ତା' ଛୁଆ ଆସି ତା'ଉପରେ ନାଚକୁଦ ଖେଳିବେ ବୋଲି ? ଆରେ ସେଇଟା କ'ଣ ଗାଁମୁଣ୍ଡ ଖେଳପଡ଼ିଆ ହୋଇଛି ? ଆ-ହା-ହା ସାଇଲେ ସାଇଲେ— ସାଇଲେ ! ! ସେଠେ ଧାନଗଦା ହୋଇଛି ଯେ—ମା'ଲକ୍ଷ୍ମୀଙ୍କ ଆସ୍ଥାନ ପଡ଼ିଛି । ତା'ଉପରେ ଖେଳକୁଦ. ଆଗ୍ରହ ଅନାଗ୍ରହ — ଆରେ ତାଙ୍କୁ ନଜର ନା ନାହିଁ ? (ବ୍ୟସ୍ତହୋଇ ସନା ବୋଉ ଆସିଲେ)

ସନାବୋଉ —ଓହୋ ! କାହିଁକି ଗୋଟାଏ ଏମିତି ପାଟି ହାଲ୍ଲା କରୁଛ ?

ସଦେଇ—କଣହେଲା ? ପାଟି କରିବି ନାହିଁ ? କାହାଛୁଆ ସେ ?

ସନାବୋଉ—ମୋ' ବଡ଼ଝିଅ ଉମା—ତା'ଶାଶୁଘରୁ ଆସିଛି ଯେ, ତା'ର ପୁଅ ସେ ଯୋଡ଼ିକ । ଜାଆଁଳା ପୁଅ । ଭାରି କଉ-ତୁକିଆ ପୁଅ ଦିଓଟି ହୋଇ ନାହାନ୍ତି ? ଠାକୁରେ ମୋ ସନା କୋଳରେ କୋଉଦିନ କେଜାଣି—

ସଦେଇ—ଥାଉ ହେ ! ବନ୍ଦକର । ତେଣେ ସେ ଛୁଆ ଦ'ଟା ଧାନ ଗଦାଟାକୁ ଯାଚ୍ଛାତାଇ କଲେଣି—ଏଣେ ଯାଙ୍କର ସୋଗ ବାହାରି ପଡ଼ୁଛି !

ସନାବୋଉ—ମଲା ! ଏଡ଼େ ପାଟିରେ କାହିଁ କରୁଛ ? ସେ ଖଞ୍ଜାରେ ସେ ମା' ଝିଅ ଅଛନ୍ତି—ତାଙ୍କୁ ଶୁଭୁଥିବ ।

ସଦେଇ—ଯା' ବୋଲି ମୋ'ଧନ ସମ୍ପତ୍ତି ଏମିତି ଉଜୁଡ଼ି ଯିବ ?

ସନାବୋଉ—ସବୁବେଳେ ତମ ଆଖିକି ଖାଲି ସେଇ ଧନ ସମ୍ପତ୍ତି ଦିଶିଲା—ମଣିଷ ଆଉ ଚହ୍ନିଲ ନାହିଁ ତମେ !

ସଦେଇ—ବୁଝିଲ—ମହୁମାଛି ପରି ଜୀବନ ଯାକ ସଞ୍ଚି ସଞ୍ଚି ଧନସାଇ-ତଚ ବୋଲି ତମ ଦୁଆରକୁ ଆଜ ମଣିଷ ଆସୁଚନ୍ତି । ନଇଲେ ତମେ ନିଜେ ଯେ ଗୋଟିଏ ମଣିଷ—ଏକଥା ଆଉ ଗାଁ ଜଣକ ମୁହଁରୁ ଶୁଣିବାକୁ ମିଳନ୍ତା ନାହିଁ !!

ସନାବୋଉ—ହଉ ହେଲା । ତିନିବର୍ଷରେ ଉମା ତା ଶାଶୁଘରୁ ଆଇଚ – ଦଶଦିନ ସେ ଆମ ଘରେ ଖାଇବ ।

ସଦେଇ—ଭଲକଥା – ଖାଉ ।

ସନାବୋଉ – ଲୁଗା ବି ପିନ୍ଧିବ ।

ସଦେଇ—ପିନ୍ଧୁ ।

ସନାବୋଉ—ହଁ ସେଇକଥା । ମଥୁରୀକୁ କହି ଆଜଠୁଁ ତା ପାଇଁ ଲୁଗା ବରାଦ୍ କର ।

ସଦେଇ—ବରାଦ କରିବି କଣ ହେ ? ଦୋକାନରେ ତ ପାଟେଣୀ ଗାଁ କପ୍ତା ଅଛି – ସେଇଥିରୁ ଖଣ୍ଡେ ଆଣି ପିନ୍ଧେଇଦେବ । ବରାଦ କରିବ କ'ଣ ?

ସନାବୋଉ—କ'ଣ ହେଲା ? ମୋ' ବଉଳର ଝିଅ ସେ—ସେ ପୁଣି ପାଟେଣୀ ଗାଁ କପ୍ତା ପିନ୍ଧିବ ?

ସଦେଇ—ଆଉକଣ ପାରି ଗାଁ ଶାଢ଼ୀ ପିନ୍ଧିବ !! ଝିଅ ଯାଇ ତମ-କାନରେ ମନ୍ତ୍ର ଫୁଙ୍କିଲେଣି ପରା ?

ସନାବୋଉ—ତେମେ ପଛେ ତା ପାଇଁ ନକଲେ ନାଇଁ ଆଉ ଏମିତି ପାଟି ହାଲେଇ କରନାହିଁ । ମୋ ବାକ୍ସରେ ଯୋଡ଼ ଲୁଗା ଅଛି, ମୁଁ ସେଇଥିରୁ ଖଣ୍ଡେ ତାକୁ ପିନ୍ଧେଇବି । ମୁଁ ଯାଉଛି ।

( ପ୍ରସ୍ଥାନ )

ସଦେଇ—ହଁ ଯାଅ । ଠାକୁରାଣୀଙ୍କ କଳସ ଭସେଇଲା ବେଳେ ମୋ ଘରଟାକୁ ଭସେଇ ଦେବେ ବୋଲି ବଇଚନ୍ତି !! ସକାଳୁ ଜଣଙ୍କ ପଛକୁ ଜଣକ ପାଲା ଲାଗିଚ ! ମହାଷ୍ଟମୀ ପର୍ବ ଦିନେ ମଣିଷ ଟିକେ ନିର୍ଜଞ୍ଜାଳ ହେଇ ମା'ଙ୍କ ନାଁ ନେଇ ପାରିଲା ନାହିଁ ।

( ବଦେଇ ହାଜର ଆସିଲା )

ବଦେଇ—କି କଥା କହୁଚନ୍ତ ମହାଜନେ ! ରାଜ୍ୟଯାକର ଜଞ୍ଜାଳ ତମ ମୁଣ୍ଡରେ—ତେବେ ନିର୍ଜଞ୍ଜାଳ ହେଇ ରହିବ କେମିତି ? ପୁଣି ଏ ଦଶହରା ମୁଣ୍ଡରେ—

ସଦେଇ—ମାନିଲି ବଦେଇ—ତମର କଥା ମାନିଲି । କୁହ, କୁଆଡ଼େ ଆସିଲ ।

ବଦେଇ—ମୁଗ ହ'ଟା ବିକିବ ଯେ, ଏଠିକି ଆଣିବ ନା ଦୋକାନକୁ ନେଇଯିବ ?

ସଦେଇ—ଦୋକାନରେ ତ ଜାଗା ନଥିବ ଆଜି ପୁଣି କଟକରୁ ତିନିଗଳି ଗାଡ଼ି ମାଲ ଲୁଗା ପଟା ଆଉଚି । ଏଠିକି ନେଇ ଆସ । ··ନାଇଁ ନାଇଁ ବଦେଇ, ଦୋକାନକୁ ନେଇଯାଅ । ଏଠି ସେ ଅଡ଼ୁଆରେ ପଶେ କିଏ ?

ବଦେଇ—ଭଉଟା ଛୁଟିଗଲେ ନେଇ ଯିବ ।

ସଦେଇ—କେତେ ମୁଗ ?

ବଦେଇ—ଭରଣେ କାନ୍ତରେ ହବ ।

ସଦେଇ—ଏଁ ଭରଣେ ମୁଗ ! ଗଦାଏ ଟଙ୍କାତ ହବଟିହେ ବଦେଇ ?

ବଦେଇ—ଯାହାହବ । ଏ ନଦେଟା ସମୟରେ ଏକାମୁଥକେ ଭରଣେ ମୁଗ ବେପାର କରିବା କଣ ସହଜ କଥା ?

ସଦେଇ—ହଉ ଭାଉ କଣ କହ ?
ବଦେଇ—ଭାଉତ ସେଇଆ—'ମୁଠା' ।
ସଦେଇ—ନାଇଁ ନାଇଁ ମୁଠା ଭାଉରେ କଏ କିଣିବ ? ଜାଣିଶୁଣି
କଣ ମୁଁ ଲୋକସାନ ଡାକ ଆଣିବ ?
ବଦେଇ—ଆଉ ତେବେ କି ଭାଉ କହୁଚ ?
ସଦେଇ—ଭାଉ—'ଗୁମୁଠା' ।
ବଦେଇ—ଭାରି କମ୍ପିତ ହେଇ ଯାଉଚ ମହାଜନେ ।
ସଦେଇ—ମୋଟେ ନୁହେଁ ମୋଟେ ନୁହେଁ । ତୁ ତ ଜାଣୁ ବଦେଇ
ମୁଁ ମହାଜନ ପୁଅ । ଟଙ୍କାକେ ପଇସାଏ ଲାଭରଖି ମୁଁ ବେପାର
କରେ । ତୁ କଣ ମୋ ପାଖରେ ନୂଆ ହେଇଚୁ ଯେ ମୁଁ ତୋ
ପାଖରେ ପାଞ୍ଚ ରକମ ଭାଉ କରିବି ? ମନ ଯେବେ ନମାନୁଚି
ହାଟରୁ ଯାଇ ବୁଝିଆ । ହଁ, ନଗଦ ଟଙ୍କା ନବୁନା ସଉଦା ପତ୍ର ?
ବଦେଇ—ଟଙ୍କା ନେବ ସଉଦା ପତ୍ର ବି ନେବ । ଏଇ ଦଶରା ପାଇଁ
ଅଟା, ମଇଦା, ଚିନି, ଘିଅ ।
ସଦେଇ—ଆଚ୍ଛା ବଦେଇ ! ତୁ ଟଙ୍କା ଦବୁ ସଉଦା ନବୁ—ଭଲ-
କଥା । ହେଲେ ନଜର ଲୋକ ହବ ମୁଁ ଟୋଟାଏ କଥା ତତେ
ପଚାରୁଚି । ଏ ଅଟା, ମଇଦା, ସୁଜି, ଚିନି, ନହେଲେ କ'ଣ
ଦଶରା ପର୍ବ ହେଇ ପାରିବ ନାଇଁ ?
ବଦେଇ—ହବ ନାଇଁ କାହିଁକି ମହାଜନେ—ସବୁ ହବ । ଖାଲି
ଚକୁଳି ପିଠାରେ କ'ଣ କାମ ଚଳିବ ନାଇଁ ? ହେଲେ ମୋ
ଭାଇ ପରି କହେ—ଟ୍ରେଷ୍ଟା କରିନୁ କି ଓକେଇଡ଼ କରିନୁ ।
ହକ୍ ଧିଆ ମିହନ୍ତ କରି ଖଟିଲୁ—ରୋଜଗାର କଲୁ—ବର୍ଷକରେ
ଥରେ ଅଧେ ମନ ବୋଧ କରି ଖାଇବୁ ନାଇଁ—ମଉଜ
କରିବୁ ନାଇଁ !

ସଦେଇ—ହଉ ବାପ, ଖାଅ । କିଏ ମନାକରୁଚି ? ହଁ ତୋ ଉପରେ କଣ ବାକୀ ବୁକର ଥିଲା ନା କଣ ?

ବଦେଇ—ଏଇ ଟଙ୍କାରୁ ସୁଝି ଦେବ । ମଥୁରା ଗୁମାସ୍ତା ବାକୀ ହିସା-ବର ଚିଠା ଦେଇଥିଲେ ଆଣିଚ ।

ସଦେଇ—ଚିଠାଟା ଦେଖି' କଣ କେତେ ଅଛି ଦେଖେଁ । ରହ, ମା'ଙ୍କ ନାମଟା କୋଉଠୁଁ ଛୁଡ଼ିଲ—ଆଗେ ହେଉ କରିନଏଁ ହୁଁ-ହୁଁ-ହୁଁ-ହୁଁ ! ଦେ'ଚିଠା ବାହାର କର ।

(ବଦେଇ ଚିଠା ବାହାର କରି ଦେଲା । ମହାଜନ ଚିଠା ଦେଖିବାରେ ଲାଗିଲେ)



## —ଦ୍ୱିତୀୟ ଦୃଶ୍ୟ—

(ମହାଜନଙ୍କ ଘରର ତଳ ଖଞ୍ଜା ଅଗଣା । ବ୍ୟସ୍ତ ହୋଇ ମଥୁରା ଆସିଲେ)

ସନାବୋଉ—କିଏ ସେ ? ମଥୁରା ନା କିଏ ? ମଥୁରା ?

ମଥୁରା—ହଁ । ମହାଜନେ କାହାନ୍ତି ?

ସନାବୋଉ—କିଓ ତେମେ ଏମିତି ତରବର ହଉଚ କାହିଁକି ? ଏଣୁ କୁଆଡ଼ୁ ଆସିଲ ?

ମଥୁରା—ନାହିଁ ଏଇ ବାରିପଟେ ଗଲି ଆସିଲି । ମହାଜନେ ଦାଣ୍ଡ ଘରେ ଅଛନ୍ତି ?

ସନାବୋଉ—ମଲା ! କ'ଣ ଏମିତ ନଜାଣିଲା ଭଳି ପଚାରୁଚ ମ ? ଏତେବେଳେ ସେ କଣ କୁଆଡ଼େ ଯାନ୍ତି ?······କଟକରୁ ସଉଦା ଗାଡ଼ୀ ସବୁ ଆସିଲାଣି ?

ମଥୁରା—ହଁ, ପାଞ୍ଚଖଣ୍ଡ ଯାକ ଗାଡ଼ି ସବୁ ଆସି ପହଞ୍ଚିଲାଣି ।

ସନାବୋଉ—ପିଲାଙ୍କ ଲୁଗାପଟା ସବୁ ଆସିଚଟି ?

ମଥୁରା—ଲୁଗାପଟା ? ଲୁଗାପଟା ତ ଆସିବାର କଥା—ଆସିଥିବ ନ ଆସିଥିବ କାହିଁକି ?

ସନାବୋଉ—ଏମିତି ଉପର ଠଉରିଆ କରି କଣ କହୁଚ ! ଆସିଚି କି ନ ଆସିଚି ଠିକ୍‌କରି କହ ।

ମଥୁରା—ଠିକ୍ କରି !! ହେଇଛି ନାମ—ଲୁଗା ତାଲିକା ମୁଁ ଦେଖିନି ସନେଇ ଦେଖିଚି । ମୁଁ ଖାଲି ତେଜରାତି ମାଲ୍ ମଣେଇ ଦେଇ ଆସିଲି ।

ସନାବୋଉ—ଦୋକାନରେ ତମର ଚିନ, ସୁଜି କିଛି ନଥିଲା । ସବୁ ଆସିଚଟି ।

ମଥୁରା—ଆସିଚି ।

ସନାବୋଉ--କସମିଣି ?
ମଥୁରୀ—ହଁ, ଆମିଶ ।
ସନାବୋଉ—ଆମ ଘର ସଉଦା ତାଲିକା ତମ ପାଖରେ ଅଛି ନା ତାଙ୍କ ପାଖରେ ଅଛି ?
ମଥୁରୀ—ମୋ ପାଖରେ ଅଛି ।
ସନାବୋଉ—ତାଲିକା ମାଫିକେ ଯାହା ଯାହା ସଉଦା, ସବୁ ଇଆଡ଼େ ଆଣି ମତେ ଦେଇଯିବ । ତାଙ୍କୁ ଦେଖେଇବ ନାହିଁ ।
ମଥୁରୀ—ଜିନଷ ପିନା ଦେଖେଇବ ନାଇଁ—ହେଲେ ତାଲିକା ?
ସନାବୋଉ—ଘର ବୁଦ୍ଧି ତମର ! ତାଲିକା ଦେଖି ସେ ଆଉ ବୁଝି ପାରବେ ନାଇଁ, କେତେ ଜିନଷ ଆସିଲା ବୋଲି ! ! ସହଜେତ କହୁଚନ୍ତି—ଖାଉ ବଢ଼ି ବଢ଼ି ଗଲାଣି—ଏ ବର୍ଷ ଖାଲି ଚକୁଳି ପିଠାରେ କାମ ଚଳେଇ ନିଅ ! ହଁ, ତାଲିକାଟା ଏଇଠି ତମ ପାଖରେ ଅଛି ?
ମଥୁରୀ—ଅଛି ।
ସନାବୋଉ—ଦେଖିବଟି—ଚିନି କେତେ ? ମଇଦା କେତେ ?
ମଥୁରୀ—ଚିନି ସାଢ଼େ ତିନିସେର—ମଇଦା ଦୁ' ସେର ।
ସନାବୋଉ—ନାଇଁ, ଅଣ୍ଟିବ ନାଇଁ । ବଉଳ ଘର ପିଲାଏ ଖାଇବାକୁ ଆସିବେ । ବଢ଼େଇ ଦିଅ । ଚିନି ଗୁରି ସେର—ମଇଦା ତିନି ସେର । ଦିଅ ଆଉ ସେରେ ଅଧିକା ଆଣିବ ।
ମଥୁରୀ—ହୁଁ ! ତା'ହେଲେ କେତେ ହେଲା ? ଚିନି ଗୁରି ସେର ! ଗୁରି ସେରକୁ ମେଟ୍ରିକ ପର୍ଦ୍ଧ କେତେ ଡାକିଲା ? ହଁ, ତିନି କଲୋଗ୍ରାମ ସାତଶହ ତିରିଶ ଗ୍ରାମ୍ । ମାନେ ତିନି ଦଶମିକ ସାତ୍ ତିନି ଶୂନ୍ କଲୋଗ୍ରାମ ।
ସନାବୋଉ--କଣ ମଥୁରୀ ?

ମଥୁରା—ନାଆ ।

ସନାବୋଉ—ଦେଖି ଦେଖି—ମୋ' ଆଡ଼କୁ ଚାହିଁ ତ ! ତମ ମୁଣ୍ଡ ଠିକଣା ଅଛିଟି ?

ମଥୁରା—ସବୁ ଠିକଣା ଅଛି ନାଆ !

ସନାବୋଉ—କ'ଣ ଠିକଣା ଅଛି ? ମୁଁ ତ ତୁମକୁ ଚାଲିକା ଡ଼ାକୁଚି —ତମେ ଏମିତି କଲେ ମଲେ କ'ଣ ହଉଚ ?

ମଥୁରା—ପାଠ ତ ସେଇଠି ନାଆ ! ତମେ ଥାଅ—ମୁଁ ଆଗେ ମହାଜନଙ୍କ ପାଖରୁ ଆସେ—ସବୁ ବୁଝେଇ ଦେବ ।

( ପ୍ରସ୍ଥାନ )

—o—

## ତୃତୀୟ ଦୃଶ୍ୟ

(ମହାଜନଙ୍କ ପୂଜାର ଘର । ମହାଜନ ଓ ବଦେଇ ବସି ଆଲୋଚନା କରୁଚନ୍ତି )

**ବଦେଇ**—ମୁଁ ତା' ହେଲେ ଆସୁଚି ମହାଜନେ ?

**ସଦେଇ**—ହଁ, ଯାଅ । ଦେଖିଲ ତ, ଗୋଟାଏ ବେପାରକୁ କେତେ-ବେଳ ଲାଗିଲା ? (ବଦେଇର ପ୍ରସ୍ଥାନ) ଓହୋ ! ଏତେବେଳେ ଯାଇ ମଣିଷ ଟିକଏ ନିର୍ଜଞ୍ଜାଳ ହୋଇ ମା'ଙ୍କ ନାଁ ନେଇ ପାରିବ ! ମା'ଗୋ—ମା'ଦୁର୍ଗେ ! ···ଏଁ ! ସେଠି ସେ କଣ ପଡ଼ିଚି ? କୋଳଥ ? (ପାଖକୁ ଯାଇ) ହଁ ତ, କୋଳଥ ! ସେଦିନ ଏଠି କୋଳଥ ମପା ହଉଥିଲା—ଝାଡ଼ଝୁଡ଼ ବସ୍ତାରେ ପକାଇବାକୁ କାହାର ଖିଆଲ ନାହିଁ ! ସେରେ ଖଣ୍ଡେ କୋଳଥ ଖତ ହୋଇଗଲାଣି ! ··· ହେବେ ନାଇଁ—ଏଗୁଡ଼ାକ ଆଉ ମଣିଷ ହେବେ ନାହିଁ ! ···ଆରେ ବାବୁ ! କୋଳଥ ସିନା ଗୋରୁ ଖାଉଚନ୍ତି—ହେଲେ ପଇସାଟା ଯେ ମଣିଷ ହାତକୁ ଆସୁଚି— ଏ କଥା କ'ଣ କାହା ବୁଦ୍ଧିରେ ପଶୁନାଇଁ ! !! ସେରେ କୋଳଥ !! ( ଏତିକବେଳେ ମଥୁରା ଆସି ଦୁଆରମୁହଁ ପାଖରେ ଦେଖାଦେଲେ ) କିଏ ? କିଏ ସେଠି ? ମଥୁରା ?

**ମଥୁରା**—ଆଜ୍ଞା ।

**ସଦେଇ**—ସେଠି ମୁହଁକୁ ଛପା ଦେଇ ଠିଆ ହୋଇଚ କାଇଁକି । ଏଠିକି ଆସ—ଏ-ଠି-କି (ମଥୁରା ଭିତରକୁ ଆସିଲେ) ଏଇ ଦେଖ । ଏକାବେଳକେ ଖତ ହୋଇ ଯାଇଚି ! ! ଗୋଟାଏ ଦୁଇଟା ଦାନା ନୁହେଁ—ଏକାବେଳକେ ସେରେ କୋଳଥ ! ଦେଖୁଚଟି ?

ମଥୁରି—ଆଜ୍ଞା ! ସେରେ କୋଳଥ ! ! (ହେଷଣ୍ଡ ନମ୍ର ସ୍ୱରରେ) ମାନେ—
ନ'ଶହ ଛତିଶ ଗ୍ରାମ୍ ! !

ସଦେଇ—କଣ କହୁଚ ? ଆହେ, କଣ ସେମିତି ଗୁଣୁଗୁଣୁ ହୋଇ କହୁଚ ?

ମଥୁରି—ନାହିଁ ଆଜ୍ଞା ।

ସଦେଇ—ସକାଳୁ ତମେ କୋଉ କାମରେ ଯାଇଥିଲ ?

ମଥୁରି—ସବୁ କାମକୁ ଆଜ୍ଞା । ଚାଟିବାକୁ ଗଲି—ଦୋକାନ ଫିଟେଇଲି—ଆଉ କଟକରୁ ସଉଦାଗାଡ଼ି ଆସି ପହଞ୍ଚିଲା ଯେ—

ସଦେଇ—ସଉଦାଗାଡ଼ି ସବୁ ଆସି ଗଲାଣି ?

ମଥୁରି—ହଁ । ସବୁ ମାଲ ଆସିଚି । ଜିନଷ ପତ୍ର ସବୁ ମପେଇ ଦେଇ ଗୃହଣ ଫର୍ଦ୍ଦ ନେଇ ଏଠିକି ଆସିଲି ।

ସଦେଇ—ହଉ, ତା'ହେଲେ ବସ ଏଠି । ରୁହ ମୁଁ ମା'ଙ୍କ ନାମଟା କୋଉଁଠି ଗୁଡ଼ଲି ଠିକେ ହୋଇ କରନିଏଁ । ଉଁ-ଉଁ-ଉଁ-ହୁଁ ! ହଁ !! ଆମ ତାଲିକା ବାହାର କର—ଆଉ ମହାଜନର ଗୃହଣ ମାପିକେ ସବୁ ଗୋଟି ଗୋଟି ମିଳେଇ କରି ପଢ଼ ।

( ଦୁହେଁ ବସିଲେ )

ମଥୁରି—ହଁ, ପଢ଼ୁଚି । ଆମ ତାଲିକା—ଗୁଆ ଦ'ମହଣକୁ ଗୃହଣ ମାପିକେ ମାଲ ଆସିଚି—ପଚସ୍ତରି କିଲୋଗ୍ରାମ । ଚିନି ପାଞ୍ଚ ମହଣକୁ ଗୃହଣ ମାପିକେ ମାଲ୍ ଆସିଚି ଏକଶହ ସତାଅଶୀ କିଲୋଗ୍ରାମ୍ । ଧନିଆ ଏକ ମହଣକୁ ମାଲ୍ ଆସିଚି ସଇଁତିରିଶ କିଲୋଗ୍ରାମ୍ । ଅଲେଇଚ ଅଢ଼େଇ ସେରକୁ ମାଲ୍ ଆସିଚି ଦୁଇ ଦଶମିକ ସାତ ଗୃଣ ପାଞ୍ଚ କିଲୋଗ୍ରାମ୍ । ଗୁଜୁରାତି ଅଧସେରକୁ ମାଲ୍ ଆସିଚି ଗୃଣଶହ ସତଷଠି ଗ୍ରାମ୍ ।

( ମହାଜନ ଏ ସବୁ କିଛି ବୁଝିପାରୁ ନ ଥାନ୍ତି )

ସଦେଇ—ମଥୁରୀ !!!

ମଥୁରୀ—ଆଜ୍ଞା ।

ସଦେଇ—ଏ’ କଣ ହଉଚି ?

ମଥୁରୀ—ଆଜ୍ଞା ଆମ ଡାଲକା ସାଥିରେ କଟକ ମହାଜନଙ୍କ ଗୃହିଣି ମାଫିକେ ମାଲ ମିଳେଇ ଦଫାକୁ ଦଫା ପଡ଼ି ଯାଉଚି ।

ସଦେଇ—ମୁଁ କ’ଣ ତମର ପରିହାସର ଲୋକ, ମଥୁରୀ ?

ମଥୁରୀ—ଆଜ୍ଞା, ଏ କଥା କାହିଁକି କହୁଚନ୍ତି ?

ସଦେଇ—ଏଠି ତେବେ କି କାମ ଏ ଗୃହିଣି ? ସେତେବେଳେ ସେ ଝୁଅଟା ଆସି କ’ଣ ଗାଁ •ଗାଁ ହୋଇ ହୋଇ ଗଲା । ଏଇନେ ତେମେ ଆସି ଗ୍ରାମ୍ ଗ୍ରାମ୍ ବୋଲି ଚହଳ ପକେଇଚ । ଏ’କି ପାଲା ଏଠି ଲଗେଇଚ ? ଏ ଘର ସାରା ସମସ୍ତେ ମିଶି ମତେ କଣ ଏଠି ରଖେଇ ଦେବ ନାଇଁ !! ମୁଁ କହୁଚି ଡାଲକା ପଡ଼—ତେମେ ସକାଳୁ ତେଣେ କୁଆଡ଼େ ବୁଲି ବୁଲି ଆସି ହାତରେ ଗୁଲାଏ କାଗଜ ଧରି ମୋ’ ସାଥିରେ ପରିହାସ କରିବାକୁ ବାହାରି ପଡ଼ିଲ ? ଏଇ ତମର ବିବେକ ?

ମଥୁରୀ—ମୋର କିଛି ଦୋଷ ନାହିଁ ମହାଜନେ ! ଯାହା ଗୃହିଣି ଆସିଚି—ମୁଁ ଠିକ୍ ସେଇଆ ପଢ଼ୁଚି ।

ସଦେଇ—ଗୃହିଣି କିଏ ଦେଇଚି ?

ମଥୁରୀ—ମହାଜନ ।

ସଦେଇ—କୋଉ ମହାଜନ ?

ମଥୁରୀ—ଆମର ସେଇ ପୁରୁଣା ମହାଜନ ଆଜ୍ଞା—ନୀଳମଣି ସାହୁ—ମାଲ୍ ଗୋଦାମ୍—

ସଦେଇ— କାହିଁ ? ଏ ଫର୍ମା ତ କଣ ବଦଳି ଗଲାଣି । ଆଗେ ଚାଲି କାଗଜରେ ଲେଖା ଆସୁଥିଲା—ଇଏ କଣ ନାଲି—ନେଳି କାଗଜ !

ମଥୁରି— ଆଗ କଥା ଆଉ ଅଛି ? ସବୁ ବଦଳି ଗଲାଣି ।

ସଦେଇ— କ'ଣ ବଦଳି ଗଲାଣି ?

ମଥୁରି— ଏଇ ଯେ ନୀଳମଣି ସାହୁଙ୍କ ପୁଅ ବିଶ୍ବଜିତ୍ ସାହୁ—

ସଦେଇ—କି ସାହୁ ?

ମଥୁରି—ବିଶ୍ବଜିତ୍ ସାହୁ । କଲିକତା, ବମ୍ବେ, ମାନ୍ଦ୍ରାଜ ବୁଲି ଆସି ସବୁ ସେ ବଦଳେଇ ଦେଲାଣି । ଏଥର ଏ ମାଲ୍ ବିରିଦ ଦବାକୁ ଯାଇ ମୁଁ ସବୁ ଦେଖି ଆସିଚି - ଗୋଦାମ ଚକ୍ ଚକ୍ । କାଗଜ ପତ୍ର ବିଲ୍ ଗୁଲାଣ ସବୁ ନୂଆ ଢାଞ୍ଚାରେ ବଦଳେଇ ଦେଇଚି ।

ସଦେଇ— ଆରେ ବାବୁ — ତା'ର ସେ ଦୁନିଆ ବଦଳେଇ ଦଉ, ଆମର କ'ଣ ଅଛି ? ଆମ ମାଲ୍ କଥା ଏବେ କ'ଣ ହେଇଚି ? ଆମର ବିରିଦ ଅଧସେର ଗୁଜରାତି । ଆଉ ସିଏ ଗୁଲାଣ କରିଚି କ'ଣ କେତେ ଶହ — ପଡ଼ିବଟି !

ମଥୁରି—ଗୁରିଶହ ସତଷଠି ଗ୍ରାମ୍ ।

ସଦେଇ—ଗୁରିହଜାର ଉଠେଇ ଆଣିଲି ନାହିଁ ! ଗୁରି ଲକ୍ଷ —

ମଥୁରି—ଆଜ୍ଞା ଆପଣ ଶୁଣନ୍ତୁ ଆଗେ ମୋ' କଥା ।

ସଦେଇ — ତମେ ମୁଣ୍ଡ ଥଣ୍ଡା କରି କଥା କହୁଚତ ମଥୁରି ?

ମଥୁରି—ଆଜ୍ଞା ମୁଣ୍ଡ ମୋର ଠିକ୍ ଅଛି । ଆପଣ ଶୁଣନ୍ତୁ ।

ସଦେଇ – ଶୁଣିବି ଆଉ କଣ ? ଏ କି ପାଠ ? ଏ ଶ' ହଜାର ଲକ୍ଷ — କି ପାଠ ସ୍ରେ ?

ମଥୁରି—ଆଜ୍ଞା ଏ ପରି ମେଟ୍ରିକ !

ସଦେଇ—କଣ ହେଲା ? ଏ ମେଟ୍ରିକ ପାଠ ! ଆମେ ଏ ବୟସେ ପାଠ ପଢ଼ିବୁ ?

ମଥୁରୀ—ନାଇଁ ମହାଜନେ, ଆପଣେ ମେଟ୍ରିକ୍ ପାଠ କାହିଁକି ପଢ଼ିବେ କି ? ଏଣିକି ଏସବୁ ଓଜନ କାରବାର ମେଟ୍ରିକ ଧାରାରେ ହବ । ଏଇ ପହିଲାରୁ, ଏ ଧାରା ଚାଲୁ ହେଲା ।

ସଦେଇ—ଗଲା ମଥୁରୀ—ମୋ ମୁଣ୍ଡ ଗୋଳମାଳ ହୋଇଗଲା ! ମୁଁ ତମ କଥା କିଛି ବୁଝି ପାରୁନ !!

ମଥୁରୀ—ଆଜ୍ଞା, ଆମର ଏ ବିକାକଣା କାରବାରରେ ଯୋଉ ମହଣ ସେର ଛଟାଙ୍କି ଓଜନ ଚଳୁଥିଲା—ଏଣିକି ସେ ସବୁ ଉଠିଯାଇ, ତା’ବଦଳରେ ଏଇ ଗ୍ରାମ୍—କିଲୋଗ୍ରାମ—ଟନ୍—ଇମ୍ପିରିଏଲ ଟନ୍—ଏଇ ସବୁ ଚଳିବ । ଏକୁଇ କହୁଛନ୍ତି ମେଟ୍ରିକ ଧାରାରେ ଓଜନ ।

ସଦେଇ—କାଇଁକି ? ସିଏ ଉଠିଯାଇ ଇଏ ଚଳିବ କାଇଁକି ?

ମଥୁରୀ—ସାରା ଦୁନିଆରେ ପରା ଏଇ ଗୋଟାଏ ଓଜନ ଚଳିବ ।

ସଦେଇ—ଏଇଟା ତମ ମନକୁ ପାଉଚି ମଥୁରା ?

ମଥୁରୀ—ଏଇଥର ମୁଁ ଯେତେ ବେଳେ କଟକ ଯାଇଥିଲି ସେଇ ବିଶ୍ୱଜିତ ବାବୁ ମତେ ସବୁ କଥା ବୁଝେଇ ଦେଲେ । ଆମ ଦେଶରେ କୁଆଡ଼େ ମୋଟରେ ଦେଢ଼ଶ’ କି ଦୁଇଶ ପ୍ରକାର ଓଜନ ଧାରା ଚଳୁଚି । ଏଇଠି ଆମ ପୁରୀରେ ଗୋଟାଏ କଟକରେ ଗୋଟାଏ । ଏଥିରେ ଆମେ କାହାକୁ ଠକୁଥିଲେ ତ ଆଉ କେହି ଆମକୁ ଠକୁଥିଲା ! ଏ ମେଟ୍ରିକ ତ ଆଜ୍ଞା ସବୁ ଆଡ଼େ ଚାଲିଲା—ଏଥିରେ ଆଉ ଠକିବ କିଏ କାହାକୁ ?

ସଦେଇ—ସିଏ ଯୋଉଠି ଯାଆକୁ ଚଳେଇବାର ଚଳଉ ମଥୁରା—ଆମେ ଏଠି ଚଳେଇବା ନାଇଁ ।

ମଥୁରି—ଆଜ୍ଞା, ସିଏ ତ ଚାରି' ଗୃହ୍ଲବ—ଆମେ ସେଇ ଧାରିରେ
ସିବା—ଆମେ ଆଉ ଚଳେଇବା କ'ଣ ? ଏବେଠୁଁ ତିନ
ବର୍ଷ ଯାଏ ଏ ହ୍'ଟା ଯାକ ଓଜନ ମିଳମିଶି ଚଳବ—ସେଇଠୁ
ଏ ପୁରୁଣା ଉଠି ଯାଇ ଖାଲ ଏଇ ମେଟ୍ରିକ ଗୃହ୍ଲବ ।

ସଦେଇ—ତିନବର୍ଷ ଅଚ୍ଛି—ଆମ ମହାଜନ କାଇଁକି ଆଗଚଲ ପଡ଼
ଏବେଠୁ ଚଳେଇ ଦେଲେଣି ? ଏ ଗୃହ୍ଲଣ ଫେରେଇ ଦିଅ ।

ମଥୁରି—ଆଜ୍ଞା, ସିଏ ପରି କହ୍ନଲେ—ଏ ଦୁନିଆରେ ଆଗଚଲ ପଡ଼
ସବୁ କରି ନ ଗଲେ, ସବୁ କଥାରେ ପଛରେ ପଡ଼ ରହ୍ନିବ ।
ଶୁଣନ୍ତୁ ଆଜ୍ଞା—ମୁଁ ଗୃହ୍ଲଣଟା ପଢ଼ିଦିଏଁ ।

ସଦେଇ—ପଢ଼ିବ ? ହଉ, ଆଗେ ମୁନ୍ଦାଏ ପାଣି ଦିଅ । ମୁଁ ପିଏ—
ସେଇଠୁ ପଢ଼ିବ । (ସନେଇ ଆସିଲା । ମଥୁରି ପାଣି ପାଇଁ ଗଲେ)

ସନା—ବାପା !

ସଦେଇ—କଏ, ସନା ? କ'ଣ ସେ ? ତୋ ହାତରେ ସେ ନେଳଆ
କାଗଜ ଖଣ୍ଡିକ ପୁଣି କ'ଣ ? ଲୁଗା ଗୃହ୍ଲଣ ?

ସନା—ଲୁଗା ଗୃହ୍ଲଣ ମିଳେଇ ଦେଖିଲଣି—ଠିକ୍ ଅଛି ।

ସଦେଇ—ଆଉ ଇଏ କଣ ?

ସନା—ଚିଠି ? ତମ ନାଁରେ ଆସିଚ । (ଚିଠିଟି ଦେଲା)

ସଦେଇ—ଚିଠି ? କଏ ଦେଇଚ ?

ସନା—ବିଶ୍ୱଜିତ୍‌ବାବୁ !

ସଦେଇ—ଓ, ଆମ ମାଲମଣି ସାହୁ ମହାଜନଙ୍କ ପୁଅ । ଚିଠି ପୁଣି
କ'ଣ ଦେଇଚନ୍ତି ? (ପାଣି ନେଇ ମଥୁରି ଆସିଲେ)

ମଥୁରି—ପାଣି ନଅନ୍ତୁ ।

ସଦେଇ—ହଁ ଦିଅ । ......ପଢ଼ିବଟି ମଥୁରି—ସାହୁପୁଅ କଣ ଆମ
ପାଖକୁ ଚିଠି ଦେଇଚନ୍ତି । (ପାଣି ପିଇଲେ)

ମଥୁରା—(ପଢ଼ିଲେ) "ମାନନୀୟେଷୁ —

ସଦେଇ—ହୁଁ —ଇଏ ଗୋଟାଏ ନୂଆ ଢଙ୍ଗ । ସେଇଠୁ ?

ମଥୁରା—"ପ୍ରଣାମ ନେବେ । ଆପଣଙ୍କ ଦୋକାନ ତାଲିକା ଅନୁଯାୟୀ ସବୁ ଲୁଗା ଗ୍ରହଣ କରାହେଲା । କିନ୍ତୁ ଦଶରା ପର୍ବରେ ଆପଣଙ୍କ ପୁଅଝିଅମାନଙ୍କ ପାଇଁ ପଠାଇଥିବା ଲୁଗା ତାଲିକା ଦେଖି ମୋ ମନରେ ଘୋର ଦୁଃଖ ହେଲା । ଏକଥା ନିଶ୍ଚୟ ଯେ ସେମାନେ ଏ ତାଲିକା କେବେ ପସନ୍ଦ କରି ନ ଥିବେ । ଏଇ ବାବଦରେ ସେମାନଙ୍କ ମନରେ ଏସବୁ କଥାରେ ଦୁଃଖ ଦେଲେ, ସେମାନଙ୍କ ଜୀବନ ଉପରେ ଏହାର ଖରାପ ପ୍ରଭାବ ପଡ଼ିବ ।

ସଦେଇ—କିଏ ? କିଏ ଏକଥା କହିଲା ? ସେମାନେ ତାଲିକା ପସନ୍ଦ କରି ନାହାନ୍ତି—ଏକଥା ତାଙ୍କୁ କିଏ କହିଲା ? ହୁଁ ! ବୁଝିଲି । ଏ ତମରି କାମ ମଥୁରା ! ମାଲ୍ ବରାଦ୍ ଦବାକୁ ଯାଇ ତେମେ ଏ କାମ କରି ଆସିଚ ! ହୁଁ ! ସେଇଠୁ କ'ଣ ଲେଖିଚନ୍ତି, ପଢ଼ ।

ମଥୁରା—"ସେଥିପାଇଁ ମୋ ନିଜ ତରଫ୍‌ରୁ ବରାଦ କରି ପିଲାମାନଙ୍କ ପାଇଁ ନିମ୍ନଲିଖିତମତେ ଲୁଗା ଜାମା ଗ୍ରହଣ କଲି ।......

(ସନାବୋଉ, ମାଳ ଓ କୁଣିଆ ଆସିଲେ)

ସନାବୋଉ—ପିଲାଙ୍କ ଲୁଗା ପଟା ସବୁ ଆସିଚ ଟି ମଥୁରା ?

ମାଳ—ମୋ ପାଇଁ ପାରାଗାଓଁ ଶାଢ଼ୀ ?

କୁଣିଆ—ମୋର୍' ବେଲ୍‌ଟବାଲା ପେଣ୍ଟ ?

ସଦେଇ—ଓ ସମସ୍ତେ ଆସି ଜମା ହେଇ ଗଲଣିଟି ? ଶୁଣ—ଗ୍ରହଣ କ'ଣ ଆସିଚ ଶୁଣ । ହୁଁ—ପଢ଼ ମଥୁରା ।

ମଥୁରା—( ପଢ଼ିଲେ ) "ଶ୍ରୀମାନ୍ ସନତ୍ କୁମାରଙ୍କ ପାଇଁ ମର୍ସି-ରାଇଜ୍‌ଡ୍ ସୁପର୍ ଫାଇନ୍ ଧୋତି ଗୋଟିଏ ଓ ମୟୂରଭଞ୍ଜ ସିଲ୍‌କର ପଞ୍ଜାବୀ ପାଇଁ କନା ତିନଗଜ । ଭଉଣୀ ମାଳବିକା ପାଇଁ ଦଶହରିକୁ ଗୋଟିଏ ଏବଂ କୁମାର ପୂର୍ଣ୍ଣିମାକୁ ଗୋଟିଏ—ଏପରି ଦୁଇଟି ପାରିଗାଓଁ ଶାଢ଼ୀ । ବାବୁ କଶାନ୍ କୁମାର ପାଇଁ ହାଫ୍ ପେଣ୍ଟ, ମୋଜା, ଯୋତା, ସାର୍ଟ ଓ ବେଲ୍ଟ । ଇତି ।
ଆପଣଙ୍କର ବଶମ୍ବଦ ।"

ସଦେଇ—( ହୋ ହୋ ହସି ) ଦେଖୁଚ ତ ମଥୁରା—ଆମ ପୁଅ ଗୁଣମଣିଙ୍କ ବୁଦ୍ଧି ଦେଖୁଚ ତ ? କାହାର ନାଇଁ କାହାର ଚିଠି ଆଣି ଆମକୁ ପଢ଼ଉଛନ୍ତି !! ହଇଓ ଏ ସନତ୍ କୁମାର—କଶନ୍ କୁମାର—ମାଳବିକା ଏମାନେ ସବୁ କିଏ ? କାହା ଚିଠି ଇଏ ?

ମଥୁରା—ସବୁ ଠିକ୍ ଅଛି ଆଜ୍ଞା । ଇଏ ଆପଣଙ୍କ ଚିଠି । ଏଇ ତଳେ ପୁଣି ପଦେ ଲେଖା ହୋଇଚି - ଶୁଣନ୍ତୁ—"ପୁନଶ୍ଚ—ଆପଣଙ୍କ ପିଲା ମାନଙ୍କ ନାମ କରଣ ଏଇ କ୍ରମରେ ମୁଁ ମାର୍ଜିତ କରିଚି—ଗ୍ରହଣ କରିବେ ବୋଲି ଆଶା 'ସନେଇ—ସନତ୍ କୁମାର । ମାଳି—ମାଳବିକା ! କୁଶିଆ—କଶାନ୍ କୁମାର ।" ବୁଝିଲେ ତ ଆଜ୍ଞା ?

ସଦେଇ—ଏଁ !! ଏତେ ବୁଝେଇ କରି ଯେତେବେଳେ ଲେଖିଛନ୍ତି—ନ ବୁଝି ମୋର ସାଧ୍ୟ ଅଛି !!

ମଥୁରା—ଏ ଗୃହ୍ଲଣ ତା' ହେଲେ ଆମ ଖାତାରେ ଜମା ଦେବ ?

ସଦେଇ—ହଁ ! ମହଣ ହେଲା—ମେଟ୍ରିକ ! ପାଟେଣୀ ଗାଁ ହେଲା—ପାରି ଗାଁଓ ! ସନିଆ ହେଲା ସନତ୍ କୁମାର ! ମାଳି ହେଲା—ମାଳବିକା ! ଆଉ କୁଶିଆ ହେଲା—କଶାନ କୁମାର !!! ଗୃହ୍ଲଣ ଜମା ନ କରି କଣ ଆଉ ଫେରେଇ ଦବ !! ହଉ-ସବୁ

ଜମାକର ମତେ ଟିକଏ ନିର୍ଜଞ୍ଜାଳରେ ଘୁଞ୍ଚ ଏଠୁ ସମସ୍ତେ ଗଲ—ମୁଁ ମା'ଙ୍କ ନାମ ଟିକଏ ନିଏଁ । ( ସ୍ତୋତ୍ର ପାଠ) "ନାସା କପାଳମୀ ପାତୁ ଶ୍ରୋତ୍ରେ ଦ୍ୱେ ଚନ୍ଦ୍ର ଧାରଣୀ ! ହୃଦୟଂ ଲଳିତା ଦେବୀ ଉଦରଂ ସିଂହ ବାହିନୀ ।"

( ମହାଜନ ଆଖିବୁଜି ବସିଥା'ନ୍ତି । ଅନ୍ୟ ମାନଙ୍କ ମୁହଁରେ ଉପହାସ )



---

ସୂଚନା:—

୧୯୫୮ ମସିହା ଅକ୍ଟୋବର ମାସ ପହିଲା ତାରିଖଠାରୁ ସରକାରୀ ଉଦ୍ଦେଶ୍ୟ ଅନୁଯାୟୀ, ଆମଦେଶରେ 'ମେଟ୍ରିକ୍' ଧାରାରେ ଓଜନ ସାଧାରଣ ପ୍ରଚଳନ କରାଯାଇଥିଲା । ଏ ଚିତ୍ରରେ ତାହାର ଉଲ୍ଲେଖ କରାଯାଇଛି ।



# ପୂରାପୂରି ପାରିବାରିକ

# ଏକକ ପରିବାର

## ଏ ପରିବାରରେ ଅଛନ୍ତି

କବି ମାନସ—ଗୃହସ୍ୱାମୀ ( ବୟସ—୩୦ )

ରାଧା—ତାଙ୍କ ସ୍ତ୍ରୀ ( ବୟସ—୨୫ )

ଯମୁନା ଓ ସୁକେଶୀ—ତାଙ୍କର ଦୁଇ ପରମାତ୍ମୀୟା ।
( ବୟସ ୧୫ ଓ ୧୬ )

ଭବ—ତାଙ୍କ ଶାଳକ ( ବୟସ ୨୩ )

କୁଞ୍ଜ—ତାଙ୍କ ଶ୍ୱଶୁର ।

ଓ

ମୀରା—କୌଣସି ଏକ ମାସିକ ପତ୍ରିକା କାର୍ଯ୍ୟାଳୟର
ଜଣେ ତରୁଣୀ କର୍ମୀ ।

( ଏ ପରିବାରର ରଚନାକାଳ—ନଭେମ୍ବର ୧୯୫୮ )

# କବି ପରିବାର

## ପ୍ରଥମ ଦୃଶ୍ୟ

( କଟକ ସହର । କବି ମାନସଙ୍କ ବାସଭବନର ଏକ ପ୍ରକୋଷ୍ଠ । ମାନସ ଅତି ନିବିଷ୍ଟ ମନରେ କବିତା ରଚନାରେ ବ୍ୟସ୍ତ । ପ୍ରକୋଷ୍ଠ ଭିତରକୁ ଆସିଲେ କବିପତ୍ନୀ-ରାଧା । ସେ ଆସି ସିଧା-ସଳଖ କଥା ଆରମ୍ଭ କରିଦେଲେ । ...ସମୟ —ପୂର୍ବାହ୍ନ )

ରାଧା—ଏ-ଇ, ଶୁଣିଚ ନା ? ଆମ ଭବି ! ଶୁଣୁଚ ଟି ?

ମାନସ—ଆଚ୍ଛା ରାଧା, ଶୁଣିବା ପାଇଁ ଭଗବାନ ମତେ କାନ ଦି'ଟା ଦେଇଚନ୍ତି ବୋଲି ମୁଁ କ'ଣ କେବଳ ତମରି କଥା ଶୁଣୁଥିବି ?

ରାଧା -- ମୋ କଥା ନୁହେଁମ । ଆମ ଭବି କଥା ।

ମାନସ—ତମେ ପରା ନିଜେ ଶୁଣିଚ ରାଧା, ଜଣେ ଭଦ୍ରଲୋକ ସିଏ— ବାରମ୍ବାର କରି କହି ଯାଇଚନ୍ତି—କାଲି ଭିତରେ କବିତାଟା ପାଇଲେ ଏ ସଂଖ୍ୟା କାଗଜରେ ବାହାର କରିବେ ।

ରାଧା—ମୁଁ ତମର ସେଇ କବିତା କଥା କହୁଚି ମ ।

ମାନସ - କଣ ହେଲା ! ! (ମାନସର ବିସ୍ମୟର ସୀମାନାହିଁ)

ରାଧା—ମୁଁ ଜାଣେ ପରା ! ଦିନ ରାତି ତମେ ଗପ, କବିତା, ବହି, କାଗଜ, ଲେଖା-ପଢ଼ାରେ ମାତି ଥାଅ ; ମୁଁ ଅକାଳେ ସକାଳେ ସେଇ କଥା ପଦେ କହିଲାରୁ ତମ ଆଖି ଯାଇ ଆକାଶରେ ଖୋସି ହୋଇ ଯାଉଚି ।

ମାନସ—ମୋତେ ନୁହେଁ ରାଧା । ଅକାଳେ ସକାଳେ ନୁହେଁ କି ପଦେ ଅଧେ ନୁହେଁ ! ତମ ମୁହଁରୁ କବି ଓ କବିତାର ଗପ୍ପ ଶ୍ରାଦ୍ଧର କାହାଣୀ ଦିନରାତି ଚବିଶ ଘଣ୍ଟା ଶୁଣିବାକୁ ମିଳେ । ସେଥିପାଇଁ ମୁଁ ଦୁଃଖିତ ହେଲେ ବି ବିସ୍ମିତ ନୁହେଁ । କିନ୍ତୁ ଆଜି ଏଇ- ଯାହା କୁହନ୍ତି—ପରମ ପ୍ରୀତି ଭରେ, ଅତି ମନୋରମ ଗଳାରେ ମୋ କବିତା କଥା କହିଲ ଯେ—

ରାଧା—ମୁଁ କହୁନି ମ । ଆମ ଭବ କହୁଥିଲା ।

ମାନସ—ଭବ ! ମାନେ ତମ ଭାଇ ଭବନାଥ ?

ରାଧା—ତମର ଆଉ କେଇଟା ଭବ ଏ ସଂସାରରେ ଅଛନ୍ତି କି ? ଭାଇ ବୋଲିତ ମୋର ସେଇ ଗୋଟିକ !

ମାନସ—ସ୍ୱୀକାର କଲି, ତମର ଏକମାତ୍ର ଭାଇ ଭବନାଥ ମୋର ଏକ ପରମବନ୍ଧୁ । କିନ୍ତୁ ସେ କବିତା କଥା କ'ଣ କହୁଥିଲା ?

ରାଧା—କହୁଥିଲା ପରା - ଆମର ଢେଣେ ସମସ୍ତେ କୁଆଡ଼େ ତମ ଲେଖାଛଡ଼ା ଆଉ କାହା ଲେଖା ପଢ଼ୁ ନାହାନ୍ତି । ଏତେ ଭଲ ହଉଚି ତମ ଲେଖା ! !

ମାନସ—ଏକଥା ଭବ କହୁଥିଲା ?

ରାଧା—ହଁ ପରା ।

ମାନସ – କାହାକୁ କହୁଥିଲା ?

ରାଧା—ଆମ ଗାଁ ଧଡ଼ିଆ ଭଣ୍ଡାରୀ ଧବଳେଶ୍ୱର ଦର୍ଶନକୁ ଆସିଚି— ଭବ ତାକୁଇ କହୁଥିଲା ବୋଲି ସେ କହୁଥିଲା ।

ମାନସ—ବୁଝିଲ ରାଧା ! ମଣିଷ ଉପରେ ହଠାତ୍ ବଜ୍ରପାତ ହେଲେ ସେ ଯେପରି ଦୁଃଖିତ, ବିସ୍ମିତ କି ସ୍ତମ୍ଭୀଭୂତ ହବାର ଅବସର ନ ପାଇ ଏକାବେଳକେ ଭୂତ ପାଲଟିଯାଏ—ତମ କଥା ଶୁଣି ମୋର ସେଇ ଅବସ୍ଥା ହେଲାଣି । ଭିବ କରୁଚ କବିତା ଚର୍ଚ୍ଚା ! ! ଆଉ ସେ ସମ୍ବାଦ ଆଣି ଦେଇଚ—ଧଡ଼ିଆ ଭଣ୍ଡାରୀ ! !

ରାଧା—ଏକା ଭିବ !! ବାପା, ରମା, ପ୍ରଭା ମଣି, ସମସ୍ତଙ୍କ ମୁହଁ ରେ ସେଇ କଥା—ତମ ଲେଖା ଖୁବ ଭଲ !

ମାନସ—ତମ ବାପାଙ୍କ ଦୁର୍ଭାଗ୍ୟ ରାଧା—ମୁଁ ତମକୁ ବିବାହ କରିବା ପରେ ଲେଖାଲେଖି ଆରମ୍ଭ କଲି । ମୁଁ ଯଦି ଆମ ବିବାହ ପୂର୍ବରୁ ଲେଖକ ହୋଇଥାନ୍ତି—ଆଉ ତମ ବାପା, ଭାଇ, ଭଉଣୀମାନେ ମୋ' ଲେଖାର ଏମିତି ଆଦର କରିଥାନ୍ତେ— ତା'ହେଲେ ସତ କହୁଚି ରାଧା, ମୁଁ ଗୋଟାଏ ପାହୁଲି ଯୌତୁକ ନ ଆଣି କେବଳ ତୁଳସୀ ପତ୍ର ପାଣି ବିବାହ କରିଥାନ୍ତି ! !

ରାଧା—ତେବେ କ'ଣ ଥଟ୍ଟା ବୁଝୁଚ ମୋ କଥା ?

ମାନସ—ମୁଁ ତମ କଥା ଥଟ୍ଟା ବୁଝୁନି ଯେ ତମେ ଯେମିତି ମୋ ଲେଖାର ଉପହାସ କରୁଚ ।

ରାଧା—କଥାଟାଏ କହିଲେ ଏକା ! ଏଇନେ କ'ଣ ବସି କବିତା ଲେଖୁଚ ?

ମାନସ—ଅବଶ୍ୟ ଲେଖୁଥିଲି—କବିତା । ମାନେ—ପଦ୍ୟ କବିତା । କିନ୍ତୁ ମୋ ଲେଖା ସମ୍ବନ୍ଧରେ ତମଠୁଁ ଏ ସୁସମ୍ବାଦ ଶୁଣି ଆଉ ପଦ୍ୟ କବିତା ନ ଲେଖି ଗଦ୍ୟ କବିତା ଲେଖିବାକୁ ଇଚ୍ଛା ହଉଚି ।

ରାଧା—ପଢ଼ିବିଟି କ'ଣ ଲେଖିଚ । ହ'ଧାଡ଼ି ପଢ଼ିବିଟି—ଶୁଣେ ।

ମାନସ—କ'ଣ ହେଲା ?

ରାଧା – ପଢ଼ମ କ'ଣ ଲେଖିଚ । (ପାନଖିଲେ ଖାଇ) ହୁଁ ପଢ଼ !

ମାନସ—ପାଟିରେ ପାନଖିଲ ପୂରେଇ ଦେଇ କବିତା ଶୁଣିବାକୁ ତମେ ଏଠି ଆସନ ଜମେଇ ବସିଲଣି ରାଧା ?

ରାଧା—( ପାନ ଗ୍ଳେବାଜ୍ଞ ) ତମର ସେ ଛଟା ଅକ୍ଷର ଗୁଡ଼ିକ ମୁଁ ପଢ଼ିପାରେ ନାଇଁ ବୋଲି ସିନା ନଇଲେ ତ ମୁଁ ନିଜେ ନେଇ ପଢ଼ନ୍ତି । ତମକୁ ଏତେ କହନ୍ତି କାଇଁକି ?···ପଢ଼ମ କଣ କଣ ଲେଖିଚ ?

ମାନସ—ଏଣିକି ଗଦ୍ୟ କବିତା ଲେଖିବାକୁ ଏଇନେ କହୁଥିଲ ନା ! ତମର ଏ କବିତା-ଶ୍ରବଣର ମୋହ ଶୁଣି ମୁଁ ଆଉ ପାଦେ ଆଗେଇ ଯାଉଚି ରାଧା ! ଗଦ୍ୟ-କବିତା ଛାଡ଼ି ମୁଁ ଏଣିକି କବି ପରିବାର ଉପରେ ପ୍ରବନ୍ଧ ଲେଖିବି ।

ରାଧା—କେବେ ତ କହେ ନାଇଁ । ଆଜ ଟିକଏ ମନ ବଳିଲା ବୋଲି ତମେ ଏମିତି ବାର ଆଉ ବାରକଥା କହି ମତେ ଭୁଲେଇ ଦଉଛ ।

ମାନସ—ମୋ ନାଁ ମାନସ—ତମ ନାଁ ରାଧା । ଭାବ, ଅର୍ଥ, ଧ୍ୱନି ଉଚ୍ଚାରଣ, ସବୁ ଦିଗରୁ ନାଁ ଦିଟା ଏତେ ବେଖାପ ଏତେ ଅସମାନ ଜଣାଗଲା ଯେ ମଧୁଶଯ୍ୟା ରାତିରେ ତମର ରାଧା ନାମକୁ ବାଦ୍ ଦେଇ ତମ ନାଁ ସୁଷମା ରଖିବାକୁ ତମକୁ ମୁଁ ଅନୁରୋଧ କରିଥିଲି—ତମର ମନେ ଅଛି ସେ କଥା ।

ରାଧା—ହଁ ମ । ଗୃତି ପାଞ୍ଚ ବର୍ଷ ତଳର କଥା – ମନେ ରହିବ ନାହିଁ କାଇଁକି ? ମନେ ଅଛି ।

ମାନସ—କିନ୍ତୁ ତମର ସେଇ ଏକ ଜିଦ୍— ତମର ପ୍ରିୟତମ ଦେବତା ଗୋପୀ-ବଲ୍ଲଭ କୃଷ୍ଣଙ୍କ ପ୍ରେମାନୁରାଗିଣୀ "ରାଧା" ନାମଟିକୁ

ତମେ ତ୍ୟାଗ କରି ପାରିବ ନାହିଁ । ପାରିଲ ବି ନାହିଁ । ସ୍ୱୟଂ ବୃଷଭାନୁ ଜେମା ରାଧାଙ୍କର, ତାଙ୍କର ଏଇ ଦୁଇ ଅକ୍ଷର ବିଶିଷ୍ଟ ସାଧା ସିଧା ନାମଟା ପ୍ରତି ଏତେ ମୋହ ଥିଲା କି ନାହିଁ ସନ୍ଦେହ !!

ରାଧା—ହଁ ମ ହେଲା - ମୁଁ ସବୁ ବୁଝିଚି । ରାଣିନକ୍ଷତ୍ର ହିସାବରେ ତ ମୋ' ନାଁ ରାଧା—ମୁଁ କାହିଁକି ସୁଷମା ହେବି ?

ମାନସ—ନାହିଁ – ନାହିଁ – ମୁଁ ତମକୁ ଆଉ ସୁଷମା ହବାକୁ କହୁ ନାହିଁ ଯେ, ହେଲେ ତମେ ସେ ଦିନର ସେଇ ରାଧାଟି ?

ରାଧା —ଶୁଣେଇବ ନାହିଁ ତେବେ ?

ମାନସ—ଜନଶ୍ରୁତି ଅଛି—ରାଧ ବି ବେଳେ ବେଳେ ଗୀତ ଗାଇବାକୁ ଆଗ୍ରହ ପ୍ରକାଶ କରେ । ଅତଏବ ତମେ ତମ ସ୍ୱଧର୍ମ ତ୍ୟାଗ କରି କବିତା ଶୁଣିବାର ଆଗ୍ରହ ପ୍ରକାଶ କରିବାଟାକୁ ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ଲେଖିଚି ତ ମୋଟେ ଦି' ଧାଡ଼ି—ଶୁଣିବ କ'ଣ ?

ରାଧା—ହଉ ପଛେ ଦି ଧାଡ଼ି ( ପୁଣି ଖଣ୍ଡେ ପାନଖାଇ ) ପଢ଼ ।

ମାନସ —ବାବା ! ଶୁଣିବ ବୋଲି ଏ କାଳରେ ଆଉ ଖଣ୍ଡେ ପାନ !! ହଉ, ଶୁଣ (ପଢ଼ିଲା)

"ଗରିବରୁ ବଳି ଗରିବ ଥିଲି ମୁଁ ସିନା,
ସାତରଜା ଧନେ ଧର୍ମ କରାଇଲି ମନେ ।"

ରାଧା—(ବଡ଼ ପାଟିରେ) ଆଲୋ ହେ ୟାର ମା' ! ଗଲି ଯାଉଚୁକି ? ଏ ପିଣ୍ଡାରେ ହେଇ ଅଇଣ୍ଠା ବାସନ ଦି'ଖଣ୍ଡ ପଡ଼ିଚି—ମାଜି ଦେଇ ଯା !

( ମାନସର କବିତା ପାଠ ଆରମ୍ଭ ସଙ୍ଗେ ସଙ୍ଗେ ରାଧା କଥା କହୁଚି । ଫଳରେ ରାଧା କଥା ଶୁଣି ପାରିନ । ମାନସ ହତବାକ୍ )

ରାଧା—ହୁଁ, କ'ଣ ହେଲା ? ପଢ଼ ।

ମାନସ—ମୁଁ ଗୋଟାଏ ଲୋକ ସହଜରେ ରାଗେ ନାହିଁ ! ଯଦି ରାଗିବ, ତେବେ ମୋ' ପାଟିରୁ ଆଉ କଥା ବାହାରିବ ନାହିଁ ! ଅତଏବ ମୁଁ ତମକୁ ହାତଯୋଡ଼ି କହୁଚି ରାଧା ତମେ ଏଠୁଁ ଚାଲି ଯାଅ ।

ରାଧା—କାହିଁକି ? କବିତା ଶୁଣେଇବ ବୋଲି କହିଲ ପରା—ପଢ଼ ।

ମାନସ – ଏଥର ପଢ଼ିଲା ବେଳକୁ ମୁଣି ଆଉ କୋଉ ମା'କୁ ଡାକିବ ? କି ଆଶ୍ଚର୍ଯ୍ୟ କଥା ! ଠିକ୍ ମୋ' ଆବୃତ୍ତି ବେଳକୁ ତମେ ଘର ମା'କୁ ଡାକି ନଥିଲେ ଚଳି ନ ଥାନ୍ତା !

ରାଧା—ଶୁଣିବଟି ! ପଇସା ନେଇ କାମ କରୁଚି—ମୋ' ଆଖି ଆଗରେ ସେ କାମ ଅଧାକରି ଚାଲି ଯା'ନ୍ତା - ଆଉ ମୁଁ ଚୁପ ହୋଇ ବସିଥା'ନ୍ତି ?

ମାନସ—ସେଇଥିପାଇଁ ମୁଁ କହୁଚି—ଏ ତମର ଧର୍ମ ନୁହେଁ, ତମେ ଯାଅ ।

ରାଧା—ତେବେ ଏମିତି ହାତେ ମାପି ଚାରିଖଣ୍ଡ ଚାଲିଲେ ମୋର ଆଉ ବଳ କ'ଣ କହିଲ ? (ଟିକିଏ ରହି) ହୋଇଚି, ଦେଖ—ମୁଁ ଆଉ ପାଟିତୁଣ୍ଡ ନ କରି ଚୁପ ହୋଇ ବସୁଚି, ତମେ ପଢ଼ ! (ମାନସ ଏଥର ହସି ପକେଇଲା) ମଲା, ଏମିତି ହସୁଚ କାହିଁକି ? ପଢ଼ ।

ମାନସ—(ହସି) ଆଚ୍ଛା, ଶୁଣ—(ପଢ଼ିଲା)

"ଗୋରବରୁ ବଳି ଗରବ ଥିଲା ମୁଁ ସିନା
ସାତ ରାଜା ଧନେ ଧନୀ କରିଇଲ ମତେ ।"

ରାଧା—ଆଉ ଥରେ ପଢ଼ିବଟି—ଆଉଥରେ । କାନକୁ ଭାରି ସୁନ୍ଦର ଶୁଭୁଚି ।

ମାନସ—କାନକୁ ଖୁବ ସୁନ୍ଦର ଶୁଭୁଚ ବୋଲି ଆଜି ଥରେ ଶୁଣିବ !!
ଆଚ୍ଛା, ଶୁଣ (ପଢ଼ିଲା)
"ଗର୍ବିଠୁ ବଳି ଗର୍ବିବ ଥିଲି ମୁଁ ସିନା......

ରାଧା—ହଁ, ବୁଝିଲି । ତେମେ ଖୁବ ଗର୍ବିବ ଥିଲ ।

ମାନସ ମୁଁ ଗର୍ବିବ ଥିଲି ?

ରାଧା—ଓଃ ! ପଢ଼ିବଟି, ଆଉ ଧାଡ଼ିକ କଣ ?

ମାନସ—"ସାତରାଜା ଧନେ ଧନୀ କରାଇଲ ମତେ ।"

ରାଧା—(ମୁଗ୍ଧଗଳାରେ) ହୁଁ ।

ମାନସ—କ'ଣ ହେଲା ? ଲାବଣ୍ୟବତୀ, ସଖୀମାନଙ୍କ ମୁହଁରୁ ତା' ରୂପ ବର୍ଣ୍ଣନା ଶୁଣୁ ଶୁଣୁ ଲଜ୍ଜା ମିଶା ଆନନ୍ଦରେ ଅଧୋବଦନ ହୋଇ ଭୂଇଁରେ ଗାର କାଟିଲା ଭଙ୍ଗୀରେ ତମେ ବସି କାଗଜ ଉପରେ ପେନସିଲ୍‌ଗାର ଟାଣିଲଣି ଯେ, କଥା କ'ଣ ?

ରାଧା—( କୁଣ୍ଠିତ ସ୍ୱରରେ ) ଏ କଥାଟାକୁ ଏମିତି ଖୋଲା ଖୋଲି ଭାବେ ଲେଖି ନ ଥିଲେ କ'ଣ ଚଳି ନ ଥା'ନ୍ତା ?

ମାନସ—ତା'ହେଲେ ରାଧା, ଏ କବିତାର ଭାବ ତମେ ବୁଝି ପାରିଚ ?

ରାଧା—ବେଶୀ ପାଠ ପଢ଼ି ନାହିଁ ବୋଲି ମୁଁ କ'ଣ ଏମିତି ଜାଡ଼ୀ, ହୁଣ୍ଡୀ ହୋଇଚ—ଏଇତକ ବୁଝି ପାରିବ ନାହିଁ ?

ମାନସ—ଏ କବିତାର ନାୟକ, ତା' ନାୟିକାକୁ ଲକ୍ଷ୍ୟ କରି କହୁଚ—ମୁଁ ଥିଲି ଗର୍ବିବଠୁ ବଳି ଅତି ଗର୍ବିବ—ହୀନ—ଅଧମ ।

ରାଧା—ସତକଥା ତ ! ଆମ ବାହାଘର ବେଳକୁ କ'ଣ ଥିଲା ତମର ! ଖାଲି ଯାହା ବି. ଏ. ଖଣ୍ଡିକ ପାଶ୍ କରିଥିଲ ।

ମାନସ—ଏଁ !!

ରାଧା—ବାହାଘର ଅଷ୍ଟମଙ୍ଗଳା ବାସିହାନ ତ ରୁକେଷ୍ଟ କଲ । ସେଇଠୁ ବହି ଲେଖି ବାହାରୁ ଦ'ପଇସା ପାଇଲ—କଟକ ସହରରେ ନଜର ଖଣ୍ଡେ ଘର କିଣିଲ ।

ମାନସ—ରାଧା ! !

ରାଧା—ଏଇ କବିତା ଛପା ହଉ, ଦେଖିବ, ଆମ ଘରେ ସମସ୍ତେ ପଢ଼ି ଭାରି ଖୁସି ହେବେ । ···ଏଇଟେ, ତେଣେ ପୁଅ କାନ୍ଦିଲାଣି ନା କଣ—ମୁଁ ଯାଏଁ ।

[ ରାଧା ଚାଲିଗଲା । ମାନସର କବିତାର ଏଇ ଅର୍ଥ ଯେ ରାଧା ବାହାର କରିବ, ଏକଥା ମାନସର କଳ୍ପନାର ବାହାରେ ।···କିଛି ସମୟ ପରେ ରାଧା ପୁଣି ଆସିଲା]

ରାଧା—ଉଁ ! ! ସେତିକବେଳୁ ବସି ଲେଖୁଚ—ଲେଖା ସରିନାଇଁ ?

ମାନସ—ସରିନାଇଁ କ' ସରିବ ନାଇଁ ?

ରାଧା—କାଇଁକି ? କେତେ ଏମିତି ଲେଖୁଚ କି ? ଦେଖି, ଦେଖି—ମଲା ! ଏଇତ ସେଇ ଦ' ଧାଡ଼ି ! ଆଜି ତ କିଛି ଲେଖା ହେଇନି ?

ମାନସ—ରାଧା ! (ମାନସର କଣ୍ଠରେ ରୁକ୍ଷତା)

ରାଧା- ମୁଁ ଆଜି କଣ କରନ୍ତି କହିଲ ? ପିଲାଟା କାନ୍ଦିଲା ବୋଲି ମୁଁ ସେତେବେଳେ ଉଠିଗଲି ।

ମାନସ—କିନ୍ତୁ ମତେ ଯେ ଏଠି ତମେ କନ୍ଦେଇ ଛାଡ଼ିଗଲ ! ଆଜି ଗୋଟାଏ ଅକ୍ଷର ବି ମୁଁ ଲେଖି ପାରୁନି ।

ରାଧା—ଆଉ ନଲେଖ । ଏଇ ଦ'ଧାଡ଼ି ଯେତେ ସୁନ୍ଦର ହେଇଚିନା —ବାପା ହେରିକା ଆସନ୍ତୁ, ଦେଖିବ - ଭାରି ପସନ୍ଦ କରିବେ ।

ମାନସ—ବାପା ହେରିକା ଆସନ୍ତୁ ମାନେ ? ସେମାନେ ଆସୁଛନ୍ତି ନା କଣ ?

ରାଧା—ହଁ ପରା । ସେତେବେଳେ ଏଇକଥା କହିବାକୁ ଆସିଥିଲି ଯେ, ତମ କବିତା କଥାରୁ ସବୁ ଗୋଳମାଳ ହୋଇଗଲା ।

ମାନସ—ନାଇଁ ନାଇଁତ ! ତମେତ ହଠାତ୍ ଆସି ତମ ଭବନାଥଙ୍କ ମୁହଁରେ ମୋ କବିତାର ପ୍ରଶଂସା କଥା ଆରମ୍ଭ କରିଦେଲ !

ରାଧା—ସେଇକଥା ପରା ! ଧଡ଼ିଆ ହାତରେ ଭବ ତମ ଲେଖା କଥା କହୁଥିଲା—ଆଉ କହି ପଠେଇଥିଲା ଯେ ସେମାନେ ସବୁ ଆମର ଏଠିକି ଆସୁଛନ୍ତି ।

ମାନସ—ହୁଁ । ସେମାନେ ତାହାଲେ ଆସୁଛନ୍ତି ?

ରାଧା—ଆସୁଚନ୍ତି ପରା—ଆଜ ।

ମାନସ—ଆଜ ଆସୁଛନ୍ତି ?

ରାଧା—ହଁ ।

ମାନସ—କଏ କଏ ଆସୁଛନ୍ତି ?

ରାଧା—ବାପା, ଭବ, ଯମୁନା ଏଇମାନେ ତ ! ଆଉ କଏ ?

ମାନସ—କାଇଁକି ଆସୁଛନ୍ତି ?

ରାଧା—ଭବର ବାହାଘର ପରା !

ମାନସ—ଭବର ବାହାଘର ! ଏ କାର୍ତ୍ତିକ ମାସରେ ?

ରାଧା—ଭଉଣୀ ହୋଇ ତମେ ତ କିଛି ବୁଝିଲ ନାହିଁ !

ମାନସ—ମୋ କବିତାକୁ ତୁମେ ଯାହା ବୁଝିଲ, ସେଇ ବୁଝିବା କଥା କହୁଚ ?

ରାଧା—ଆଜ କାର୍ତ୍ତିକ ମାସ ସୋମବାର । କନ୍ୟାପକ୍ଷ ଧବଳେଶ୍ୱର ଦର୍ଶନ ନାଁରେ ଯାଜପୁରରୁ ଆସିଛନ୍ତି । ଏଇ କଟକରେ କନ୍ୟା ଦେଖାହେବ । କନ୍ୟା ପସନ୍ଦହେଲେ ଏଇ ମାର୍ଗଶିର ମାସରେ ବାହାଘର ହବ ।

ମାନସ—ତମ ବାପା ହେଉଛନ୍ତି ଆସି ଏଇଠି ରହିବେ ?

ରାଧା—ଆଜ କୋଉଁଠି ରହିବେ ?

ମାନସ—କେତେ ଦିନ ରହିବେ ?

ରାଧା—ବେଶି ଦିନ ନୁହେଁମ । ଏଇ କାର୍ତ୍ତିକ ପୂର୍ଣ୍ଣିମା ବାଲିଯାତ୍ରା ଯାଏ । ଆମ ଯମୁନାଙ୍କ ବାଲିଯାତ୍ରା ଦେଖିନ ବୋଲି ଗଲ ବର୍ଷଠୁ ମୋ ପାଖକୁ ଚିଠି ଲେଖୁଛ ।

ମାନସ—ତବ ମୁହଁରେ ମୋ କବିତାର ଉଚ୍ଛ୍ୱସିତ ପ୍ରଶଂସାର ମର୍ମ ତାହାଲେ ଏଇଠି ?

ରାଧା—କଣ ତମେ କହୁଚମ ? ମୁଁ କିଛି ବୁଝି ପାରୁନାହିଁ ।

ମାନସ—ତମେ ବୁଝି ପାରିବ ନାହିଁ ମୁଁ ଜାଣେ । ହେଲେ ଆଜଠୁଁ କାର୍ତ୍ତିକ ପୂର୍ଣ୍ଣିମା ପ୍ରାୟ ୧୦ଦିନ ! ତମ ବାପା ହେଉଛନ୍ତି ଏ ଦଶ ଦିନ ଏଇଠି ରହିବେ ?

ରାଧା—ଖର୍ଚ୍ଚକୁ ତମେ ଡରୁଚ ?

ମାନସ—ତମ ଘର ଖର୍ଚ୍ଚର ହିସାବ-କିତାବ ଭଲ ମୁଁ କେବେ ବୁଝେ ?

ରାଧା—ମୁଁ କଣ ସେ କଥା କହୁଚି ?

ମାନସ—ଦଶଦିନ କାଳ ଏଠି ଏ ଧୋ ଧୋ—

ରାଧା—ହେଇଚି, ଏ କାନରେ ଗଣ୍ଠି ପକେଇ କହୁଚି—ସିଏ ଆସିବେ ତାଙ୍କର ବୁଲବୁଲ କରିବେ । ତାଙ୍କ ଜଂଜାଳ ତମକୁ ମୋଟେ ଲାଗିବନାହିଁ । ସିଏ କଣ ଜାଣି ନାହାନ୍ତି ତମର ଏ ଲେଖା ଲେଖି କାରବାର କଥା ।......

ମାନସ—ଏ ଦୀର୍ଘ ପାଞ୍ଚବର୍ଷ ଭିତରେ ମୋ ଲେଖା ପ୍ରତି ତମର ଏ ସମ୍ମାନ ଏଇ ପ୍ରଥମ ଦେଖିଲି ରାଧା । ଆଉ ବୁଝି ପାରିଲି ଏ ସମ୍ମାନର ହେତୁ କଣ ! ଆଚ୍ଛା ତୁମେ ଯାଅ—ମୁଁ ଏଇଠା

ଶେଷ କରେ । ଲେଖା ପାଇଁ ବର୍ତ୍ତମାନ ଦୁଇଟି ଶ୍ଳୋକ ଆସି ପହଞ୍ଚିବ ।

ରାଧା—ଆଜି ଲେଖିବ ?

ମାନସ—କି ଆଶ୍ଚର୍ଯ୍ୟ କଥା !

ରାଧା—ହଁଅ······ଲେଖିବଟି ଆଉ କି ଧାଡ଼ି ଲେଖିବାଅ । ସେ ଦିନ କଏଟି—କହୁଥିଲି ହଁ ରେଖା—ଆମ ଯୋଗୀବାବୁଙ୍କ ଝିଅ ରେଖା—ତା'ପରି ଏମିତି ଲେଖାଲେଖି କରେ । ସେ କହୁଥିଲି —ଆଜି କାଲି କୁଆଡ଼େ ଗୃହଧାଡ଼ିଆ କବିତା ସବୁ ଲେଖା ହେଲାଣି ।

ମାନସ—କବିତାର ଭାବ ବାଖ୍ୟାନ ତ କରିଥିଲ । ବର୍ତ୍ତମାନ କବିତାର ଇତିହାସ ଚର୍ଚ୍ଚା ବନ୍ଦ କରି ଯାଅ । (ରାଧା ଟଙ୍କା ବାହାର କରି ଦେଲା) ଏ କଣ ? ଏ ଟଙ୍କା ଦଉଚ କାହିଁକି ?

ରାଧା—ଟିକିଏ ବଜାରକୁ ଯା ।

ମାନସ—କାହିଁକି ?

ରାଧା - ସେମାନେ ଦିନ ଗାଡ଼ିରେ ଆସି ବାରଟା ଗୋଟାଏ ବେଳକୁ ଏଠି ଆସି ପହଞ୍ଚିବେ, ଆଉ—ଏଇଠି ଖାଇବେ ।

ମାନସ—ଖାନ୍ତୁ । ମୁଁ ବଜାରକୁ ଯିବି କାହିଁକି ?

ରାଧା—ମାଂସ ଆଣିବ ।

ମାନସ - ମୁଁ ଯିବି ମାଂସ ପାଇଁ !! ପୂଝାରୀକୁ କହନ୍ତୁ ।

ରାଧା—ସିଏ କଣ ମାଂସ ଚିହ୍ନି ଆଣି ପାରିବ ? ପୁଣି ବାପା ଆସୁଛନ୍ତି । ବାପା ସେଥର ପ୍ରଶଂସା କରି ତମକୁ କହୁ ନଥିଲେ, ଯେ ତୁମେ ଖାସି ଭଲ ମାଂସ ଚିହ୍ନି କରି ଆଣିପାର ।

ମାନସ—ତମେ ଦେଖୁଚ ଯେ ଜଣେ ଭଦ୍ରଲୋକକୁ ମୁଁ ଜବାବ ଦେଇଚି ଆଜି ଭିତରେ ଲେଖାଟା ପାଇଁ । ଆଉ ତମେ ବାଧ୍ୟ କରୁଚ—

ରାଧା—ବାପା ଆସୁନଥିଲେ, ମୁଁ ତୁମକୁ କହିଥାନ୍ତି ଏକଥା ? ବର୍ଷକ ବାରମାସି ମାଛ ମାଂସ ଟିକିଏ ନହେଲେ ବାପା ଥାଳି ପାଖରେ ବସିବେ ନାହିଁ ।

ମାନସ—ମୁଁ କିନ୍ତୁ ଏ ଲେଖାଟା ଶେଷ ନକରି ଏଠୁ ଉଠିଲେ ହେଲେ ଘୁଞ୍ଚିବି ନାହିଁ ।

ରାଧା—ହଉ, ନଯାଅ । [କାନ୍ଦିଲା]

ମାନସ—ଇଏକଣ ଏଠି ହଉଚି ?

ରାଧା—(କାନ୍ଦି) କିଛି ନାହିଁ । କେତେ ଭାଗ୍ୟର କଥା ଯେ ଜ୍ୱାଇଁ ଘରକୁ ଶ୍ୱଶୁର ଆସୁଚି—ସେଥିରେ ପୁଣି—

ମାନସ—ବୁଝିଲି—ପାଞ୍ଚବର୍ଷ ପୂର୍ବେ ତମ ଆଖିରୁ ଏମିତି ଲୁହ ବୋହି ଥିଲେ ଏଇଠି କାଗଜ କଲମ ଧରି ବସିଥା'ନ୍ତି । କିନ୍ତୁ ବର୍ତ୍ତମାନ ବାଧ୍ୟ ହୋଇ ହାତରେ ଥଳିଧରି ବଜାରକୁ ଯାଉଚି !

( ପ୍ରସ୍ଥାନ )

ରାଧା—(ବଡ଼ପାଟିରେ) ବାପା ଖାସି ମାଂସ ଛଡ଼ା ଆଉ କିଛି ଖାଆନ୍ତିନି—ଦେଖି ଶୁଣି ଭଲ କରି ଆଣିବ ।

—*—

## ଦ୍ୱିତୀୟ ଦୃଶ୍ୟ

(ପୂର୍ବର ସେଇ ଦୃଶ୍ୟ । ଘର ଭିତରୁ କବାଟ ବନ୍ଦକରି ମାନସ ଲେଖି-ବାର ଉପକ୍ରମ କରୁଚି । ବାହାରୁ ଜଞ୍ଜିର ଝଣଝଣ ହବା ସଙ୍ଗେ ସଙ୍ଗେ ରାଧାର ତୀବ୍ରସ୍ୱର ଶୁଣାଗଲା । ସମୟ—ଅପରାହ୍ଣ )

ରାଧା—(ବାହାରୁ) ଭିତରୁ କବାଟଟା କାହିଁକି ଦେଇଚ କି ? ଖୋଲବଟି—ଖୋଲ ।

(ବାଧ୍ୟ ହୋଇ ମାନସ କବାଟ ଖୋଲିଲା—ରାଧା ଭିତରକୁ ଆସିଲା)

ମାନସ—ତମେ ପୁଣି କାହିଁକି ଆସିଲ ?

ରାଧା—ତମେ କବାଟ ବନ୍ଦ କରି କଣ କବିତା ଲେଖୁଥିଲ ?

ମାନସ—ଏଇ ଦେଖ, ସେଇ ହ'ଧାଡ଼ି ! ଗୋଟାଏ ଅକ୍ଷର ବି ଆଉ ଲେଖିନି ।

ରାଧା—ଘରକୁ କୁଣିଆ ମଇତ୍ର ଆସିଚନ୍ତି—ଖିଆପିଆ କରୁ କରୁ ଡେରି ହୋଇଗଲା—କିଏ ଆଉ କଣ କରିବ ?

ମାନସ—ଦିନ ଆସି ଗୃରଟା ବାଜିଲାଣି । ସମସ୍ତେ ଖାଇପିଇ ସୁସ୍ଥ ହେଲେଣି । ଅତଏବ ମୁଁ ଯଦି ଟିକିଏ ନିରୋଳାରେ ବସିବାକୁ ଚାହେଁ—ତମର କ୍ଷତିଟା କଣ ?

ରାଧା—ମୋ କଥା ମୁଁ କହୁ ନାଇଁମ । ବାପା ଆସିଛନ୍ତି-ଭବ ଆସିଚି । ଟିକିଏ ହାକିମଲାଭ ଦୁଃଖ ସୁଖ ହ'ନ୍ତ ନାହିଁ ?

ମାନସ—କନ୍ୟା ଦେଖାଦେଇ ବାହାଘରତ ଠିକ ହୋଇଗଲା । ସେମାନେ ଏଠି ଆଠ ଦଶଦିନ ରହୁଛନ୍ତି । ଦୁଃଖ ସୁଖ ହବାକୁ କଣ ଆଉ ବେଳନାହିଁ ?

ରାଧା—ଯମୁନା କାଲିକା ଛୁଆ ହେଲେ କଣ ହେଲା—ଗୋଟାଏ ପୁରୁଖା ଲୋକଙ୍କ ପରି ଏମିତି କଥା କହିଲା ଯେ—ମତେ ବାଧିଲା !

ମାନସ—ତମ ଭ'ଣୀ ସେ—ତା'କଥା ପୁଣି ତ ତମକୁ ବାଧିଲା ?

ରାଧା—ମୁଁ ଏବେ ତାକୁ ଦୋଷ ଦେବା କାହିଁକି ? ସିଏତ ହକ୍ କଥା କହୁଚି ।

ମାନସ - କଣ ହକ କଥା ?

ରାଧା—କହୁଲା—କବଗୁଡ଼ାକ ପାଗଳ ।

ମାନସ—ଆଉ ହ'ଗୃହରଦାନ ଏ ବ୍ୟବସ୍ଥା ଚାଲିଲେ, ଯମୁନା କ'ଣ କହୁଚି—ପାଗଳା ଗାରଦର ଡାକ୍ତର ବି କହୁବ—ମୁଁ ପାଗଳ !

ରାଧା—ତମେ ଏମିତି ରାଗୁଚ କାହିଁକି କହିଲ ?

ମାନସ—ମୁଁ ପରା ଥରେ କହୁଚି—ମୁଁ ରାଗି ପାରେ ନାହିଁ । ଆଉ ରାଗିଲି କୋଉଠି । ତମେ ଯାଅ ।

ରାଧା—ହଉ ଯାଉଚି । (ଫେରି) ହଁ, ସୁକକୁ ଚହ୍ନିଲଚ ?

ମାନସ—ଦେଖିଲି—ବେଶ ଉଜ୍ଜଳ ଡାଉଲ ଝିଅଟିଏ ହୋଇଚି । ଜାଣିଲି ସେ ତମ ପିସିଝିଅ ଭ'ଣୀ । ଆଉପୁଣି କଣ ଚହ୍ନିବ ?

ରାଧା—ତେମେ ତା' ହେଲେ ଜାଣିନ ।

ମାନସ—କ'ଣ ?

ରାଧା—ଲକକୁଳୀଟାଏ ପରା—ତମ ପାଖ ମାଡ଼ୁନ କି ତମକୁ କଣ୍ଠ କହୁନ ।

ମାନସ—ପଚାରୁଚ ପରା—କଣ ?

ରାଧା—ସେ କୁଆଡ଼େ କବିତା ଲେଖେ ।

ମାନସ—ହୁଁ ।

ରାଧା—ଆମ ଭଳି ଆଉ ଏମିତି ଅଧା ପାଠୋଇ ନୁହେଁ । ମେଟ୍ରିକ୍ ପଢ଼ୁଚି—ଗୀତ ଶିଖୁଚି—ଆଉ ଲେଖା ଲେଖିବା କରୁଚି ।

ମାନସ—ଏ ପର୍ଯ୍ୟନ୍ତ ଆମ ପରିବାରଟି ଖୁବ୍ ଶ୍ରେଷ୍ଠ ଥିଲା । ଆଜ ତୁମ ପିତୃକୁଳଙ୍କ ଦୟାରୁ ହଠାତ୍ ପରିବାରଟି ଟିକିଏ ବଢ଼ି

ଯାଇଛି । କିନ୍ତୁ ସେଇ ସଙ୍ଗେ ସଙ୍ଗେ ପ୍ରାୟ ସମସ୍ତଙ୍କଠି ଏ କବିତା ରୋଗ ଦେଖା ଦେଲାଣି କାହିଁକି, ମୁଁ ବୁଝି ପାରୁନି ।

ରାଧା — ସୁକୁ ଗୋଟାଏ କଣ କବିତା ଲେଖି ଆଣିଛି । ତାଙ୍କ ଇସ୍କୁଲର ୪ର୍ଥ ଅମାନଙ୍କର ଭିତରେ ଗୋଟେ କବିତା—ସଭା ହବ । ଯାହାର ଫାଷ୍ଟ ହବ – ସିଏ ପୁରସ୍କାର ପାଇବ । ତା' କବିତାଟା ସେ ତମକୁ ଦେଖେଇବାକୁ ଆଣିଛି । ତମେ କଣ ଟିକିଏ ଠିକ୍ ଠାକ୍ କରି ଦବ । ମୂଳକଥା – ସେ ଖାସ୍ ଏଇଥିପାଇଁ କଟକ ଆସିଛି । ଡାକି ଆଣିବି ତାକୁ ?

ମାନସ — ରାଧା !!

ରାଧା — ହଉ ହଉ । ଏବେ ନହେଲା – ସଞ୍ଜ ବେଳକୁ ତମେ ତା' କବିତା ପଢ଼ିବ ।

ମାନସ — ସୁକୁ ମୋର ସମଧର୍ମୀ । ତା ପ୍ରତି ମୋର ଯଥେଷ୍ଟ ସମ୍ମାନ ରହିବାର କଥା । କିନ୍ତୁ ବର୍ତ୍ତମାନ ତା କବିତା ପାଠ କରିବାର ସୌଭାଗ୍ୟ ମୋର ନାହିଁ । ଆଗେ ଏଇଟା ମୋତେ ଶେଷ କରିବାକୁ ଦିଅ ।

ରାଧା — ହଉ ମୁଁ ଯାଉଛି । ଏଇ ବାପା ଏଣିକି ଆସିଲେଣି ।

( ମାନସର ଶଶୁର କୁଞ୍ଜବିହାରୀ ଆସିଲେ )

କୁଞ୍ଜ — ମା, ରାଧା ! ମୋ ପାନ ବଟାଟା-

ରାଧା — ପଠେଇ ଦଉଛି । ( ଗ୍ଲଲଗଲା )

କୁଞ୍ଜ — କ'ଣ ତମର ଲେଖା-ଲେଖି ଗ୍ଲଲିଛି ?

ମାନସ — ବସନ୍ତୁ ।

କୁଞ୍ଜ — ହଁ ବସୁଛି । ( ବସିଲେ ) ବୁଝିଲ ବାବା — ବାହାଘରଟା ଠିକ୍ ହେଇଗଲା । ଏଣିକି ସବୁ ତମମାନଙ୍କ କାମ । ଦିନତ ନିକଟ ହେଇ ଆଇଲା । ମାର୍ଗଶିର ପନ୍ଦରଦିନ — ଆଉ କାହା ଘରେ ?

ରାଧାକୁ ମୁଁ କାର୍ତ୍ତିକ ପୂର୍ଣ୍ଣିମା ପରେ ପରେ ପରେ ଆମ ଘରକୁ ନେଇଯିବ । କ’ଣ କହୁଚ ?

ମାନସ – ଏତେ ଆଗରୁ ?

କୁଞ୍ଜ – ଆଗରୁ ଆଉ କଣ ? ଦିନ ଆଉ ମଝିରେ କେଇଟାକ ? ମୁଁ ତ ଭାବୁଚି ତମେ ବି ଛୁଟି ପାଇଁ ଦରଖାସ୍ତ କରିଦିଅ । ଦିହେଁଯାକ ଏକ ସାଥିରେ ଯିବ । କଣ କହୁଚ ।

ମାନସ – ଦେଖିବି – ଚେଷ୍ଟା କରିବି ।

କୁଞ୍ଜ – ନା ନା, – ଚେଷ୍ଟାକଥା ନୁହେଁ । ତମେ ବି ସେତିକିବେଳେ ଚାଲ—ସୁବିଧା ହେବ । ଯେତେ ପୁଅଝିଅ ଚାକର ରହିଲେ ବି ନିଜର କୁଟୁମ୍ବ – ପରିବାର ନ ରହିଲେ ଅଡ଼ୁଆ । କ’ଣ କହୁଚ ?··· ଭାବୁଚ ଆଉ କ’ଣ ?

ମାନସ – ଏଁ ! ନା-ହଁ, ମୁଁ ଛୁଟି ଦରଖାସ୍ତ କରିବି । (ଯମୁନା ଆସିଲା)

ଯମୁନା – ଏଇ ନିଅ ବାପା ତମ ପାନଡ଼ିବା । ଜାଣିଚ ବପା—ମାନସ ଭାଇ ଘର ଭିତରେ କବାଟ କିଳି ବସି ଲେଖୁଥିଲେ ।

କୁଞ୍ଜ – ନିଶ୍ଚୟ-ନିଶ୍ଚୟ । ଲେଖା ଲେଖି କଥା – କ’ଣ ଏତେ ସହଜ ହେଇଚି ! ଗୋଳମାଳ ହେଲେ ମଥାରେ ଆଉ ଧରିବ କଣ ଯେ ଲେଖିବେ ? ଆଚ୍ଛା ଆଚ୍ଛା – ବାପା, କ’ଣ ତମେ ତମର ଲେଖୁଚ ଲେଖ – ମୁଁ ଯାଏ । ଆ’ଲୋ ଯାମୀ ! ହଁ, ମାନସ ! ମୁଁ ଭାବୁଥିଲି – କାଇଁକିରୁ ବାହାଘର ପାଇଁ କେତେ ସଉଦାପତ୍ର ମୋର ନବାର କଥା । ସେ ତାଲିକାଟା – ଏଇଟି ତମେ ଥାଇଁ କରି ଦେଲେ ଭଲ ହ’ନ୍ତା । ଜାଣିଚତ ପୁଅ ନମିତା ବୋଇଲେ ମୋର ଏଇ ଗୋଟିଏ । ସେଇଥି ପାଇଁ ଭବକୁ ଏତେ ଚଞ୍ଚଳ ବାହା କରେଇ ଦଉଚି ।

ମାନସ ତାକୁ ଆଉ ପଢ଼େଇଲେ ନାହିଁ କାଇଁକି ?

କୁଞ୍ଜ—ସିଏତ ପଢ଼ିଲ ନାହିଁ—ମୁଁ ଆଉ ପଢ଼େଇଥାନ୍ତି କ'ଣ ? ହେଲେ ପଢ଼ିକରି ଅଧିକାଟା କ'ଣ କରିଥାନ୍ତା ? ତା'ର ଏଇନେ ବ୍ୟବସାୟରେ ଯୋଉ ରୋଜଗାର ନା ! ଉପେନାଥବାବୁ —ତବର ସିଏ ଶଶୁର ହେବେ—ତେପୃତି ଜ୍ୱାଇଁ କରିବାକୁ ଖୋଜି ବୁଲୁଥିଲେ । ମୋ' ହାତ ଓଠ ଧରି ମୋ ଘରେ ବନ୍ଧୁ କଲେ କାହିଁକି ? ତବର ଏଇ ରୋଜଗାର ଦେଖି ! ସେଇଥିପାଇଁ ଟିକିଏ ଜାକ-ଜମକରେ ବାହାଘରଟା ନ କଲେ .....ହଁ ତାଲିକାଟା କଥା କ'ଣ କହୁଚ ?

ମାନସ—ଏଇନେ ?

କୁଞ୍ଜ – ନା ନା, ଏଇନେ ନୁହେଁ—ସଞ୍ଜବେଳକୁ ! ଏଇନେ କ'ଣ ତମର ଲେଖା ଲେଖି ଚୂଲିଚ । କି ଅନ୍ୟାୟ କଥା ! ତମ ଲେଖା ବଡ଼ ନା ଆମ ତାଲିକା ବଡ଼ ! ଆ'ଲୋ ସାମୀ ଆ' । ଆରେ ଦେଖୁଚ, ଯୋଉ କଥାଟା ପାଇଁ ତମ ପାଖକୁ ଆସିଲି ସେଇଟା କହିବାକୁ ଭୁଲି ଯାଇଚି ।

ମାନସ – କ'ଣ ଆଜ୍ଞା ?

କୁଞ୍ଜ – ଆମଗାଁ ପାଖ ବଜପୁର । ସେଠି ମଙ୍ଗଳା ଠାକୁରାଣୀ ଅଛନ୍ତି । ଘୋର ପ୍ରତ୍ୟକ୍ଷ ଦେବତା । ଏଥର ଗଲେ ମୁଁ ତମକୁ ନେଇ ତାଙ୍କ ଦର୍ଶନ କରେଇ ଆଣିବି । ମୁଁ ଏବେ ତାଙ୍କ ଭକ୍ତ ହେଇ ପଡ଼ିଚ—ହେଲେ ମା'ଙ୍କ ନାଁ ନବାପାଇଁ ସ୍ତୁତିଟିଏ ପାଉନାହିଁ ।

ମାନସ – ସ୍ତୁତି ?

କୁଞ୍ଜ—ହଁ ସ୍ତୁତି, ମାନେ ଏଇ.....ଦେବଦେବୀଙ୍କ ସ୍ତୁତି ।

ମାନସ – ମଙ୍ଗଳା ସ୍ତୁତି ବହୁ ମିଳୁଚ ବୋଧହୁଏ ?

କୁଞ୍ଜ – ମିଳୁଚି । ହେଲେ ସେ କାକଟପୁର ମଙ୍ଗଳାଙ୍କ ସ୍ତୁତି । ବଜପୁର ମଙ୍ଗଳାଙ୍କ ସ୍ତୁତି କେଉଁଠି ପାଇଲି ନାହିଁ ।

ମାନସ — ମତେ କ'ଣ କହୁଚନ୍ତି ?

କୁଞ୍ଜ — ତମେ ଏତେ ଲେଖା ଲେଖି କରୁଚ—ମୋ ପାଇଁ ଗୁଡ଼ିଏ ଲେଖି ଦଅନ୍ତ ନାଇଁ ?

ମାନସ — ମୁଁ କ'ଣ ସେ ସବୁ ଲେଖା, ଲେଖି ପାରିବି ?

କୁଞ୍ଜ — ପାରିବ ନାହିଁ କାହିଁକି ? କ'ଣ ଅଛି ଏଥିରେ ? ମୁଁ ପରା ଏଇନେ ବସି ପଦଟିଏ ମନେ ମନେ ଭାବୁଥିଲି···ଶୁଣିବ ?···ଭାବୁଚ ବସି କ'ଣ ? ଶୁଣିବ ?

ମାନସ — ଏଁ ? ନା······ହଁ — କହନ୍ତୁ ।

କୁଞ୍ଜ — ଏଇପଦ ମୁଁ ଯୋଡ଼ିଚି—

"ଜୟନ୍ତୁ ମଙ୍ଗଳା" ମାଗୋ ମଙ୍ଗଳ ଦାୟିନୀ
କାକଟପୁର ବାସିନୀ ମା···ସିଂହ ବାହିନୀ"

ହେଲେବାବୁ, ଏ ପଛ ଧାଡ଼ିଟା କେମିତି ଅଡୁଆ ଅଡୁଆ ଲାଗୁଚି ! ଗୋଟାଏ ଅକ୍ଷର ଯେମିତି ଊଣା ପଡ଼ି ଯାଉଚି, ନୁହେଁ ?

ମାନସ — ହଁ । ଊଣା ପଡ଼ି ଯାଇଚି ।

କୁଞ୍ଜ — ସେଇଆ ପରା । ମୁଁ ତ ଆଉ କବି ନୁହେଁ । ମନକୁ ଯାହା ଆସିଲା ଫାନ୍ଦି ଦେଇଚି । ଆଚ୍ଛା ଆଉ ଗୋଟାଏ ଅକ୍ଷର ସେଠି ଖଞ୍ଜି ଦେଲ ଦେଖି ।

ମାନସ — ସିଂହ ବାହିନୀ କଥାଟା ରହିବ ?

କୁଞ୍ଜ — ନିଶ୍ଚୟ ନା ! ତାଙ୍କର ପରା ସିଂହ ବାହାନ ।

ମାନସ — ତା'ହେଲେ ଶାର୍ଦ୍ଦୁଳ ବାହିନୀ କରି ଦଅନ୍ତୁ ।

କୁଞ୍ଜ — ଶାର୍ଦ୍ଦୁଳ ?

ମାନସ — ହଁ । ଶାର୍ଦ୍ଦୁଳ ମାନେ ସିଂହ ।

କୁଞ୍ଜ — ଠେବେଚ ହେଇଗଲା । ( ପାଠକଲେ )

"ଜୟନ୍ତୁ ମଙ୍ଗଳା ମାଗୋ ମଙ୍ଗଳ ଦାୟିନୀ
କାକଟପୁର ବାସିନୀମା ଶାର୍ଦ୍ଦୁଳ ବାହିନୀ ।"

ବାଃ ! ବେଶ୍ ହେଇଚ ।ବୁଝିଲବାବା ! ଏମିତ—ଠିକ୍ ଏମିତ ମା'ଙ୍କ ଗୁଣ ବର୍ଣ୍ଣନାକରି ମତେ ଦଶ କୋଡ଼ିଏ ପଦ ଲେଖିଦିଅ ! ତମେ ଲେଖା ଲେଖି କରବୋଲି ମତେ ପିଲାଏ କହନ୍ତି । ମୁଁ କହେ – ହଁ କ'ଣ ଏଇ ଆଧୁନିକ ପ୍ରସଙ୍ଗର ସବୁ ଲେଖୁଥିବେ । ହେଲେବାବୁ, ଏ ଯୋଉ ଲେଖା ଯୁଁା'ଙ୍କୁ ଲେଖିଲେ ନାଁ ପଡ଼ିବା ସାଙ୍ଗେ ସାଙ୍ଗେ ପୁଣ୍ୟ ହବ । ହଁ ତମ ନାଁରେ ଭଣିତା କରିବ—ସେଇଟା ଗୋଟାଏ ନିୟମ । କ'ଣ କହୁଚ ?

ମାନସ – ଆଚ୍ଛା, ଚେଷ୍ଟା କରି ଦେଖିବ ।

କୁଞ୍ଜ – ଚେଷ୍ଟା କରିବ ଯେ କେବେ ? ବୁଝିଲ ବାବା ! ଆଜ ଏଇଠି ଯଦି ପଦ କେଇଟା ଗାରେଇ ଦିଅନ୍ତ ନା – କାଲି ମଙ୍ଗଳବାର ସକାଳୁ ଗାଧୋଇ ମଙ୍ଗଳାସ୍ତୁତି ଆରମ୍ଭ କରି ଦିଅନ୍ତି ।

ମାନସ – କିନ୍ତୁ—

କୁଞ୍ଜ – ତମେତ କାଗଜ କଲମଧରି ଲେଖିବାକୁ ବଇଚ, ମନକଲେ ସାଙ୍ଗେ ସାଙ୍ଗେ ଏଇଠି ଗାରେଇ ଦିଅନ୍ତ । କହିଲପରି ଏ କାମରେ ପୂଣ୍ୟ ଅଛି । ଆଜି ଘଣ୍ଟ ଭିତରେ ହେଲେ ଚଳିବ – କ'ଣ କହୁଚ ?

ମାନସ – ଆଚ୍ଛା ।

କୁଞ୍ଜ – ବେଶ୍ ବେଶ ତମେ ତମର ଲେଖ — ମୁଁ ଯାଉଛି । (ପ୍ରସ୍ଥାନ)

ଯମୁନା – ମାନସ ଭାଇ !

ମାନସ – ତୋର ପୁଣି କ'ଣ ?

ଯମୁନା – ବାହାଘର ଗୀତ । ଏମିତ ହାଁ । କରି ଶୁଣୁଁଚ କ'ଣ ମ ? ଭାଇଙ୍କ ବାହାଘର ଗୀତ ଲେଖାହେବ ନାଇଁ ?

ମାନସ – ହଁ ଲେଖା ହବ ନାଇ କାହିଁକି ? ଭାଇ ଯେତେବେଳେ ବାହା ହଉଚନ୍ତି - ବାହାଘର ଗୀତ ଲେଖା ନହବ କାହିଁକି ? ନିଶ୍ଚୟ ହେବ ।

ଯମୁନା — ହଁ । ଗୋଟାଏ ନୁହେଁ କି ଦୁଇଟା ନୁହେଁ—ସାତଟା ଗୀତ ଲେଖାହେବ ।

ମାନସ — କିଏ ମନା କରୁଚି ବାବା ସାତ ହଜାର ଗୀତ ଲେଖିବାକୁ ! ତୁ ଏଠୁ ଗଲୁ ।

ଯମୁନା — ଯିବି କୁଆଡ଼େ ? ତମର ପାଖକୁ ପତ୍ର ଆସିଚି ।

ମାନସ — କାହାଁକି ?

ଯମୁନା — ତମେ ଗୀତ ଲେଖିଦବ ।

ମାନସ — ମୁଁ ଗୀତ ଲେଖିଦେବି ?

ଯମୁନା — ଆଉ କ'ଣ ଭୂତ ଲେଖିବ ? ଭଉଣୋଇ ଆମର କବି — ଆମେ ପୁଣି ବାହାଘର ଗୀତ ଲେଖେଇବାକୁ ଆଉ କୋଉଠିକି ଯିବୁ ? ସାତଟାଯାକ ଗୀତ ତମେ ଲେଖିବ । ଆଉ ଶାମ ଭାଇ କବିଚନ୍ଦ୍ର — ଆମ ସାଇ ଶାମ ଭାଇ ମ ! ସିଏ କବିଚନ୍ଦ୍ର — ଗୀତ ଲେଖାହେଇ ଯେମିତି ଛାପାଖାନାକୁ ଯାଇଥିବ — ବୁଝିଲ ?

ମାନସ— (ବିରକ୍ତ ହୋଇ) ବୁଝି ପାରିଲି ନାହିଁ ।

ଯମୁନା—ତେବେ ଶୁଣ ମୁଁ ବୁଝେଇ ଦଉଚି । ଗୋଟାଏ ଗୀତ ମୋ ନାଁରେ ଲେଖାହେବ । ଗୋଟାଏ ତମ ନାଁରେ ଆଉ ଅପା ନାଁରେ—ଥଟ୍ଟାକଉଥା କରି ଲେଖିବ । ଆଉ ଗୋଟାଏ ବାପାଙ୍କ ନାଁରେ— ଆଶୀର୍ବାଦ । ବୋଉ ଭାଇଙ୍କ ବାହାଘର ଦେଖିପାରିଲା ନାହିଁ ବୋଲି ସେଥିରେ ଚିହ୍ନିବ । ଆଉ ଗୋଟାଏ ଦାଦା ଖୁଡ଼ୀଙ୍କ ନାରେ—ବାପାଙ୍କ ଗୀତଠୁଁ ନିରସ ହେଲେ ଚଳିବ । ଗୋଟାଏ ଶାମ ଭାଇଙ୍କ ନାଁରେ । ସୁକି ଅପା ଗୀତଟା ସେ ଲେଖିବ — ତମେ ତାକୁ ବାଗେଇ ଦବ । ଆଉ ଗୋଟାଏ ଗୀତ ସାଇଭାଇରେ ଭାଇଙ୍କ ପାଞ୍ଚ ଭାଉଜ—ତାଙ୍କର ନାଁରେ । ସେ ଗୀତଟା ହୁଳହୁଳିରୁ ଆରମ୍ଭ ହବ । ଶାମ ଭାଇ ଗୋଟି ଗୋଟି କରି ଏସବୁ

କଥା ମତେ ବୁଝେଇ ତମ ପାଖକୁ କହି ଦେଉଇଚନ୍ତି । ସାତଟା ଯାକ ଗୀତ—କ'ଣ ତାକୁ କହନ୍ତି—ହଁ, ସାତଟା ଅଲଗା ଅଲଗା ରାଗରେ ହବ—ରାମକେଲୀ, କାମୋଦୀ, ବଙ୍ଗଲାଶ୍ରୀ, ତୋଡ଼ୀ—ଆଉ କ'ଣ ତେମେ ଜାଣ । କାଲିଠୁ ସାତ ଦିନରେ ସାତଟା ଗୀତ ତମଠୁ ନେବ । ଦେଖିବ ତେମେ କେମିତି କବି ହେଇଚ !

ରାଧା—(ଦୂରରୁ) ଯାମୀ—

ଯମୁନା—ଯାଉଚ ।

( ଯମୁନା ଚାଲିଗଲା । ମାନସ ପ୍ରସ୍ତର ମୂର୍ତ୍ତି ଭଳି ବସିଥାଏ । ବାହାରୁ ଡାକ ଡାକ ଭବନାଥ ଆସିଲା )

ଭବ—ମାନସ ଭାଇ—ମାନସ ଭାଇ । ଏତେବେଳଟାରେ ଏଠି ବସି କ'ଣ କରୁଚ ? ଓ, ଲେଖୁଚ ? ହଉ ଲେଖ—ଲେଖ । ସତେମ ମାନସ ଭାଇ, ତମେ କୁଆଡ଼େ ଆଜିକାଲି ଭାରି ଚମତ୍କାର ଲେଖୁଚ । ଆମର ତେଣେ ସମସ୍ତେ କହୁଚନ୍ତି ।

ମାନସ—ତୁ କ'ଣ କହୁଚୁ ?

ଭବ—ମୁଁ (ହସି ହସି) ମୁଁ ଆଉ କ'ଣ କହିବ ? ସମସ୍ତେ ଯେତେବେଳେ ଭଲ କହୁଚନ୍ତି—ମୁଁ କ'ଣ ଖରାପ କହିବ ? କଥା କ'ଣକି, ମୁଁ ଆଗେ ଏଇ ଗପ, କବିତା, ନାଟକ ବହୁତ ପଢ଼ୁଥିଲି । ଏବେ ଏଇ ବଡ଼ କାରଖାନା ଖୋଲିଲା ଦିନଠୁଁ—ଆଉ ବେଳ ମୋଟେ ମିଳୁ ନାହିଁ ।

ମାନସ—ତୁ ଆଜି ସିନେମା ଯିବୁ ବୋଲି କହୁଥିଲୁ ପରା ?

ଭବ—ସିନେମା ଯିବ ତ ? ସିନେମା ତ ସାଢ଼େ ଛ'ଟାରେ । ଏଇନେ ଆସ—ବାଙ୍କାବଜାର ଯିବା ।

ମାନସ—କାହିଁକି ?

ଭବ—ଗୋଟାଏ ଭାରି ବଢ଼ିଆ କୁସ୍ତି-ଲଢ଼େଇ ଆଜି ସେଠି ହଉଚି । ଆମ ପୁରୀର ପହଲଓ୍ୱାନ୍ ପଣ୍ଡା ସାଙ୍ଗରେ ଜଣେ ପଞ୍ଜାବୀ ପହଲଓ୍ୱାନ୍ ଲଢ଼ିବ—ଆସ ଯିବା ।

ମାନସ—ଭବ !

ଭବ—ଭାଇ !

ମାନସ—କେହି ତ ମୋ' ଦୁଃଖ ବୁଝିଲ ନାହିଁ । ଶେଷକୁ ତୁ ବ କଣ ···ଏଇ ଦେଖ । ଆଜ ସକାଳୁ ଏଇ ଦ'ଧାଡ଼ିରୁ ଆଉ ଗୋଟାଏ ଅକ୍ଷର ବ ବେଶି ଲେଖି ପାରିନ ।

ଭବ—ଆଇ ଆମ୍ ଭେଟ ସର ମାନସ ଭାଇ ! ଆଉ ମୁଁ ଗୋଳ-ମାଳ କରୁଚ—ଯାଉଚ । ତମକୁ ଡାକୁଥିଲ କାହିଁକି କ, ତମ ସାଙ୍ଗରେ ବସି ବସି ଗପିବାକୁ ଭାରି ଭଲ ଲାଗେ ।

ମାନସ—ଏଣିକି ମୋ ଗପ ତ ଭଲ ଲାଗିବ ନାଇଁ । ଗପ ଶୁଣେଇବା ପାଇଁ ଆଉ ଜଣେ ଆସୁଚ, ବୁଝିଲୁ ?

ଭବ—(ଲଜେଇ ଯାଇ) ଧ୍ୟାତ୍ ! ମ ନସଭାଇ, ତମେ ଭାରି ଦୁଷ୍ଟ । (ଟିକଏ ନମ୍ର ସ୍ୱରରେ) ଆଜ ଯେମିତି ବାହାଘର କଥା ପକ୍କା ହେଇଗଲା—ମୁଁ ଆଉ ବାପାଙ୍କ ମୁହଁକୁ ଚାହିଁ ପାରୁନ- ଭାରି ଲାଜ ମାଡ଼ୁଚ !

ମାନସ—କୁସ୍ତି ବୋଧହୁଏ ଆରମ୍ଭ ହେଇଯିବଣି ଭବ ।

ଭବ—ତମେ ତ ଗଲ ନାଇଁ—ଆଉ କୁସ୍ତି ଯିବାକୁ ମନ ନାଇଁ । ଯାଉଚ ବଡ଼ପଣ୍ଡା ଗୋଦାମ ଆଡ଼ୁ ଟିକଏ ବୁଲି ଆସେ । ଆରେ, ଆଜ ଗୋଦାମକୁ ଯିବ କ'ଣ ? ଅସଲ କଥାଟାତ ତମକୁ ଏ ଯାଏଁ କହିନ ।

ମାନସ—କ'ଣ ?

ଭବ—ଆମର ସେଠି ସାତଦିନଆ ରାସଯାତ୍ରା—କାଲି ପଅରଦିନଠୁ ଆରମ୍ଭ ହେଇଯିବ ।

ମାନସ—ମତେ କ'ଣ କହୁଚୁ ?

ଭବ—ଭାରି ଜବର ଯାତ୍ରା- ବହୁତ ଲୋକ ଆସନ୍ତି—ବହୁତ କାରବାର ହୁଏ·····

ମାନସ—ବୁଝିଲି—

ଭବ—ମୋର ଏଇ 'ଭବନାଥ' ମାର୍କା ବଡ଼ ପ୍ରଚାରର ପାଇଁ ଗୋଟାଏ ଦ'ଟା ଗୀତ···

ମାନସ—ଗୀତ ! ମୁଁ ଲେଖିବି ?

ଭବ—ହଁ ମ ! ପଣ-ଗୋଦାମବାଲା ମତେ କହିଛି, କଟକରୁ ଦ' ଚାରିଜଣ ଗାଇଲାବାଲା ଠିକ୍ କରିଦେବ । ସେମାନେ ବାଘୁଆ ପୋଷାକ ପିନ୍ଧି ସେଇ ଗୀତ ଆମ ଯାତ୍ରାରେ ବୋଲାଇବେ······

ଏଇ ଏମିତିକା ଢାଞ୍ଚାରେ (ସ୍ୱରଧରି)

"ଖାଇଥାରେ ଭାଇ, ପିଇଥାରେ ଭାଇ ଭବନାଥ
ବଡ଼ ଟାଣିଆ—
ଟାଣିଥିଲେ ହେବେ ବାବା ଭୋଳାନାଥ,
ଏ ବଡ଼ିରୁ ଗୋଟେ ଜାଣିଥା"

ମାନସ –(ଏକାନ୍ତ ଅସହାୟ ହୋଇ) ଭବ ! !

ଭବ—ମୁଁ ଜାଣେ ମାନସ ଭାଇ, ତମକୁ ବେଳ ନାହିଁ । ହେଲେ ତମେ ଥାଉ ଥାଉ ମୁଁ ଆଉ କାହାପାଖକୁ ଯିବି, କହିଲ ? ଏଇଟା ତମକୁ ସୁନ୍ଦର ଦିଶିବ, ନା ମତେ ସୁନ୍ଦର ଦିଶିବ ? ହେଇତ—ମତେ ଆଉ ବେଳନାହିଁ । ଆଜି ଭିତରେ ଗୀତଟା ଲେଖିଦେଲେ ମୁଁ କାଲି ନେଇ ସେମାନଙ୍କୁ ଧରେଇ ଦେବି । ପଅରଦିନ ସେମାନେ ଯାଜପୁର ରମାନା ହେଇଯିବେ ! ବାସ୍ ! କାମ ଖତମ ! ହଉ, ତମେ ଲେଖୁଥା ମାନସ ଭାଇ, ମୁଁ ଆଉ ତମ ସମୟ ନଷ୍ଟ କରୁନି—ଯାଉଛି । (ପ୍ରସ୍ଥାନ)

ମାନସ—ହୁଁ, ଜନଶ୍ରୁତି ଅଛି—ମହାକବି ବାଲ୍ମୀକି ଆଶ୍ରମବାସୀ ଋଷି ଥିଲେ । କବି କାଳିଦାସ ଘର ଛାଡ଼ି ପରବାସ କରି ନଥିଲେ କବି ହୋଇଥା'ନ୍ତେ କି'ନା ସନ୍ଦେହ । ବର୍ଣ୍ଣାଡ଼ ଶ' ଥିଲେ

ଅବବାବ୍ବତ—ରବୀନ୍ଦ୍ରନାଥ ନିକାଞ୍ଚନ ବାସ ପାଇଁ ଶାନ୍ତି-ନିକେତନ ଭିତରେ ଶ୍ରୀ ନିକେତନ ତୋଳାଇ ଥିଲେ । ଆଉ ଯୋଉମାନେ ଏମିତି ଘର ସଂସାର ପରିବାରର ଜଞ୍ଜାଳରେ ଛଟପଟ ହଉଚନ୍ତି, ସେମାନେ କ'ଣ ମୋର ପରି ନିର୍ବୋଧ !!

ମୀରା – (ବାହାରୁ) ମାନସବାବୁ ଘରେ ଅଛନ୍ତି ?

ମାନସ—କିଏ ?

ମୀରା—ମୁଁ 'ସଂସ୍କାର' ପତ୍ରିକା ଅଫିସରୁ ଆସିଚି ।

ମାନସ—କିଏ, ମୀରା ? ଭିତରକୁ ଆସ । (ମୀରା ଆସିଲା)

ମୀରା – ନମସ୍କାର ଆଜ୍ଞା ।

ମାନସ – ନମସ୍କାର ! ସଂପାଦକ ପଠେଇଛନ୍ତି ?

ମୀରା—ଆଜ୍ଞା ! କ'ଣ ଲେଖା ଦେବେ ପରା ?

ମାନସ—ଲେଖା···

ରାଧା – (ଅନ୍ତରାଳରୁ ବଡ଼ପାଟିରେ) ଆଲୋ ସାମୀ, ତାଙ୍କୁ ପଚାରିବୁଟି—ଜଳଖିଆ ଖାଇବେ କି ନାଇଁ ?

ମାନସ—(ବଡ଼ପାଟିରେ) ନା-ନା-ମୁଁ ବର୍ତ୍ତମାନ କିଛି ଖାଇବି ନାଇଁ । ଦି' କପ ଚା ପଠେଇ ଦିଅ ।

ରାଧା—(ଅନ୍ତରାଳରୁ) ଚା'ପାଣି ବସି ନାଇଁ । ହବାକୁ ଘଣ୍ଟାଏ ଡେରି ହବ ।

ମୀରା—ବାରମ୍ବାର କରି ଅନୁରୋଧ କରି କହିଚନ୍ତି—ଆଜି ଲେଖା ନ ପାଇଲେ ଭାରି ଅସୁବିଧାରେ ପଡ଼ିବେ । ନହେଲେ ତ କାଗଜ ବାହାରି ପାରିବ ନାଇଁ ।

ମାନସ—ମୁଁ ହାତଯୋଡ଼ି ସଂପାଦକ ମହାଶୟଙ୍କୁ କହୁଚି—ତାଙ୍କୁ ଜଣେଇ ଦବ ମୀରା—ଆଜି ଭିତରେ ମୁଁ ନ ଲେଖିଲେ କାଲି ମଙ୍ଗଳବାର ମଙ୍ଗଳାସୁତ୍ର ପାଠ ହେଇ ପାରିବ ନାଇଁ—ସାତ

ସାତଟା ବାହାଘରର ଗୀତ ଠିକ୍ ସମୟରେ ଛପା ହୋଇ ପାରିବ ନାହିଁ କି "ଭବନାଥ" ମାର୍କା ବଡ଼ କମ୍ପାନୀର ପ୍ରଚୁର ଗୀତ ସମ-ସାମଗ୍ରୀରେ ବୋଲ୍‌ଦେଇ ପାରିବ ନାହିଁ । ଆଉ ଏସବୁ ବ୍ୟାପାରର ଗୁରୁତ୍ୱ ସଂସ୍କାର ପତ୍ରିକା ପ୍ରକାଶ ଅପେକ୍ଷା ଢେର ବେଶୀ ।

ମୀର—ଆଜ୍ଞା ?

(ମୀର ମାନସର କଥା ଯେପରି କିଛି ବୁଝିପାରୁ ନ ଥାଏ)

ମାନସ—ସମ୍ପାଦକଙ୍କୁ ଏଇ କଥା ଜଣେଇ ଦେଲେ, ମୁଁ ଜାଣିଛି ତାଙ୍କୁ ଲେଖା ଦେଇ ପାରିଲିନି, ସେ କଥା ସେ ଠିକ୍ ବୁଝିବେ ।

ରାଧା—(ଅନ୍ତରାଳରୁ) ଆଲୋ ସାମୀ ! ତାଙ୍କୁ ପଚାରିବୁଟି—ଆଜି କ'ଣ ସଞ୍ଜ ଗଡ଼ିବା ଯାଏ ଲେଖା ଚାଲିଥିବ ? ତାଙ୍କ ମୁଣ୍ଡ ଠିକ୍ ରହିବଟି ?

ମୀର—ମୁଁ ତା'ହେଲେ ଯାଉଚି ଆଜ୍ଞା ?

ମାନସ—ଆଉ ଉପାୟ କ'ଣ ? ଚେଷ୍ଟା କରୁଚି—କାଲି ସକାଳେ ପଠେଇଦବାକୁ । ତମେ ଯାଅ ।

ମୀର—ନମସ୍କାର ।

ମାନସ—ନମସ୍କାର [ମୀର ଚାଲିଗଲା, ସଙ୍ଗେ ସଙ୍ଗେ ରାଧା ଆସିଲା]

ରାଧା—ଏଠି କି ପାଲା ଏ ଚାଲିଥିଲା ?

ମାନସ—ପାଲା ଏଠି ଚାଲିଥିଲା, ନା ତମେ ସେଠି ପାଲା ଲଗେଇ ଥିଲ ? ତମର କ'ଣ ବଗୁର ବୁଦ୍ଧି ସବୁ ଲୋପ ପାଇଲାଣି ? ଗୋଟାଏ ଶିକ୍ଷିତା ଭଦ୍ର ଘରର ଝିଅ ସେ—ତମର ଏ ବ୍ୟବହାରରେ ସେ କଣ ଭାବଥିବ କହିଲ ?

ସୁଧା—ହୁଁଃ ! ! ଏକା ତାକୁ ଭାବ ଆସେ—ଆମକୁ ଆଉ ଭାବ ଆସେ ନାହିଁ ? ଗୋଟାଏ ପର ଝିଅକୁ ପାଖରେ ବସେଇ ଏ ସଞ୍ଜ ଅନ୍ଧାରରେ ହସ ଖୁସି ଗପ ଲାଗିଚ—

ମାନସ—ସୁଧା ! !

ସୁଧା—ଆଉ ଏଣେ ମୋ' ଭଉଣୀଟା ସେତକବେଳୁ ଆସି କାନ୍ଦୁଚି—ତା କଥା ଟିକେ ବୁଝି ଦିଅ—ନାଇଁ ସେ କଥା ହେଇ ପାରିବ ନାଇଁ ! ଆଲୋ କାଇଁ ଗଲୁକ ସୁକ ?

ସୁକ—କଣ ? (ସୁକ ଆସିଲା)

ସୁଧା—ଏଠିକି ଆ । ଲେଖା ଆଣିଚୁ ?

ସୁକ—ହଁ ।

ସୁଧା—ବସ ଏଠି । ଦିଅ—ତା' ଲେଖାଟା ଆଜ ଠିକ୍ କରିଦିଅ । ସେ କାଲି ସକାଳେ ତା' ମାମୁଁ ସାଙ୍ଗରେ ଚାଲିଯିବ । ମୁଁ ଚମ ଚା' ପଠେଇ ଦଉଚି । (ପ୍ରସ୍ଥାନ)

ମାନସ—ତମ ନାଁ ସୁକ ?

ସୁକ—ଡାକ ନାଁ ସୁକ—ଭଲ ନାଁ ସୁକେଶୀ ।

ମାନସ—ହୁଁ । ନାଁ'ରେ କବିତ୍ୱର ଆଭାସ ଅଛି । କବିତା ଲେଖ ?

ସୁକ—ଲେଖିଚ ।

ମାନସ—ନଜେଇ ଲେଖି ପାରିଲ ନାହିଁ—ଭଗବାନଙ୍କ ଦୟାରୁ ତମ ସହିତ ଲେଖା ସମ୍ବନ୍ଧରେ ଟିକେ ଆଲୋଚନା ହେଲେ ହଉ—ସେତିକ ସାନ୍ତ୍ୱନା । ହଁ, କବିତାର ନାଁ କଣ ?

ସୁକ—'ସେ ଗଲା ଚାଲି' ।

ମାନସ—'ସେ ଗଲା ଚାଲି' ! ! ହୁଁ ଆଚ୍ଛା, ପଢ଼ । ପଢ଼—ଲାଜକଲେତ ଚଳିବ ନାହିଁ —ପଢ଼ ।

ସୁକ—(ପଢ଼ିଲା)

ସେ ଗଲା ଚାଲି,

ସେ ଗଲା ଚାଲି—

ମତେ ଏକା ଛାଡ଼ି ସେ ଗଲା ଚାଲି ।

ଆଖି ଆଗେ ମୋର ଶୁଖିଲା ନଈର

କାକର, କାଲୁଆ, ଶୀତଳ ବାଲି—

ମତେ ଏକା ଛାଡ଼ି ଗଲା ସେ ଚାଲି ।

ଚାଲିଗଲା ଆଉ ଫେରିଲା ନାହିଁ

ଫେରିବ କି ନାହିଁ କହିଲା ନାହିଁ ॥

ରେଲ୍ ଇଂଜିନର ଭକ୍ ଭକ୍ ଧୂଆଁ—ଧକ୍ ଧକ୍ ଚାଲି—

ରେଲ ଚାଲିଗଲା

ଡବା ଚାଲିଗଲା

ଗାର୍ଡ ଚାଲିଗଲା

ସିଏ ଚାଲିଗଲା—

ଇଷ୍ଟେସନ ଘର ପଡ଼ିଲା ଖାଲି—

ମତେ ଏକା ଛାଡ଼ି ସେ ଗଲା ଚାଲି ॥

ମାନସ—ହୁଁ । ସେ ତାହେଲେ ଚାଲିଗଲା ? ଆଚ୍ଛା, ଏ ସେ' ଟି କିଏ ? (ସୁକ ନିରୁତ୍ତର ) କହିବ ନାହିଁ ? ଆଚ୍ଛା, ସେ ଗଲା କୁଆଡ଼େ ? ତା'ବି କହିବ ନାହିଁ ? କବିତା ଲେଖିଚ—ଭଲ ଲେଖିଚ । ପ୍ରଥମାର୍ଦ୍ଧ ଟିକିଏ ପୁରୁଣା ଢଙ୍ଗରେ ଲେଖା—ଦ୍ୱିତୀୟାର୍ଦ୍ଧ ସାମ୍ପ୍ରତିକ ଢଙ୍ଗ । କିନ୍ତୁ ଗୋଟାଏ କଥା—ସିଏ ଚାଲିଯାଇଛନ୍ତି ବୋଲି ଏ କବିତାଟି ତମେ ଲେଖିଚ—ସ୍ୱାକୁ ଯଦି କିସି ନକାଲେ ସେ ପଢ଼ନ୍ତି ତେବେ ସେ ସେ ଆଉ କେବେ ଫେରିବେ, ସେ ଆଶା ତମର ଅଛି ? (ସୁକ ହସି ପକେଇଲା)

ଏଁ ! ହସିଲ ଯେ ? କଥାଟା ମନକୁ ପାଇଗଲା—ନା ?

(ରାଧା ଓ ଯମୁନା ଆସିଲେ)

ରାଧା—ଏଇ ରୁ’ ନଅ । କ’ଣ ସୁକ କାମ ହେଲା ?

ଯମୁନା—ଅପା, ମାନସ ଭାଇ ମୋ ପାଇଁ ସାତଟା ବାହାଘର ଗୀତ ଲେଖିଦେବେ ବୋଲି କହୁଚନ୍ତି । [ଭବ ଆସିଲା]

ଭବ—ମାନସ ଭାଇ, ମୋ’ କାମ ଚୂଲଚି ତ ? ବୁଝିଲ ଅପା, ମାନସ ଭାଇ ଆମ ସମସ୍ତଙ୍କ ପାଇଁ ଲେଖୁଚନ୍ତି—ବାପାଙ୍କ ପାଇଁ ସ୍ତୁତି—ମୋ ପାଇଁ ବଡ଼ ଗୀତ—ଆଉ ସୁକ ପାଇଁ······ବାଃ ! ସୁକ ମନ ତ ଭାରି ଖୁସି ! ତା କାମ ହୋଇଗଲାଣି ପରା ?

ଯମୁନା—ମାନସ ଭାଇ ତ ସମସ୍ତଙ୍କ ପାଇଁ ଲେଖିଲେ । ଅପା ପାଇଁତ କିଛି ଲେଖିଲେ ନାଇଁ ?

ମାନସ—ଲେଖି ନାଇଁ ? ନିଶ୍ଚୟ ଲେଖିଚି । ନ ଲେଖିଲେ ଏ ପରିବାରରେ ମୋର ସ୍ଥାନ ରହିବ କୋଉଠି ? ତୋ’ ଅପା ପାଇଁ ଆଜି ସାରାଦିନ ପରିଶ୍ରମ କରି ଏଇ ଦୁ’ ଧାଡ଼ି ଲେଖିଚି —

"ଗର୍ବରୁ ବଳି ଗର୍ବ ଥିଲା ମୁଁ ସିନା
ସାତ ରାଜା ଧନେ ଧନ୍ୟ କରେଇଲ ମତେ ।"

ରାଧା—(ଲାଜରେ) ଅଲାଜୁକ ।

ଭବ—ବଢ଼ିଆ ହୋଇଚି ମାନସ ଭାଇ । ଠିକ୍ ଏମିତିକା ଢଙ୍ଗରେ ମୋ’ ପାଇଁ ଲେଖିବ ।

ମାନସ—ଲେଖିବ ତ । ଚାଲ—ଆଗେ କୁସ୍ତି-ଲଢ଼େଇ ଦେଖିଆସି —ପରେ ଲେଖିବ ।

ଭବ—ସତରେ ? ଯିବ ?

ମାନସ—ଏଥିରେ ଆଉ ସନ୍ଦେହ ଅଛି ? ଚାଲ—

(ଦୁହିଁଙ୍କର ପ୍ରସ୍ଥାନ)

---

**ଏ ପରିବାରରେ ଅଛନ୍ତି :**

ସୁମନ୍ତ—ଗୃହସ୍ୱାମୀ (ବୟସ—୪୦)

ଗାୟତ୍ରୀ—ତାଙ୍କ ସ୍ତ୍ରୀ (ବୟସ—୩୨)

ଲୀନା—ତାଙ୍କ ଝିଅ (ବୟସ—୧୫)

ଫେଲୁ—ତାଙ୍କ ପୁଅ (ବୟସ—୧୨)

ଓ

ଅଭିରାମ—ତାଙ୍କର ଦୂର ସଂପର୍କୀୟ ଖୁଡ଼ୁତାଶୁର ।

( ଏ ଛଷର ରଚନାକାଳ—ଡିସେମ୍ବର ୧୯୫୮ )

# ମାଷ୍ଟର ବାବୁଙ୍କ ପରିବାର

## ପ୍ରଥମ ଦୃଶ୍ୟ

[ କଟକ ସହର ରାସ୍ତା ଧାରକୁ ଲଗି ଗୋଟିଏ ଏକ ମହଲା କୋଠାର ଏକ ସାଧାରଣ ପ୍ରକୋଷ୍ଠ । ଅନ୍ୟାନ୍ୟ ଆସବାବ୍ ମଧ୍ୟରେ ଅଛି ଗୋଟିଏ ଟେବୁଲ ଓ ଚୌକି । ···ସ୍କୁଲ ମାଷ୍ଟର ସୁମନ୍ତ ବାବୁ ଚୌକି ଉପରେ ବସି ପିଲଙ୍କ ପରୀକ୍ଷା ଖାତା ଦେଖୁଛନ୍ତି । ସମୟ—ସକାଳ ପ୍ରାୟ ନ'ଟା । ସୁମନ୍ତଙ୍କ ଅଲକ୍ଷ୍ୟରେ ତାଙ୍କ ସ୍ତ୍ରୀ ଗାୟତ୍ରୀ ଆସି ଚୌକି ପଛରେ ଠିଆ ହେଲେ । ସେ ସୁମନ୍ତଙ୍କୁ କ'ଣ କହିବାକୁ ଆସିଛନ୍ତି—କିନ୍ତୁ ହଠାତ୍ ସାହସ କରି ଯେମିତି କିଛି ପାରୁନାହାନ୍ତି । ···କିଛି ସମୟ ଏମିତି କଟିଗଲା । ]

ଗାୟତ୍ରୀ – ଶୁଣୁଛ ?

ସୁମନ୍ତ—( ଅନ୍ୟ ମନସ୍କ ଭାବେ ) ହୁଁ ।

ଗାୟତ୍ରୀ – ଥରେ ଫେରେଇ ଦେଲ—ଦିଥର ଫେରେଇ ଦେଲ— ଆଜି ପୁଣି ସେ ଆସିବେ ବୋଲି କହିଛନ୍ତି । ଆଜି ଯଦି ପୁଣି ତାଙ୍କୁ ଫେରେଇ ଦେବ—ତା'ହେଲେ ଯାହା କହନ୍ତି—

(ସୁମନ୍ତ ଗାୟତ୍ରୀଙ୍କ ଆଡ଼େ ଚାହିଁଲେ)

ସୁମନ୍ତ—କାହାକଥା ତୁମେ କହୁଚ ?

ଗାୟତ୍ରୀ—ସେଇ ମ—

ସୁମନ୍ତ—କିଏ ? ଘର ମାଲିକ ? କିନ୍ତୁ ନା, ଆମର ତ ଘରଭଡ଼ା ପଇସାଟିଏ ବି ବାକି ନାହିଁ ।

ଗାୟତ୍ରୀ—ମୋ କଥାରୁ ତମେ ଏଇଆ ବୁଝିଲ ?

ସୁମନ୍ତ—ତମକୁ ଏଠି ଆସି କଥା କହିବାକୁ କିଏ କହୁଥିଲା ?

ଗାୟତ୍ରୀ—ମୁଁ ପରା ଆସି ପହିଲେ ତମକୁ ପଚାରିଲି—

ସୁମନ୍ତ—କହୁଛି ମତେ ତମେ ଆସି ପଚାରିନ । ସିଧା ଆସି କଥା ଆରମ୍ଭ କରିଚ ।

ଗାୟତ୍ରୀ—ମଲା, ମୁଁ ତମକୁ ଆସି ପଚାରିଲିନାହିଁ—'ଶୁଭୁଚି' ?

ସୁମନ୍ତ—ତମେ କ'ଣ ଆଶା କରିଥିଲ ଯେ, ବେଳକୁ ବେଳ ମୋର ଶ୍ରବଣଶକ୍ତି ଲୋପ ପାଇ ଆସୁଚି ।! ସେଇଥିପାଇଁ ପରୀକ୍ଷା କରିବା ଛଳରେ ଗୋଟାଏ ପ୍ରଶ୍ନ ଆସି ପଚାରି ଦେଲ ?

ଗାୟତ୍ରୀ—ତମେ ସିନା ସ୍କୁଲରେ ମାଷ୍ଟର ହୋଇଚ ଯେ—ପିଲାଙ୍କୁ ପରୀକ୍ଷା କରୁଚ—ମୁଁ କ ଜାଣେ ପରୀକ୍ଷା ?

ସୁମନ୍ତ—ଖୁବ୍ ସତ କଥାଟାଏ କହିଚ ଗାୟତ୍ରୀ । ପରୀକ୍ଷା ବିଷୟରେ ସାମାନ୍ୟ ଜ୍ଞାନ ତମର ଥିଲେ—ପ୍ରାୟ ପଚାଶ ପିଲାଙ୍କ ଭାଗ୍ୟ ନେଇ ଯେତେବେଳେ ମୁଁ ମୋ ଭାଗ୍ୟଫଳ ଭୋଗୁଚି ସେତେ- . ବେଳେ ତୁମେ ଆଜ ମତେ 'ଶୁଭୁଚି' ବୋଲି କହି ଅଯଥା ପ୍ରଶ୍ନ ଗୁଡ଼ାଏ ପଚାରନ୍ତ ନାହିଁ !

ଗାୟତ୍ରୀ—ମୋ କଥା ନ ହେଲା ଏବେ ନାଇଁ । ତମେ ଏମିତି ରାଗୁଚ କାହିଁକି ? ମୁଁ ପଚାରିଲି—'ଶୁଭୁଚି' ? ତମେ କହିଲ —'ହଁ', ସେଇଥିପାଇଁ···

ସୁମନ୍ତ – ଆପେକ୍ଷିକ ବୋଲି ଗୋଟାଏ ଶବ୍ଦ—ନା ! ସେ ଶବ୍ଦ ତମେ ଜାଣି ନଥିବ । ଅତଏବ ତା'ର ଅର୍ଥ ତମକୁ ବୁଝାଇ ଲାଭ ନାହିଁ ।

ଗାୟତ୍ରୀ—ହଁ, ମୁଁ କ'ଣ ତମ ସ୍କୁଲ ପିଲା ହୋଇଚି କି ତମେ ଗୋଟି ଗୋଟି ସବୁ କଥାର ମାନେ ମତେ ବୁଝେଇବ ?

ସୁମନ୍ତ—ତମେ ଯେତେବେଳେ ଏ ଘରକୁ ଆସିଲ—ସେତେବେଳେ ଏ ଘରେ କି ଘଟଣା ଘଟିଥିଲା ?

ଗାୟତ୍ରୀ—ଘଟଣା ? କି ଘଟଣା ଲୋ ମା ?

ସୁମନ୍ତ—ଏ କାନ୍ଥ ଘଣ୍ଟାରେ ସେତେବେଳେ ଢଂଢଂ ହୋଇ ନ'ଟା ବାଜୁଥିଲା ନା ନାହିଁ ?

ଗାୟତ୍ରୀ—ହଁ, ବାଜୁଥିଲା ନା କ'ଣ !

ସୁମନ୍ତ—ନା' କ'ଣ ନୁହେଁ—ଠିକ୍ ବାଜୁଥିଲା । ଆଉ ଠିକ୍ ସେତିକ ବେଳେ ତମେ ଆସି ମତେ ପଚାରିଲ—'ଶୁଭୁଚ' ?

ଗାୟତ୍ରୀ—(ହସିହସି) ଓ, ଏଇଆ ? ତମେ ଭାବିଲ ଯେ, ତମେ ପିଲାଙ୍କ ଖାତା ଦେଖୁଚ ବୋଲି ତମର କୁଆଡ଼କୁ ହୋସ୍ ନାହିଁ—ଆଉ ସେଇଥିପାଇଁ ଏଣେ ଦିନ ଆସି ନ'ଟା ବାଜିଲାଣି ବୋଲି ମୁଁ ତମକୁ ଆସି ହେଜ କରେଇ ଦଉଚି !

ସୁମନ୍ତ—କାହିଁକି ? ମୋର ଏମିତି ଭାବବାଟା କ'ଣ ଏମିତି ହାସ୍ୟାସ୍ପଦ ବ୍ୟାପାର ଯେ ତମେ ହସି ହସି ତା'ର ବ୍ୟାଖ୍ୟା କରି ଥୋଇଲ ?

ଗାୟତ୍ରୀ—ପିଲାଙ୍କ ଖାତା ଦେଖୁଚ । ଯିଏ ଭଲ ଲେଖିଥିବ ତାକୁ ଭଲ ନମ୍ବର ଦେବ । ଯିଏ ଭଲ ଲେଖି ନଥିବ ତାକୁ ତା' ଲେଖା ଗୁହାଁ ନମ୍ବର ଦେବ । ଆମେ ସବୁ କ'ଣ କଲୁ ଯେ, ଆମ ଉପରେ ଏମିତି ଚଡ଼ଚଡ଼ ହଉଚ । ସ୍କୁଲକୁ ଗଲାଦିନ ସିନା ବେଳଥାଉଁ ଗାଧୁଆ ଖିଆ କରିବାକୁ କୁହେ । ଏଇନେତ ପରୀକ୍ଷା ସରିଲାଣି । ତମେ ସ୍କୁଲକୁ ନ ଯାଇ ଘରେ ବସି ଖାତା ଦେଖୁଚ । ଆଉ ନଅଟା ବାଜିଲା ବୋଲି ତମକୁ ହେଜ କରେଇ ଦଅନ୍ତି କାହିଁକି ? ମୁଁ କହୁଥିଲି—(ସୁମନ୍ତ ତୀକ୍ଷ୍ଣଦୃଷ୍ଟିରେ ଚାହିଁଲେ) ନାଇଁଲୋ ମା—ମୁଁ ଆଉ କଛି କହୁନ । ମୋ ଆଡ଼କୁ

ଏମିତି କଟମଟ କରି ଗୃହନ୍ତି । ମଲା, ପାନ ଡବାଟା କ'ଣ ଖାଲି ପଡ଼ିଛି । ଖାଲି ପାଟିକରି ବସିଛ—ପାନ ଖଣ୍ଡେ ବି ଆଣିବାକୁ କହୁନ ? ହଉ, ଡବାଟି ଦିଅନ୍ତୁ ମୁଁ ପାନ ନେଇ ଆସେ । (ଡବା ନେଇ ଗ୍ଲଲିଗଲେ)

ସୁମନ୍ତ – ହୁଁ, ଯାଅ । (ମନକୁମନ) ଏ ପିଲାଟାତ ମତେ ଆଚ୍ଛା ମୁସ୍କିଲରେ ପକେଇଲା । ଏମିତି ଭାବରେ କଲମ ଚଳେଇ ଦେଇଛି ଯେ ଏଇଟା ଯୁକ୍ତ ଚିହ୍ନ କି ଗୁଣନ ଚିହ୍ନ ଜାଣିବା କାହାରି ସାଧ୍ୟ ନାହିଁ ! ଏଇ ଗୋଟାଏ ଖାତାରେ ତ ସକାଳୁ ଆସି ନ' ବାଜିଲାଣି—ଆଉ ଏତେ ଗୁଡ଼ାଏ ପୁଣି ଦେଖିବି କେତେବେଳେ ? କାହିଁକି ସେ ଏମିତି କରିଛି ? କ'ଣ ତାର ଉଦ୍ଦେଶ୍ୟ ? ତରବରରେ ଅସାବଧାନ ହୋଇ ଏମିତି କରିଛି ନା ମିଶେଇବ କି ଗୁଣିବ ଠିକ୍ କରି ନପାରି ଏମିତି ଗୋଟାଏ ଦୋଫାଙ୍କିଆ ମାର୍କରେ ଉତ୍ତରଟା ଦେଇ ଦେଇଛି ? କିଏ ଏ ପିଲାଟା ? ସୁନାରାମ ଦାସ ! ହୁଁ, ଏ ପ୍ରଶ୍ନଟା ଥାଉ, ଆଉ ଗୋଟାଏ ଦେଖେ ।

—*—

## ଦ୍ୱିତୀୟ ଦୃଶ୍ୟ

(ଅନ୍ୟ ଏକ କୋଠରୀ । ଗାୟତ୍ରୀ ବସି ପାନ ଭାଙ୍ଗୁଛନ୍ତି । ଅଭିରାମ ଡାକ ଡାକ ଆସିଲେ)

ଅଭି—ଗାୟତ୍ରୀ, ଗାୟତ୍ରୀ ।

ଗାୟତ୍ରୀ—କିଏ ? ଅଭିରାମ ଦାଦା । (ପ୍ରଣାମ କଲେ । ଅଭିରାମ ବସିଲେ)

ଅଭି - ସୁମନ୍ତ ଘରେ ଅଛି ?

ଗାୟତ୍ରୀ—ହଁ ସେ ଘରେ ବସି ଖାତା ଦେଖୁଛନ୍ତି ।

ଅଭି - କଣ ମା—ବୁଝିଥିଲୁଟି ?

ଗାୟତ୍ରୀ - ବୁଝିବାରେ କ'ଣ ମୁଁ ହେଲା କରୁଚି ଦାଦା ? ହେଲେ କଣ କରିବ ? ଟେଷ୍ଟ୍ ପରୀକ୍ଷା ଖାତା ବୋଲି ମୋତେ ପରି ପାଖ ପୂରେଇ ଦଉନାହାନ୍ତି ।

ଅଭି—ହେଡ୍ ମାଷ୍ଟରଙ୍କ ପାଖକୁ ଯାଇଥିଲି ।

ଗାୟତ୍ରୀ - କଣ' କହିଲେ ?

ଅଭି—ସେଇ ଗୋଟାଏ କଥା—"ପିଲା ତମର ଅଙ୍କରେ କଞ୍ଚା । ସୁମନ୍ତ ବାବୁ ହାତରେ ଅଙ୍କ ଖାତା । ସେ ଅଙ୍କ ମାଷ୍ଟର । ଗୋଟାଏ ଦ'ଟା ନମ୍ବର ପାଇଁ ଫେଲ୍ ହେଲେବି ସୁମନ୍ତବାବୁ ପାଶ କରେଇ ଦବାକୁ ରାଜି ହେବେନି ।"

ଗାୟତ୍ରୀ—ସେଇଠୁ ?

ଅଭି—ସେଇଠୁତ ତୋ ପାଖକୁ ଆସିଚି । ହେଡ୍ ମାଷ୍ଟରଙ୍କଠୁ ଯାହା ବୁଝିଲି—ସୁମନ୍ତ ହାତରେ ସବୁ । ସେ ନଚାହିଁଲେ ପୁଅ ମୋର ପୁଣି ଗୋଟାଏ ବର୍ଷ ଏଇ କ୍ଲାସରେ ଘୁରୁଥିବ । ହେଇଛି, ମା, ତୋରି ଉପରେ ଭରସା ରଖି ଆସିଚି । ତୁ ଟିକିଏ ଚାହୁଁ ନ କହିଲେ କିଛି ହେଇ ପାରିବ ନାଇଁ । ଅଙ୍କ ପରୀକ୍ଷା ଦେଲାଦିନୁ ପିଲାଟାମନରେ ମୋଟେ ସୁଖ ନାହିଁ ।

ଗାପୂର୍ବୀ—ପାନ ନଅ ଦାଦା ।

ଅଭ—ଦେ,...କଣ କହୁଚୁ କହିଲୁ ମା ?

ଗାପୂର୍ବୀ—ଏଇ ଗ୍ଧର କଥାଟା ପାଇଁ ତମେ ଗାଁ'ରୁ ମୋ ପାଖକୁ ଆସିଚ—ମୁଁ ପୁଣି ତମ କଥା କହିବ ନାଇଁ ? ହେଲେ ଦାଦା—

ଅଭ— କଣ ?

ଗାପୂର୍ବୀ—ମୁଁ ତ କହିବ—ତମେ ବ ଟିକଏ କହି ଦେଖ ।

ଅଭ –ମୁଁ କେମିତି କହିବ କହିଲୁ ମା ? ସାଇ ପଡ଼ଶାରେ ତୁ ମୋର ଝିଆଘ ବୋଲି ତୁ ମତେ ଖାତିର ସମ୍ମାନ କରୁଚୁ । ହେଲେ ସୁମନ୍ତ ମତେ ଜାଣିଚ ନା ଶୁଣିଚ ?

ଗାପୂର୍ବୀ—ଓ, ସେ ତମକୁ ଭଲକରି ଚହ୍ନି ନାହାନ୍ତି ପରା ।

ଅଭ –ମୂଳରୁ ଚହ୍ନି ନଥିବେ କହ । ବାହାଘର ବାସୀଢନଠୁଁ ତ ତମେ ସବୁ ବାହାରେ ବାହାରେ ବୁଲିଲ । ଏଠିକି ତମର ବଦଳି ହୋଇ ଆସିବା ମୋଟେ ମାସ ଦିଟା ହବ । ସେ ମତେ ଚହ୍ନିଚ ନା ମୋ ପୁଅ ତା ପାଖରେ ପଢ଼ୁଚ ବୋଲି ସେ ଜାଣିଚ ? ତୁ କଣ, ମୋ କଥା ତାକୁ କିଛି କହିଥିଲୁ ?

ଗାପୂର୍ବୀ—ନାଇଁ ଦାଦା—କାଳେ ଭଲହବ ମନ୍ଦହବ ଜାଣି ମୁଁ ତାଙ୍କୁ ଏ ଯାଏ କିଛି କହିନ ।

ଅଭ—ଆଉ ତା'ହେଲେ ସେ ମତେ ଜାଣିଲ କେମିତି, ସେ ମତେ ମୋଟେ ଜାଣେନାହିଁ ?

ଗାପୂର୍ବୀ—ତମ ପୁଅ ?

ଅଭ—ଏକନମ୍ବର ଲଜକୁଳା—ମୁହଁ ଗେଲ୍ହଟା । ଦି'ମାସ ହେଲା ଭଣୋଇଟା ପାଖରେ ପଢ଼ିଲାଣି, ଏ ଯାଏଁ ତାକୁ ଚହ୍ନା ଦେଇନ ।

ଗାୟତ୍ରୀ—ମୁଁ କହୁଚି ଦାଦା ତମେ ନିଜେ ତାଙ୍କୁ କୁହ ! ମୁଁ ଚିଠି ଦେଇଦେଲେ କଣ ସେ ଚଳିବେ ନାହିଁ ?

ଅଭି—ହଉ; ଚାଲ ମା—ଯିବା ।

ଗାୟତ୍ରୀ—ଟିକିଏ ରହ । ମୁଁ ତାଙ୍କ ପାନ ଆଗେ ପଠେଇଦିଏ । (ଡାକିଲେ) ଆରେ ଫେଲୁ, ମାଳା (ଫେଲୁ ଓ ମଳା ଦୁହେଁ ଆସିଲେ)

ମାଳା— } କ'ଣ ବୋଉ ?
ଫେଲୁ—

ଗାୟତ୍ରୀ—ବାପାଙ୍କ ପାଇଁ ପାନ ନେଇଯାଅ !

ଫେଲୁ—ଦେ ବୋଉ, ମତେ ଦେ ।

ମାଳା—ନାଇଁ ବୋଉ, ମତେ ଦେ ।

ଗାୟତ୍ରୀ—ଆରେ ଯିଏ ହେଲେ ଜଣେ ନିଅ ।

ଫେଲୁ—ମୁଁ ନେବି ।

ମାଳା—ଇସ୍ ! ଭାରି ଚାଲାକ ! ତୁ କାଇଁକି ନବୁ ? ଦେ' ମତେ ଦେ ।

ଫେଲୁ—ଦେଖ୍ ବୋଉ ।

ଗାୟତ୍ରୀ—ଓହୋ ! କାଇଁକି ସେମିତି ହଉଚ ? ଯା'ଦିଜଣ ଯାକ ନେଇଯା ।

ମାଳା—ଦି' ଜଣ ଗଲେ କାଳେ ଚିଡ଼ିବେ ?

ଫେଲୁ—ନାଇଁମ ଚିଡ଼ିବେ ନାଇଁ ଆ । (ପାନ ଡବା ନେଇ ଦୁହେଁ ଚାଲି ଗଲେ )

ଅଭି—ଆମେ ପଛରେ ଯିବା ?

ଗାୟତ୍ରୀ—ହଁ ! ତେମେ ଏଇ ଆସିଲା ବେଳକୁ ପରି ନମା ଉପରେ ଚିଡ଼ ଚିଡ଼ ହଉଥିଲେ । ଟିକିଏ ରୁହ, ତାଙ୍କ ମନ ବଦଳି ଯାଉ, ଆମେ ଯିବା ।

—*—

## ତୃତୀୟ ଦୃଶ୍ୟ

( ସୁମନ୍ତ ପୁଙ୍ଖପର ଖାତା ଦେଖୁଚନ୍ତି ! ପିଲା ଦୁହେଁ ଆସିଲେ )

ମାଳା—ବାପା, ତମ ପାନ !

ଫେଲୁ—ଛ'ଖଣ୍ଡ ।

ସୁମନ୍ତ—କେତେ ଖଣ୍ଡ ?

ମାଳା—ନାଇଁ ବାପା, ସାତଖଣ୍ଡ ।

ସୁମନ୍ତ—ହଉ, ରଖିଦେଇଯାଅ ।

ମାଳା—ହଇରେ ଫେଲୁ, ତୁ ଏଡ଼େ ବଦମାସ୍ । ବୋଉ ସାତଖଣ୍ଡ ପାନ ଦେଇଚି—ତୁ କହୁଚୁ ଛ'ଖଣ୍ଡ । ଛ'ଖଣ୍ଡ କରି କେହି କାହାକୁ ଦିଏ ? ଅମଙ୍ଗଳିଆ କଥା ।

ଫେଲୁ—ମୁ କଣ ଜାଣିଥିଲି ! ଖଣ୍ଡେ ପାନ ଉବା ତଳକୁ ରହି ଯାଇଥିଲା—ମତେ ଦିଶିଲା ନାହିଁ ।

ସୁମନ୍ତ—ସେ ଆଲୋଚନା ଏଠି କାହିଁକି ହଉଚି ?

ଫେଲୁ—ମୁଁ କିଛି କହୁନି ବାପା—ଏଇ ଅପା କହୁଚି ।

ସୁମନ୍ତ—ହଉ ଗଲ ଏଠୁ—ଯାଅ ।

ଫେଲୁ—(ଟିକିଏ ନମ୍ରସ୍ୱରରେ ) ଯାଉନୁ ଅପା ।

ମାଳା—(ସେହିପରି) ତୁ ଯାଉନୁ ।

ଫେଲୁ—ଦେଖୁନୁ, ବାପା ପରୀକ୍ଷା ଖାତା ଦେଖୁଛନ୍ତି । ଗୋଳ-ମାଳ କରନା ଯା ।

ମାଳା—ମୁଁ ଏକା ଗୋଳମାଳ କରେ ! ଫାଜିଲ୍ ଟୋକା ।

ଫେଲୁ—ହଉ, ନ'ଯା ଏବେ ! ମୋର କଣ ଯାଉଛି ?

ମାଳା—ହଉ ତୁ ଚୁପ୍ ହୋଇ ଠିଆ ହ' ।

(କିଏ ଯିବ, କିଏ ରହିବ, ଏଥିପାଇଁ ଦୁଇଜଣଙ୍କ ଭିତରେ ଯେପରି ପ୍ରତିଯୋଗିତା ଲାଗିଥାଏ)

ସୁମନ୍ତ—(ମନକୁମନ) ଅଙ୍କା ମୁସ୍କିଲରେ ପିଲାଟା ମତେ ପକେଇଲା !
ଏଇଟା ଗୁଣନ ଚିହ୍ନ କି ମଣାଣ ଚିହ୍ନ......

ଫେଲୁ—ଇଏ ଟେଷ୍ଟ୍ ମିଲଙ୍କର ଅଙ୍କ ଖାତା ଦେଖୁଚକି ବାପା ?

ମାଳା—କେଡ଼େ ବୋକା ମ ! ବାପା ତ ଅଙ୍କ ପଢ଼ାନ୍ତି—ଆଉ କଣ ସାହିତ୍ୟ ଖାତା ଦେଖନ୍ତେ ?

ସୁମନ୍ତ—ତମେ ଦିହେଁ ଏଠି ଠିଆ ହେଇ କଣ କରୁଚ ? ମାଳା !

ମାଳା—ନାଇଁ ବାପା ! ତମ ପାଇଁ ପାନ ଆଣି ଆମେ ଆସିଥିଲୁ ।
ତମେ ଗୁ ଖାଇନ ପରା ବାପା ?

ସୁମନ୍ତ—ଗୁ’ ? ଦିନ ନ’ଟା ବେଳେ ମୁଁ କେବେ ଗୁ ଖାଇବା ଦେଖିଚୁ ?

ଫେଲୁ—ସେଇଆ ପରା ! ବାପାତ ମୋଟେ ଦିନକୁ ଦି’ଥର ଗୁ’ ଖାନ୍ତି ।
ବୋଉକୁ କହିବ ବାପା—ସର୍ବତ କରିଦବ ?

ମାଳା—ତୁ’ଟା ଭାରି ପଣ୍ଡିତ ! ଏ ଶୀତ ଦିନଟାରେ କିଏ ସର୍ବତ ଖାଏ ?

ଫେଲୁ—ସର୍ବତ ଖାଇବ ନାଇଁ ବାପା ?

ମାଳା—ନାଇଁ ବାପା, ତମର ଇଶେନ୍ ଫେଲିଆ ! ସର୍ବତ ଖାଇଲେ ଥଣ୍ଡା ଧରିବ । କହିବତ ଟିକିଏ ଗୁ’କରି ଆଣୁଚି ।

ଫେଲୁ—ଏତେବେଳେ ଗୁ’ ଖାଇଲେ ଭାତ ଖାଇବେ କେତେ ବେଳେ ?

ମାଳା—ଶୀତ ଦିନେ ସର୍ବତ ଖାଇଲେ ଡାକ୍ତର ପାଖକୁ ଦୌଡ଼ିବ କିଏ ?

ସୁମନ୍ତ—(ହସି) ଆରେ ତେମେ ଭାଇ ଭଉଣୀ ଦିହେଁ ମୋ ପାଇଁ ବାଡ଼ଆ ବାଡ଼ି ହଉଚ କାହିଁକି ?

ମାଳା—ନାଇଁ ବାପା ତମେ କୁହ—ତମେ କଣ ଖାଇବ ?

ସୁମନ୍ତ—ନାଇଁଲୋ ମା ! ମୁଁ ଗୁ ସବ୍ ତ କହୁଛି ଖାଇବ ନାହିଁ । ଆଗ ଏ ଖାତା ଗୁଡାକ କେମିତି ସାରେ ! ହଁ ମୀନା, ଏଥର ତୁ ପରୀକ୍ଷାରେ କେମିତି କରିଚୁ ?

ମୀନା—ଭଲ କରିଚି ବାପା—ଖୁବ୍ ଭଲ କରିଚି । ସେକେଣ୍ଡ୍ ତ ହେବ । ଫାଷ୍ଟ ବ ହେଇପାରେ ।

ସୁମନ୍ତ—ଆଉ ଫେଲୁ—ତୁ କେମିତି କରିଚୁ ?

ଫେଲୁ—ଭଲ କରିଚି ବାପା— ଅଙ୍କରେ ଶଏକୁ ଶଏ ।

ସୁମନ୍ତ—ହଉ, ଭଲକଥା । ଭଲ କରିଚ ତ ଭଲ କଥା । ନିଜେ ମାଷ୍ଟର ହେଇତ ନିଜ ପିଲାମାନଙ୍କ ପଢ଼ା ମୁଁ ଦେଖି ପାରୁନି— ଯାହା ତମେ କରିଥିବ । ହଉ ଯାଅ—ଗଲ ଏଠୁ । ମୁଁ ଏଗୁଡାକ କେମିତି ଶେଷ କରେ । ହୁଁ, ଏ ପିଲାଟା ମତେ ଆଚ୍ଛା ହଇ-ରାଣରେ ପକେଇଲା ! ସକାଳୁ ଏ ଖାତାଟା ଧରି ମୁଁ ବସିଚି !!

ଫେଲୁ—( ବେଶ୍ ଧୀର ଗଳାରେ ) ବାପା !

ସୁମନ୍ତ—ଉଁ ! (ଅନ୍ୟ ମନସ୍କଭାବେ )

ଫେଲୁ—ମୋ ସାଙ୍ଗ ସେ ବାବୁଲି—ଆଜ ତା ବଡ଼ଭାଇଙ୍କ ଜନ୍ମ-ଦିନ । ମତେ ତାଙ୍କ ଘରକୁ ଖାଇବାକୁ ଡାକିଚି । ଯିବି ?

ସୁମନ୍ତ—( ଖାତା ଦେଖୁ ଦେଖୁ ) ଉଁ ? ହୁଁ ।

ଫେଲୁ—ଯିବି ବାପା ?

ସୁମନ୍ତ—କୋଉଠିକି ?

ଫେଲୁ—ବାବୁଲି ଘରକୁ ଖାଇବାକୁ ?

ସୁମନ୍ତ—ଓଃ—ଯା' ବୋଉକୁ ପଚାର ।

ଫେଲୁ—ବୋଉ ହଁ କହିଚି ।

ସୁମନ୍ତ—ହଉ ତେବେ ଯା । ଗୋଳମାଳ କରନା ( ଫେଲୁ କିନ୍ତୁ ନ ଯାଇ ସେମିତି ଠିଆ ହେଇ ରହିଥାଏ )

ମାଳା—ଯାଉନୁ ! ଆଉ ଠିଆ ହେଲୁ କାହିଁକି ?

ଫେଲୁ—ତୋ'ର କଣ ଗଲା ?

ମାଳା—ଭାରି ବଦମାସ ଟୋକା ! ଦେଖୁଚୁ ବାପା ଖାତା ଦେଖୁଚନ୍ତି— ଗୋଳମାଳ ହବ ।

ସୁମନ୍ତ—ଆରେ କ'ଣ ତମର ହୋଇଚ ? କାଇଁକି ଏମିତି ହଉଚ !

ମାଳା—ନାଇଁ ବାପା—ଆମ ଏ ଘର ମାଲିକଙ୍କ ଝିଅ ମୀରା—କାଲି କାଳୀ ମନ୍ଦିରରେ ମୋ ସାଙ୍ଗରେ ଦେଖାହେଲା ।

ସୁମନ୍ତ— ବେଶ୍ ତ ।

ମାଳା - କାହାର କେଜାଣି ଗୋଟିଏ ଗୁରି ପାଞ୍ଚ ବର୍ଷର ଛୁଆ ଭୁଲରେ ମତେ ନାନୀ ବୋଲି ଡାକି ମୋ ହ ହାତକୁ ଧରି ଝିଙ୍କି ଦେଲା ଯେ ମୋର ଆଠପଟ ଯାକ ଚୁଡ଼ି ଭାଙ୍ଗି ଚୂନା ହୋଇଗଲା ।

ସୁମନ୍ତ—ସେଇଠୁ ?

ମାଳା—ମୀରା ସେଇଠୁ ଝଟକରି ତା ହାତରୁ ଗୁରିପଟ ଚୁଡ଼ି କାଢ଼ି ମୋ ହାତରେ ପିନ୍ଧେଇ ଦେଲା । ଭାରି ଭଲ ଝିଅଟିଏ ଏକା ଏଇ ମୀରା !

ସୁମନ୍ତ—କାହା ଘରେ କେହ୍ନ ମନ୍ଦ ଝିଅ ଜନ୍ମ ହୁଅନ୍ତି ଏ କଥା ମୁଁ ଗୁହେଁନା । ସେ ଯଦି ତତେ ଚୁଡ଼ି ଗୁରିପଟ ଦେଇଚି—ତୁ ଗୁରିପଟ ଚୁଡ଼ି କଣି ତା'ଘରକୁ ପଠେଇ ଦେ—କାମ ତୁଟି-ଯିବ ।

ମାଳା—ଏଇଆ ତମେ ବୁଝିଲ ବାପା ? ସେ ମୋଠୁ ଚୁଡ଼ି ନବ ? ମୁଁ ଏକଥା ତାକୁ କାଲି କହିଲି ବୋଲି ପରା, ତା ବଡ଼ ଭାଇ ସେଠି ଥିଲେ—କେତେ ଦୁଃଖ କଲେ ।

ସୁମନ୍ତ—ତୋର ଏବେ ଦୁଃଖ କ'ଣ ମତେ କହ ! ହଇରେ ଫେଲୁ, ତୁ କାଇଁକି ଏଠି ଠିଆ ହୋଇଚୁ ?

ଫେଲୁ—ବାବୁଲର ବଡ଼ଭାଇ—ନରସିଂହ ସାହୁ । ତାଙ୍କର ଆଜ ଜନ୍ମଦିନ । ମତେ ଖାଇବାକୁ ଡାକିଚନ୍ତି ।
ସୁମନ୍ତ—କହିଲ ପରା—ଯିବୁ ।
ଫେଲୁ—ସେ ନରସିଂହ ସାହୁ ଆମ ସ୍କୁଲରେ ପଢ଼ନ୍ତି ।
ସୁମନ୍ତ – ମାନେ ?
ଫେଲୁ—ଏଥର ଟେଷ୍ଟ୍ ପରୀକ୍ଷା ଦେଇଚନ୍ତି ।
ସୁମନ୍ତ—ସେଇଠୁ ?
ଫେଲୁ – ତାଙ୍କ ରୋଲନମ୍ବର ବାଇଶି ।
ସୁମନ୍ତ—ଅଙ୍କ ପରୀକ୍ଷାରେ ଖରାପ କରିଚନ୍ତି ?
ଫେଲୁ—ହଁ ।
ସୁମନ୍ତ—ଆଉ ମା ମାଳା, ତୁ କ'ଣ କହୁଚୁ ?
ମାଳା—ମୀରାର ବଡ଼ଭାଇ ମହେଶ—ମହେଶ ମହାପାତ୍ର ।
ସୁମନ୍ତ—ସେ'ବି ମୋର ଛାତ୍ର ?
ମାଳା—ହଁ ।
ସୁମନ୍ତ—ତାଙ୍କ ରୋଲ ନମ୍ବର ?
ମାଳା—ତେଇଶି ।
ସୁମନ୍ତ—ସେ'ବି ଅଙ୍କରେ······
ମାଳା—ମୋଟେ କୁଆଡ଼େ ପଚିଶ ନମ୍ବର ଠିକ୍ ହୋଇଚି ।
ସୁମନ୍ତ—ଆଉ ତମେ ଦୁହେଁ ତମ ବନ୍ଧୁଙ୍କ ଗୁଣବନ୍ତ ଭାଇମାନଙ୍କ ପାଇଁ ଓକିଲାତି କରିବାପାଇଁ ଅଣ୍ଟା ଭିଡ଼ି ଠିଆ ହୋଇଚ, ନା ? ମାଳା ! ଚୁପ୍‌କରି ଯା—ତୋ ଘରେ ବସି ସିଲେଇ କର । ଆଜି ଦିନ ଦି'ଟା ଯାଏ ତୁ ସେ ଘରୁ ପଦାକୁ ବାହାରି ପାରିବୁ ନାହିଁ । ଯା—
ମାଳା—ଯାଉଚି । (କାନ୍ଦ କାନ୍ଦ ହୋଇ ଗୁଲିଗଲା)
ସୁମନ୍ତ—ଫେଲୁ !

ଫେଲୁ—ଆଜ୍ଞା ।

ସୁମନ୍ତ—କାନଧରି ଖଟ୍‌ଟାରେ ଯାଇ ଠିଆ ହ ! ଯା' କହୁଚି (ଫେଲୁ କାନ୍ଦୁଥାଏ ଗାୟତ୍ରୀ ଆସିଲେ)

ଗାୟତ୍ରୀ—ଓଃ । କଣ ହେଉଚି ? ମାଷ୍ଟର ହେଉଚ ବୋଲି କଣ ନିଜ ଘରେ ଝୁଅ।ପୁଅଙ୍କୁ ଏମିତି ଦଣ୍ଡ ଦେବ ? ଯା' ଫେଲୁ , ତୁ ଯା । (ଫେଲୁର ପ୍ରସ୍ଥାନ)

ସୁମନ୍ତ—କଣ କହୁଚ ହୋ ତମେ ! ମତେ ସ୍ତ୍ରୀ ସବ୍‌ଟ ଲାଞ୍ଚ ଦେଖେଇ ଫେଲ୍ ପିଲାପୁଅଙ୍କୁ ପାଶ୍ କରେଇ ଦେବେ ବୋଲି ବସିଚନ୍ତି ! !

ଗାୟତ୍ରୀ—ପିଲା ଲୋକ—ତାଙ୍କର କଥା ଧରୁଚ ? ପାନ ଆଣି ଦେଲେ କି ?

ସୁମନ୍ତ ହଁ । ସେ କିଏ—ସେଠି ଠିଆ ହେଉଚନ୍ତି ?

ଗାୟତ୍ରୀ—ଆମ ଗାଁରୁ ଆସିଚନ୍ତି—ସାଇ ଭାଇରେ ମୋର ଦାଦା ହେବେ—ଅଭିରାମ ଦାଦା —ତମର ହେବେ ଖୁଡ଼ୁତାଶୁର ।

ସୁମନ୍ତ—ସେତିକି ହିସାବ କଣ ମୁଁ ବୁଝି ପାରୁନି । ସେ ସେଠି ଠିଆ ହେଉଚନ୍ତି କାହିଁକି ? ତାଙ୍କୁ ଡାକୁନ ଏଠିକି (ଅଭିରାମଙ୍କୁ) ଆସନ୍ତୁ ଆଜ୍ଞା (ଅଭିରାମ ଆସିଲେ), ନମସ୍କାର ।

ଅଭି—ନମସ୍କାର । ମୁଁ ଆସିଥିଲି···

ସୁମନ୍ତ—ବସନ୍ତୁ ! ଏଇ ନିଅନ୍ତୁ—ପାନ

ଅଭି—ଦେଇଚି ବାବୁ—ମା' ମୋର ପାନ ଦେଇଚି ।

ସୁମନ୍ତ—କୁଆଡ଼େ କେମିତି ଚାଲି ଆସିଲେ ?

ଅଭି—ନାହିଁ ବାବୁ—ମଝିରେ ମଝିରେ ମୁଁ ଏମିତି କଟକ ଆସେ । ତମକୁ ଦେଖିବାକୁ ଟିକେ ଏଠିକି ଚାଲି ଆସିଲି ।

ସୁମନ୍ତ—ଆଉ ସବୁ ଖବର ଭଲ ?

ଅଭି—ହଁ ବାବୁ—ସବୁ ଭଲ । ଏ ବର୍ଷ ଫସଲ ତ—

ସୁମନ୍ତ—ଏବର୍ଷ ଫସଲ ତ ଭଲ ହୋଇଚ ।
ଅଭି—ହଁ, ହୋଇଚ । ତେବେ ବର୍ଷା କଞ୍ଚାଟା ଖାଇଗଲା ।
ସୁମନ୍ତ—ଆଳୁ, କୋବି ରବି ଫସଲ ?
ଅଭି—ହୋଇଚ ସେମିତି ।
ସୁମନ୍ତ—ହୁଁ ।

(ପ୍ରକୃତ କଥାଟା ପକେଇବାକୁ ଗାୟତ୍ରୀ ଅଭିରାମଙ୍କୁ ଇଙ୍ଗିତ ଦେଉଥା'ନ୍ତି —କିନ୍ତୁ ଅଭିରାମ ସେପରି ସାହସ କରିପାରୁ ନ ଥା'ନ୍ତି )

ଅଭି—ଏ ଘର ଭଡ଼ା ନେଇଚ ?
ସୁମନ୍ତ—ହଁ । ମାସକୁ ଷାଠିଏ ଟଙ୍କା ।
ଅଭି—ଭଲ ଘର । ବେଶ୍ ହୋଇଚ ।
ସୁମନ୍ତ—କଟକରେ ଆଉ କୋଉଠି କଣ କାମ ଅଛି ?
ଅଭି—କାମ—? ନଁ—ନାହିଁ କଣ ?
ଗାୟତ୍ରୀ—ହଁ—କ କାମରେ ପରା କଟକ ଆସିଚନ୍ତି ।
ସୁମନ୍ତ—ବେଶ୍ତ ! ଏଠି ଗାଧେଇ ପାଧୋଇ, ଖିଆପିଆ କରନ୍ତୁ—ତା'ପରେ ଯୁଆଡ଼େ ଯିବାର କଥା ଯିବେ । ଆରେ ମଧୁ, ଦାଦାଙ୍କୁ ଗାଧେଇବାକୁ ପାଣି ଦେ ।
ଅଭି—ହଉ ବାବୁ । ଏଠି ବସିଲେ ତମ କାମ ମାଟି ହଉଚ । ମୁଁ ଯାଇ ଗାଧୋଇ ପଡ଼େ । (ପ୍ରସ୍ଥାନ)
ସୁମନ୍ତ—ହଠାତ୍ ଅତିଥିଙ୍କର ଆଗମନ ?
ଗାୟତ୍ରୀ—ଏମିତି ବୁଲି ଆସିଥିଲେ । ମୁଁ ଅଟକଉଥିଲି ଯେ—ନାହିଁ ନାହିଁ ହଉଥିଲେ ! ତମେ କହିଲାରୁ ରାଜି ହେଲେ । ତମ ଖାତା ଦେଖା ସରିଲା ?
ସୁମନ୍ତ—ଏ ଜନ୍ମରେ ସରିବ ନାହିଁ । ଆଚ୍ଛା ଗାୟତ୍ରୀ, ତମେ କେତେ ଯାଏ ପାଠ ପଢ଼ିଥିଲ ?

ଗାୟତ୍ରୀ—ନିମ୍ନ ପ୍ରାଥମିକ ବୃତ୍ତିପାଇଁ ବର୍ଗ୍ଗବନ୍ଧୁ ପରୀକ୍ଷା ଦେଇଥିଲି ପରା ।

ସୁମନ୍ତ—ଆଚ୍ଛା ଦେଖିଲି—ଏଇଟା କି ଚିହ୍ନ ?

ଗାୟତ୍ରୀ—ଦେଖି । ଗୁଣନ ଚିହ୍ନ ପରା !

ସୁମନ୍ତ—ଠିକ୍ କହୁଚ ?

ଗାୟତ୍ରୀ—ନାଇଁ ନାଇଁ—ଯୁକ୍ତ ଚିହ୍ନ ।

ସୁମନ୍ତ—ଠିକ୍ ?

ଗାୟତ୍ରୀ—ଏଁ ! କଣ ଏମିତି ମତେ ପରୀକ୍ଷା କରୁଛମ ? ଦେଖି — ଏଇଟା ଗୁଣନ ଚିହ୍ନ ହବନା କଣ ?

ସୁମନ୍ତ—ଗୁଡ଼ । ତମେବି ସେଇ ଗୋଲକଧନ୍ଦାରେ ପଡ଼ିଲଣି ।

ଗାୟତ୍ରୀ—କଣ ହେଇଚି ?

ସୁମନ୍ତ—ଆଚ୍ଛା ଦୁଇ ଯୁକ୍ତ ଦୁଇ କେତେ ?

ଗାୟତ୍ରୀ—ଚାରି ।

ସୁମନ୍ତ—ଦୁଇ ଗୁଣନ ଦୁଇ ?

ଗାୟତ୍ରୀ—ଚାରି ।

ସୁମନ୍ତ—ଏ ଅଙ୍କ ଖଣ୍ଡିକର ଉତ୍ତର ଚାରି ହବାର କଥା । ପିଲାଟା ଚାରି କରିଚି । ଧାରା ଅନୁସାରେ ଏଠି ଦୁଇ ଗୁଣନ ଦୁଇ ହବାର କଥା । ଅଥଚ ଏ ବଦମାସ ଟୋକା ଏ ଯୋଡ଼ ଚିହ୍ନ ଦେଇଚି—

ଗାୟତ୍ରୀ—କିଏ ସେ ପିଲା ?

ସୁମନ୍ତ—କ'ଣ ତା ନାଁ'ଟି ? (ଖାତାଦେଖି) ହଁ, ସୁନାରାମ ଦାସ । ଫେଲ ଏକଚାଳଣି । ଏ ଅଙ୍କ ଖଣ୍ଡିକରେ ପୁରା ନମ୍ବର ନପାଇଲେ ସେ ପାଶ କରି ପାରୁନି ।

ଗାୟତ୍ରୀ—ହେ, ସେଇ ପିଲାଟି । ତାକୁ ପାଶ୍ କରେଇ ଦିଅ ।

ସୁମନ୍ତ—ମାନେ ?

ଗାୟତ୍ରୀ—ଦୁଇରେ ଦୁଇ ଗୁଣିଲେ ଚାରି—ଦୁଇ ମିଶିଲେ ଚାରି । ଏଥିରେ ଦୋଷ କିଛି ନାହିଁ । ତାକୁ ପାଶ୍ କରେଇ ଦିଅ ।

ସୁମନ୍ତ—ଆଚ୍ଛେ ସେ କିଏ ?

ଗାୟତ୍ରୀ—ସୁନାରାମ ପରା ! ଏଇ ଅଭିରାମ ଦାଦାଙ୍କ ପୁଅ । ତା'ରି କଥା ତମକୁ କହିବେ ବୋଲି ଖାସ୍ କଟକ ଆସିଚନ୍ତି । ଦେଖିଲ ତ କେଡ଼େ ନିରୀହ ଲୋକ—ତମ ପାଖକୁ ଆସିବି, ତମକୁ କିଛି କହି ପାରିଲେ ନାହିଁ । ଭାରି ଭଲ ଲୋକ !

ସୁମନ୍ତ—ଯୁଆଙ୍କୁଇ ତମେ ଯୁଆ' ପୂର୍ବରୁ ଦୁଇଥର ଫେରାଇ ଦେଇଥିଲ ?

ଗାୟତ୍ରୀ—ହଁ ।

ସୁମନ୍ତ—ସୁନାରାମକୁ ପାଶ୍ କରେଇ ଦେଲେ ତମେ ମତେ କଣ ଲାଞ୍ଚ ଦେବ ?

ଗାୟତ୍ରୀ—କି'କଥା ଯେ କୁହ ?

ସୁମନ୍ତ—ଆଚ୍ଛା ! ଅଭିରାମ ଦାଦା ତମକୁ କ'ଣ ଦେବେ ?

ଗାୟତ୍ରୀ—ମଲା, ବନ୍ଧୁ ବାନ୍ଧବ ଲୋକ—ଦେବେ କ'ଣମ ? କହିଛନ୍ତି —ଆମ ମାଳା ପାଇଁ ଭଲ ବରପାତ୍ରଟିଏ ଠିକ୍ କରି ଦେବେ ।

ସୁମନ୍ତ—ହୁଁ ( ବସ୍ତାକୁ ଚାହିଁ ) ଏ ରିକ୍ସା ।

[ ଖାତା ପତ୍ର ଧରି ଉଠିଲେ ]

ଗାୟତ୍ରୀ—ଏ କ'ଣ, ଖାତାପତ୍ର ଧରି କୁଆଡ଼େ ବାହାରିଲଣି ?

ସୁମନ୍ତ—ସ୍କୁଲକୁ । ମା', ପୁଅ, ଝିଅ ତିନିହେଁ ଯେଉଁ ବେଳେ ଓକିଲାତି କଲଣି ମୁଁ ତ ଆଉ ଜଜ୍ କି ମାଜିଷ୍ଟ୍ରେଟ୍ ନୁହେଁ ଯେ ଏଠି ବସି କାମ କରିବ ? ସ୍କୁଲକୁ ଯାଉଚି—ସେଇଠି ଖାତା ଦେଖି, ନମ୍ବର ଦାଖଲ କରି ରାତି ଦଶଟାରେ ଘରକୁ ଫେରିବି । ···ଯାଉଚି ।

( ଚାଲିଗଲେ । ଗାୟତ୍ରୀ ହତବାକ୍ ହୋଇ ଚାହିଁ ରହିଥା'ନ୍ତି )

———

# ପୂରାପୂରି ପାରିବାରିକ

# ପ୍ରିୟବାବୁ ଅଡ଼ିଟରଙ୍କ ପରିବାର

**ଏ ପରିବାରରେ ଅଛନ୍ତି :**

ପ୍ରିୟବାବୁ ଗୃହସ୍ୱାମୀ (ବୟସ ୩୨ ବର୍ଷ)

ସ୍ୱର୍ଣ୍ଣ—ତାଙ୍କ ପତ୍ନୀ (ବୟସ ୨୭ ବର୍ଷ)

ରାନୁ—ତାଙ୍କ କନ୍ୟା (ବୟସ ୮ ବର୍ଷ)

କୁଞ୍ଜ—ତାଙ୍କ ଭୃତ୍ୟ

ଓ

ବନ୍ଟୁ—ରାନୁର ସମବୟସ୍କ ସାଥି

ମୀରା—ଜଣେ ଡାକ୍ତରାଣୀ

( ଏ ଛବିର ରଚନାକାଳ—ମାର୍ଚ୍ଚ ୧୯୫୯ )

# ପ୍ରିୟବାବୁ ଅଡ଼ିଟରଙ୍କ ପରିବାର

## ପ୍ରଥମ ଦୃଶ୍ୟ

[ ପ୍ରିୟବାବୁଙ୍କ ଗ୍ରାମ୍ୟ ବାସଭବନର ଅଗଣା । ସମୟ ଅପରାହ୍ଣ । ଅଗଣାରେ କଣେଇ ବାହାଘର ଉପଯୋଗୀ ବେଦୀ ପ୍ରସ୍ତୁତ କରାଯାଇଛି । ବେଦୀ ଉପରେ ବର ଓ କନ୍ୟା ବେଶରେ ଦୁଇଟି କଣେଇ ଶୋଭା ପାଉଛନ୍ତି । ଉପସ୍ଥିତ ପ୍ରିୟବାବୁଙ୍କ ସାତଆଠ ବର୍ଷ ବୟସର ଝିଅ ରାନୁ, ତା'ର ସମବୟସ୍କ ଶିଶୁସାଥି ବଜୁ ଓ ପ୍ରିୟବାବୁଙ୍କ ଭୃତ୍ୟ କୁଞ୍ଜ ]

ବଜୁ— ସ୍ତା'ପରେ କ'ଣ ହବରେ କୁଞ୍ଜ ?

କୁଞ୍ଜ— କଣ ଆଉ ହବ ? ସବୁତ ହେଲା, ଆଉ ପୁଣି କଣ ହବ ?

ରାନୁ—ବାହାଘର ତା'ହେଲେ ସରିଲା ?

କୁଞ୍ଜ—ହଁ ।

ବଜୁ—କେତେ ଚଞ୍ଚଳ ଏ ବାହାଘର ସରିଗଲା—ନା ରାନୁଅପା ?

ରାନୁ—ଚଞ୍ଚଳ ଚଞ୍ଚଳ ସରିଯିବା ଭଲରେ ବଜୁ । ତୋ'ର ସିନା ପୁଅ ପକ୍ଷ—ଝଂଝଟ କିଛି ନାହିଁ । ପୁଅ ପୁଣି ତୋ'ର ବେଦୀକି ଆସିଲା ବେଳେ ଦ' ଗିଲାସ ଦହି ସରବତ ପିଇ ଦେଇଥିଲା ଯେ, ତାକୁ ବାଧୁ ନାହିଁ ।

ବଜୁ—ମିଛ କଥା । ହଇରେ କୁଞ୍ଜ, ବର ବେଦୀକି ଆସିଲା ବେଳେ ସବତ ପିଇଥିଲା ?

କୁଞ୍ଜ—ପିଇଥିବେ ।

ବଜ୍ରୁ—ତୁ ଦେଖିଚୁ ?

କୁଞ୍ଜ—ମୁଁ ନ ଦେଖିଲେ କ'ଣ ହେଲା—ନିଜେ ତାଙ୍କ ଶାଶୂ ପରା କହୁଚନ୍ତି !

ରାନୁ—ମିଛରେ କ'ଣ କହୁଚ ? ବର ଯେମିତି ଆସି ପହଞ୍ଚିଲା ମୁଁ ପରା ନିଜେ ସରବତ ତିଆରି କରିନେଇ ତାକୁ ପିଆଇଲି । ଗିଲାସେ ନୁହଁ ପୁଣି ଦ'ଗିଲାସେ । ··ହେଲେ ମୋ ଝିଅ ପେଟରେ ପାଣି ଟୋପାଏ ବି ଦେଇନି । ବାହାଘର ସରିଲାଣି ଏଇନେ ଯାଉଚ କ'ଣ ତାକୁ ଠିକେ ଖାଇବାକୁ ଦେବ ।

ବଜ୍ରୁ—ହେଲେ ଏଡ଼େ ଚଞ୍ଚଳ ବାହାଘର କେମିତି ସରିଗଲା । ମୁଁ ବୁଝିପାରୁନି ରାନୁଅପା ! ଏଇ କୁଞ୍ଜ କୋଉଠି କ'ଣ ଗୋଳମାଳ କରିଦେଲା ।

କୁଞ୍ଜ - କ'ଣ କହିଲ ବାବୁ ? ଏଇ ହାତରେ ମୁଁ ଶଏ କ ହ'ଶ ବାହାଘର କରିଥିବି ! ତମ ପୁଅ ବାହାଘରରେ ମୁଁ ପୁଣି ଗୋଳମାଳ କରିଦେଲି ।

ବଜ୍ରୁ— ଆଚ୍ଛା, ବାଟବରଣି ହେଇଚ ?

(କୁଞ୍ଜ ଓ ରାନୁ ହସି ଉଠିଲେ)

ବଜ୍ରୁ—କ'ଣ ! ହସୁଚ କାଇଁକି ?

କୁଞ୍ଜ—କଉ ବାବୁ —ହାତଗଣ୍ଠି ପଡ଼ି ଲଜ୍ଜା ହୋମ ହେଲାଣି—ତମେ ବାଟବରଣି କଥା କ'ଣ କହୁଚ ? ବର ପରା ଘରେ ନ ପଶୁଣୁ ବାଟବରଣି ହେଇଥିଲା ! ତମର ମନେ ନାହିଁ ?

ବଜ୍ରୁ—ଆଉ ତା'ହେଲେ ସେଇଠାକୁ ଆଉ ଗୋଟିଏ କ ବରଣି କହନ୍ତି ! ତୁ ଜାଣିଚୁ ରାନୁ ଅପା ?

ରାନୁ—ମୁଁ କଣ୍ଡ ଜାଣିନି ।

କୁଞ୍ଜ—ମୁଁ କହୁଚି ଶୁଣ ବଜୁବାବୁ - ସବୁ ବରଣି, ସବୁ କର୍ମ ସରି ବାହାଘର କାମ ବଢ଼ିଗଲାଣି । ଏଣିକି ଖାଲି ବର କନ୍ୟା ବନ୍ଦା ହେବା କଥା ।

ବଜୁ—ହୁଁ, ଅସଲ କାମ ତା'ହେଲେ ସେଇଠି । ଦେ' ଗନୁ ଅପା—ଏଥର ବର କନ୍ୟା ବନ୍ଦା କର ।

ଗନୁ—ଏଇ ସାଙ୍ଗେ ସାଙ୍ଗେ ?

ବଜୁ—ହଁ, ଆଉ ଡେରି କରିବୁ କାହିଁକି ? ନା କ'ଣରେ କୁଞ୍ଜ ?

କୁଞ୍ଜ—ହଁ ଗନୁ ଦେଈ । ସଅଳ ସଅଳ ବନ୍ଦା କରିଦିଅ, ନଇଲେ ପୁଣି ବର ଯାତ୍ରୀଙ୍କି ଆଉ ବକତେ ଖାଇବାକୁ ଦେବାକୁ ପଡ଼ିବ ।

ବଜୁ—ଗନୁ ଅପା, ତୋ ଯୌତୁକ ଜିନିଷ ସବୁ ବାହାର କର ତ । କ'ଣ କ'ଣ ଯୌତୁକ ଦଉଚୁ ମୁଁ ଆଗେ ଦେଖେଁ ।

ଗନୁ—ଦେ କୁଞ୍ଜ—ଯୌତୁକ ଜିନିଷ ସବୁ ବାହାର କର ।

କୁଞ୍ଜ—ଏଇ ପରି ସବୁ ଏଠି ଥୁଆ ହେଇଚି । ମଟର, ରେଡ଼ିଓ, ଗ୍ରାମ-ଫୋନ୍, ଟ୍ରଙ୍କ, ସୁଟ୍‌କେଶ୍ । ଦେଈ ଆମର କେଉଁଥିରେ ଆଉ ଊଣା କରିଚନ୍ତି କି ? ସବୁ ଜିନିଷ ଭରପୁର । (ଏ ସମସ୍ତ ଖେଳଣା ଜିନିଷ ଆସିଲା)

ବଜୁ—ଗନୁ ଦେଈ ଭାରି ଚୂଲକ । ସବୁ ଜିନିଷ ଆଗରୁ ଯୋଗାଡ଼ କରି ରଖିଥିଲା । ସେଥିପାଇଁ ସବୁ ପୁରୁଣା ଜିନିଷ ଦେଇ ଠକି ଦେଇଚି ।

ଗନୁ—ଠକି ଦେଇଚି ! ଗୋଟିଏ ବାକ୍‌ସରେ ବାକ୍‌ସେ ଜିନିଷ ଦେଲଣି—କହୁଚି କ'ଣ ନା ଠକି ଦେଇଚି । ହଉ ଦେଖିବା ଯେ, ତୋ ଝିଅକୁ ତୁ ବାହା କଲାବେଳେ କଣ ଯୌତୁକ ଦବୁ ଦେଖିବା ?

ବଜୁ—ମୋର ଝିଅ କାହିଁ ଯେ ବାହାହେବ ?

ଗନୁ—କହୁଥିଲୁ ପରା ଏଇ ବୋଲ ପୂଜଅଁକୁ ଆମ ଗାଁ ମେଲଣରୁ ଗୋଟାଏ ଝିଅ କଣିବୁ—ଗୋଟାଏ ଜାପାନୀ ଝିଅ ।

ବଜୁ—ଆଚ୍ଛା ସେ କଥା ପରେ ବୁଝାଯିବ । ଡେରି ହୋଇ ଯାଉଚ, ଭୁ ଝିଅଜ୍ୱାଇଁଙ୍କୁ ବଦାକଲୁ ।

ଗନୁ—ମୋ'ର ଆଉ ଡେରି କ'ଣ କ ? ଝିଅ ତ ତୋରଣି ଟୋପେ ପିଇ ସାରଲଣି । ଜନକ ପଦତ ସବୁ ହୋଇ ବାହାର କର ରଖିଚ ।

ବଜୁ—ହେ କୁଞ୍ଜ—ସବାରି ଉଠା ।

କୁଞ୍ଜ—ଝିଅ ଜ୍ୱାଇଁ ଗୋଟିଏ ସବାରିରେ ଯିବେ ବଜୁବାବୁ ?

ବଜୁ—ହଁ, ଗୋଟାଏ ସବାରିରେ ।

କୁଞ୍ଜ—ହଉ ଚାଲ ।

ଗନୁ—ଯାଉଚୁ ଲୋ ମା ? ଯା । ଭଲରେ ଘର-ଦୁଆର କରିବୁ । ତିନ ବର୍ଷ ହେଲା—କେଡ଼େ ସଉକରେ ତୋତେ ପାଳ ଥିଲଟି ! ତୋ' କଥା ମନେ ପକେଇ ଆଜ ମୋ' ପାଟିକୁ ଭାତ ଯିବ ନାଇଁ ।

କୁଞ୍ଜ—ଝିଅ ଜନମ ତ ପରଘରକୁ ଗନୁ ଦେଈ ! ଆଉ ମନଦୁଃଖ କଲେ କ'ଣ ହବ ? ଚାଲ ବଜୁବାବୁ—ଗାଁ ଏ ମୁଣ୍ଡରୁ ସେ ମୁଣ୍ଡ—ଗଦାଏ ବାଟ । ପୁଣି ମୁଁ ଏ ହାତେ ଲମ୍ବ ଚାଖଣ୍ଡେ ଉସାରର ସୁଆରି କାନ୍ଧେଇ କରିଯିବ ! ଚାଲ ।

(କୁଞ୍ଜ ସବାରି ଉଠେଇଲା)

ବଜୁ—ହେ—ହେ—ହେ କୁଞ୍ଜ ! ସବାରି ରଖ ।

କୁଞ୍ଜ—କ'ଣ ହେଲା ବାବୁ !

ବଜୁ—ଆଲୋ ଗନୁ ଅପା ସବୁତ ଦେଲୁ—ଝିଅ ସାଙ୍ଗରେ ଧାଈମା କାହିଁ ?

ଗନୁ—ଧାଈ ମା ?

ବଜ—ବାଃ ! ଝିଅ ସାଥିରେ ଧାଇ ମା ଯାଏ, ଏକଥା କ'ଣ ତୁ ଜାଣିନୁ ? ଆମର କରଣ ଘର—ଝିଅଟାକୁ ତୁ ଏକୁଟିଆ ଶାଶୁଘରକୁ ପଠେଇବୁ !

ସନୁ—ହଁ, ମୁଁ ଏକୁଟିଆ ପଠେଇବି । ସାଥିରେ ତ ବର ଯାଉଚି, ତୁ ଯାଉଚୁ, କୁଞ୍ଜ ଯାଉଚି—

ବଜ—ଆମେ ସବୁ ଗଲେ କ'ଣ ହେଲା ? ଧାଇ ମା ଯିବା ଦର୍କାର ଯେ ।

ସନୁ—ଦର୍କାର ହେଲେ ତୁ ଗୋଟାଏ ଧାଇ ମା କୋଉଠୁ ଆଣ, ମୋ ପାଖରେ ଧାଇ ମା ନାହିଁ ।

ବଜ—ନାହିଁ କ'ଣ କହୁଚୁ ? ତୋ' ଆଲ୍‌ମାରିରେ ସେଥିପାଇଁ କଣ୍ଢେଇ ଭର୍ତ୍ତି—ନାହିଁ କ'ଣ କରୁଚୁ ?

ସନୁ—ସେ କଣ୍ଢେଇରେ ମୋର ଧାଇ ମା କେହି ନାହାନ୍ତି ।

ବଜ—ଯାହାକୁ ତ ହେଲେ ଗୋଟାଏ ଧାଇମା ସଜେଇ ପଠେଇ ଦବୁ—ନାହିଁ—ନାହିଁ କ'ଣ ହଉଚୁ ?

ସନୁ—କହିଲି ପରା ମୁଁ ଧାଇ ମା ଦେବିନାହିଁ—

ବଜ—ଏଇ ବର୍ଷ ମକର ଯାତ୍ରାକୁ ତୋର ଯୋଉ ମାଟି କଣ୍ଢେଇଟାକୁ କିଣିଥିଲୁ—ସେଇ ଯୋଉ ଢେଙ୍ଗୀ, ମୋଟି—

ସନୁ—ଆଲମାରିରୁ ଖସିପଡ଼ି ମୋଟିର ଗୋଟାଏ ଗୋଡ଼ ଭାଙ୍ଗିଯାଇ ସେ ବୁଢ଼ୀଟି ହେଇଗଲାଣି—

ବଜ—ହଉ, ଦଉନୁ ସେ ବୁଢ଼ୀଟାକୁ । ଧାଇ ମା କାମ ସେ ଚଳେଇ ନବ ଯେ !

ସନୁ—ନାଇଁ—ନାଇଁ—ଏତେ କଣ୍ଢେଇ ଭିତରେ ମୋର ସେଇ ଗୋଟିଏ ବୁଢ଼ୀଟି କଣ୍ଢେଇ— ତାକୁ ମୁଁ ଦେଇ ଦେବି ?

ବଜ—ତା'ହେଲେ ତୁ ଧାଇ ମା ଦେବୁ ନାଇଁ ?

ଗନୁ—ନା ।

ବନୁ—ହଇରେ କୁଞ୍ଜ—ତୁ କହିଲୁ ! ଝିଅ ସାଥିରେ ଧାଈ ମା ଯିବ କି ନାହିଁ ?

କୁଞ୍ଜ—ଯିବାର ତ କଥା ?

ଗନୁ—କ'ଣ ଯିବାର କଥା ? ଧାଈ ମା ଯାଇ କ'ଣ କରିବ ?

କୁଞ୍ଜ—ଝିଅ ତମର ଶାଶୁ ଘରକୁ ନୂଆବୋହୂ ହୋଇ ଯାଉଚି, ସେଠି ତାକୁ ଚଳେଇବ କିଏ ?

ଗନୁ—କେହି ଚଳେଇବା ଦର୍କାର ନାହିଁ—ଝିଅ ମୋର ମନକୁ ଚଳିଯିବ ।

କୁଞ୍ଜ—ଏଇନେ ସିନା ମନକୁ ଚଳିଯିବ । ପଛକୁ ?

ଗନୁ—ପଛକୁ ପୁଣି କ'ଣ ?

କୁଞ୍ଜ—ଝିଅର ଯେତେବେଳେ ପିଲାପିଲି ହେବେ ?

ଗନୁ—ହାଠ୍ ! କହିଲ କ'ଣ ନା ପିଲାପିଲି ହେବେ !! ହେଲେ ତ ହେବେ, କ'ଣ ହୋଇଗଲା ସେଇଠୁ !

କୁଞ୍ଜ—ସେତେବେଳକୁ ପୁଣି ତମ ଝିଅ କଥା ବୁଝିବ କିଏ ?

ଗନୁ—ଥରେ ପରା କହିଲି—ତା କଥା ସିଏ ବୁଝିବ ! ନହେଲେ ସେତେବେଳକୁ ସେ କଟକ ବଡ଼ ଡାକ୍ତରଖାନାକୁ ଗଲେଯିବ । କାନଗୋଇଘର ବୋହୂ କେମିତି କଟକ ଡାକ୍ତରଖାନାକୁ ଗଲା ଯେ ସେଇଠି ତା'ର ପୁଅ ଜନ୍ମ ହେଲା ।

ବନୁ—ଏତେ କଥାରୁ ମତେ ମିଳିବ କ'ଣ ? ତୁ ଧାଈମା ଦର୍କା ନାହିଁ କହିଲୁ ?

ଗନୁ—ତୁ ଟା ଏଡ଼େ ଲୋଭିଟାଏ ! ଏଡ଼େ ସୁନ୍ଦର କଣ୍ଢେଇ ବୋହୂଟିଏ ତୋତେ ଦେଲି—ସାଙ୍ଗରେ ଏତେ ଜିନିଷ ଦେଲି—ପୁଣି ତୁ ଲୋଭ କରୁଚୁ ?

ବଜ୍ରୁ—ତାହେଲେ ତୁ ଦବୁ ନାହିଁ ?

ଗନୁ—ନା ।

ବଜ୍ରୁ—ବେଶ୍ । ତା'ହେଲେ ମୁଁ ବୋହୂକୁ ନ ନେଇ ପୁଅକୁ ଫେରାଇ ନେବି । ଏ କୁଞ୍ଜ, ବୋହୂକୁ ସବାରୁ ଓହ୍ଲାଇ ଦେ—

ଗନୁ—କ'ଣ ହେଲା ? ହାତଗଣ୍ଠି ପଡ଼ି ବାହାଘର ହେଇଚି, ବୋହୂକୁ ତୁ ସବାରୁ ଓହ୍ଲାଇଦେଇ ଯିବୁ ?

ବଜ୍ରୁ—ଅଲବତ୍ ! ମୋ ପୁଅ, ମୋ ଇଚ୍ଛା ମୁଁ ଯାହା କରିବି ।

[ସ୍ୱର୍ଣ୍ଣ ଆସିଲେ]

ସ୍ୱର୍ଣ୍ଣ—(ହସିହସି) କ'ଣରେ ବଜ୍ରୁ ! ବାହାହେଲା ବୋହୂକୁ ଛାଡ଼ି ପୁଅକୁ ତୁ ଫେରେଇ ନବୁ ?

ବଜ୍ରୁ—ତେମେ ଦେଖିଲ ମାଉସୀ, ଗନୁଅପା କଥା ! ତା' ଝିଅ ସାଥିରେ ସେ ଗୋଟାଏ ଧାଇମା ଦବାକୁ ମନା କରୁଚି ।

ସ୍ୱର୍ଣ୍ଣ—କାଲେ ଗନୁ, ଝିଅ ବିଦା କରୁଚୁ—ସାଥିରେ ଧାଈଟିଏ ଦବୁନି ?

ଗନୁ—କାହିଁକି ଦେବି ? ମୋର କ'ଣ କଣ୍ଢେଇ ଶସ୍ତା ପଡ଼ିଚି ?

ବଜ୍ରୁ—ଶୁଣୁଚ ଟି ମାଉସୀ ତା'କଥା ।

ଗନୁ—ମାଉସୀ କ'ଣ ଶୁଣିବେ ? ତୁ'ଟା ଯୋଉ ଲୋଭୀ ନା—

ସ୍ୱର୍ଣ୍ଣ—ଆଲେ ଗନୁ, ବରର ବାପ ସିଏ—ତା'ର ତ କନ୍ୟାଘର ସମ୍ପତ୍ତି ଉପରେ ଲୋଭ ହବଇ ହବ ।

ଗନୁ—ମୁଁ ଏବେ ତାକୁ ଜୋଉ କମ୍ ସମ୍ପତ୍ତି ଦେଇଚି କି ? ଅସଲ କଥାଟି ତୁ ଜାଣିନୁ ବୋଉ !

ସ୍ୱର୍ଣ୍ଣ—କଣ ?

ଗନୁ—ତା ପୁଅ—ଏଇ ବର ସ……

ସ୍ୱର୍ଣ୍ଣ—ହଁ ବୁଝିଲି । କଣ ହେଉଚି କହ ।

ସନୁ—ଏଇ ବରକୁ ମିଶାଇ ଚାରି ଶଏ ଅଠରଟା କଣ୍ଢେଇ ଅଛି । ମୋ ଝିଅ ତା ଘରକୁ ଗଲେ ଶଏ ଊଣେଇଶଟା ହବ । ଏଇନେ ଫୁଅଲ୍ ଫସୁଲ କରି ଆଉ ଗୋଟାଏ କଣ୍ଢେଇ ମୋଠୁ ନେଲେ କାଲି ଆମ ଗାଁ ସ୍କୁଲରେ ଯେଉଁ ମୀନା ବଜାର ପ୍ରଦର୍ଶନୀ ହେବ ସେଥିରେ ସଜେଇ ଫାଷ୍ଟ ପ୍ରାଇଜ ଆଣିବ ବୋଲି ବସିଚି ।

ସ୍ୱର୍ଣ୍ଣ—ହେଲା ଏବେ – ତୋ ସାଙ୍ଗ ପିଏ, ତାକୁ ଗୋଟାଏ କଣ୍ଢେଇ ଦେ, ସେ ପ୍ରାଇଜ୍ ଆଣୁ ।

ସନୁ—କାହିଁକି ? ମୁଁ ଦେଲେ ମୋର ଗୋଟାଏ କମ୍ ହେଇଯିବ । ମୁଁ ପୁଣି ପ୍ରଦର୍ଶନୀରେ କଣ ସଜେଇବି ।

ବଜୁ— ଓ, ତୁ ନ ଦେଲେ ମୋର ଯେମିତି ଶଏ କୋଡ଼ିଏଟା କଣ୍ଢେଇ ହବନାହିଁ ?

ସନୁ—ହବ ଆଉ କେଉଁଠି ? ମେଲଣ ତ କାହିଁ କେତେଦିନ ଅଛି – କଣିବୁ କେଉଁଠୁ !

ବଜୁ—ବେଶ୍, ଭଲକଥା ! ତୁ ଧାଇଁ ମା ନ ଦେଲେ ତୋ'ଝିଅକୁ ତୁ ରଖିଥା—ମୁଁ ହେଇ ମୋ ପୁଅକୁ ନେଇ ଗ୍ଲଲି ।

ସ୍ୱର୍ଣ୍ଣ—(ହସୁଥା'ନ୍ତି)

କୁଞ୍ଜ—ବଜୁବାବୁ···ହୋ ବଜୁବାବୁ···ଶୁଣିଯାଅ··· (ଟିକଏ ରହି) ନାଃ, ସେ ହେଇ ପଳେଇଲେଣି ।

ସ୍ୱର୍ଣ୍ଣ—(ହସି ହସି) କରେ କୁଞ୍ଜ···କ'ଣ ଏ କଥା ।

କୁଞ୍ଜ—କୁହ ନାହିଁ ମା—ହ'ଘଡ଼ି ହେଲା ମତେ ଏଠି ଅଟକେଇ ରଖିଚନ୍ତି ସେ···ମୁଁ ବାଟକ ହୋଇ ବେଦୀ ବାନ୍ଧିଲି,— ମହୁରିଆ ହେଇ ମହୁରୀ ବଜେଇଲି – ପୁରୋହିତ ହେଇ ହାତ-ଗଣ୍ଠି ପକେଇଲି—ଶେଷକୁ ଦେଖିଲି ବେଳକୁ ବୋହୁକୁ ଘୁଞ୍ଚି ବର ପଳେଇଲେଣି ।

ସନ୍ତୁ—ହଉ ସେ ପଳଉ । ମୁଁ ଯାଉଚି କନକ ଅପାକୁ ଡାକି ତା’ ପୁଅ ସାଥିରେ ଆଜ ମୋ’ ଝିଅକୁ ବାହା କରେଇ ଦେବି ।
(ସ୍ୱର୍ଣ୍ଣ ଓ କୁଞ୍ଜ ହସୁଥା’ନ୍ତି)

ସ୍ୱର୍ଣ୍ଣ—ଧନ୍ୟ ଲୋ ଝିଅ ! କଣ୍ଣେଇ ବାହାଘରକୁ ତ ଏତେ କଥା ! ସତରେ ଯେଉଁଦିନ ତୋ’ ଝିଅକୁ ତୁ ବାହା କରିବୁ, ସେଇଦିନ ଦେଖିବି—ବରକର୍ତ୍ତାଙ୍କୁ ଏମିତି ଫାଙ୍କି ଦେଇ ବାହା ହେଲା ଝିଅକୁ ଆଉ କାହା ସାଙ୍ଗରେ ବାହା କରେଇ ଦବୁ ?

ସନ୍ତୁ—ହଉ ତୁ ଆସିଲୁ ବୋଉ, ଘର ଭୋକ କଲଣି, କ’ଣ ଖାଇବାକୁ ଦେବୁ । (ପ୍ରସ୍ଥାନ)

ସ୍ୱର୍ଣ୍ଣ—ଚାଲ । ହଇରେ କୁଞ୍ଜ—ବାବୁ ପରା ଆଜ ଆସିବେ ! ତୁ ଷ୍ଟେସନ କେତେବେଳେ ଯିବୁ ?

କୁଞ୍ଜ—ଗାଡ଼ି ତ ଆସିବ ଯାଇ ରାତି ଆଠଟାରେ, ମୁଁ ସଞ୍ଜ ଆଗରୁ ବାହାରିଗଲେ ଠିକ୍ ଗାଡ଼ି ବେଳକୁ ଷ୍ଟେସନ୍‌ରେ ପହଞ୍ଚିବି ଯେ !

ସ୍ୱର୍ଣ୍ଣ—ହଁ, ତୁ କଣ ଦି’ଟା ଖାଇ ଦେଇ ସଞ୍ଜ ଆଗରୁ ବାହାରି ଯା—

ସନ୍ତୁ—(ଦୂରରୁ) ବୋଉ, ଆଇଲୁ ?

ସ୍ୱର୍ଣ୍ଣ—ଚାଲ—ଯାଉଚି ।



# ଦ୍ୱିତୀୟ ଦୃଶ୍ୟ

(ପ୍ରିୟ ବାବୁଙ୍କ ଶୋଇବା ଘର । ସମୟ ରାତ୍ର ପ୍ରାୟ ଦଶଟା । ପ୍ରିୟବାବୁ ଖଟ ଉପରେ ବସିଛନ୍ତି । ଦୃଷ୍ଟି ତାଙ୍କର ଶୂନ୍ୟରେ ନିବଦ୍ଧ । ସ୍ୱର୍ଣ୍ଣ ଅଦୂରରେ ବସି ପାନ ଭାଙ୍ଗୁଥିଲେ । ପାନଭଙ୍ଗା ଶେଷ କରି ଆସି ସ୍ୱାମୀଙ୍କ ହାତରେ ପାନ ଦୁଇଖଣ୍ଡି ଦେଲେ । )

ସ୍ୱର୍ଣ୍ଣ—ନିଅ, ପାନ ନିଅ । (ପ୍ରିୟବାବୁ କିନ୍ତୁ ସେଇଭଳି ଚିନ୍ତାମଗ୍ନ) ଶୁଭୁ ନାହିଁ ନା କଣ ? ପାନ ନିଅ ।

ପ୍ରିୟ—ଏଁ ! ଓ, ପାନ ? ହଁ, ଦିଅ ।

ସ୍ୱର୍ଣ୍ଣ—ଏଇପରା ଦେଲିଣି । ତମ ହାତରେ ।···ଆରେ ! ତମ ହାତରେ ପରା ପାନ ଦେଲିଣି !

ପ୍ରିୟ—(ଈଷତ୍ ବିରକ୍ତ ହୋଇ) ମୁଁ କଣ ଜାଣି ପାରୁନି ଯେ ହାତରେ ତମେ ପାନ ଦି'ଖଣ୍ଡ ଦେଇଚ ବୋଲି ?

ସ୍ୱର୍ଣ୍ଣ—କେଜାଣି, ତମେ ଜାଣିଚ କି ନାଇଁ ?······ଜାଣିଚ ତ, ନ ଖାଇ, ପାନ ଦି'ଖଣ୍ଡ ହାତରେ ଧରି ବସିଚ କାଇଁକି ? କ'ଣ ପାନ ଆଜି କାଲି ଛାଡ଼ି ଦେଲଣି କି ?

ପ୍ରିୟ—ଏଁ ? କିଏ ପାନ ଛାଡ଼ିଦେଲାଣି ?

ସ୍ୱର୍ଣ୍ଣ ଏ ଘରେ ଆଉ କିଏ ଅଛି କେଜାଣି, କାହାକୁ ମୁଁ ଏକଥା କହୁଚି !

(ସ୍ୱର୍ଣ୍ଣ ସ୍ୱାମୀଙ୍କୁ ପାନ ଖୁଆଇ ଦବାକୁ ଉଦ୍ୟତ ହେଲେ)

ପ୍ରିୟ—(ହସି) ଓ !···ନା—ନା, ତମକୁ ଖୁଆଇ ଦବାକୁ ପଡ଼ିବନି—ମୁଁ ନିଜେ ଖାଉଚି ।

ସ୍ୱର୍ଣ୍ଣ—ଏ ଅଭ୍ୟାସ କେବେ ଛାଡ଼ିବ କହିଲ ?

ପ୍ରିୟ—ଏଇ ତମ ହାତରୁ ପାନ ଖାଇବା ଅଭ୍ୟାସ ? ଛାଡ଼ ତ ଦେଖିଲଣି । ବାହାଘରର ପ୍ରଥମ କେଇଦିନ ଅବଶ୍ୟ ତମେ ଖୁଆଇ ନ ଦେଲେ ପାନ ରୁଚୁ ନ ଥିଲା ! କିନ୍ତୁ ଏଇନେତ ଦେଖି

ସ୍ୱର୍ଣ୍ଣ—ମୁଁ ଏଇଆ କହିଲି ?

ପ୍ରିୟ—ଆଉ ? କି ଅଭ୍ୟାସ କଥା ତମେ ତେବେ କହୁଚ ?

ସ୍ୱର୍ଣ୍ଣ—ଏମିତି ଶୂନ୍ୟକୁ ଅନେଇଁ ଗୁରାଏ ଏଣୁ ତେଣୁ ଭାବିବା !! କ'ଣ ଯେ ଏତେ ଭାବ ! ···ଆଉ କଥା, ସବୁ ଚେଣିକ ଥାଉ, ପାଖରେ ମଣିଷଟାଏ ଠିଆ ହୋଇଥିଲେ ବି, ସେ କଥାକୁ ତୁମର ହୋସ୍ ନଥିବ !

ପ୍ରିୟ – ହୁଁ । (ପୁଣି ପୂର୍ବପରି ଅନ୍ୟମନସ୍କ ଭାବ)

ସ୍ୱର୍ଣ୍ଣ—କ'ଣ ? ହୁଁ ଟାଏ ମାରିନେଇ ପୁଣି ସେଇ ଭାବନା ରାଜ୍ୟକୁ ଉଡ଼ିଗଲ ?

ପ୍ରିୟ – ମୁଁ ତ ତମକୁ ସବୁଦିନେ କହି ଆସିଚି ସ୍ୱର୍ଣ୍ଣ, ଯେ ଏ ଯୁଗଟା ହେଲା ଭାବନାର ଯୁଗ !

ସ୍ୱର୍ଣ୍ଣ – ସତେ ଯେମିତି ଆଉ କୋଉ ଯୁଗରେ କେହି କିଛି ଭାବୁ ନ ଥିଲେ, ଚିନ୍ତା କରୁ ନ ଥିଲେ ! ସବୁଯାକ ଭାବନା ଚିନ୍ତା ଖାଲି ଯେମିତି ଏଇ ଯୁଗ ପାଇଁ ଠୁଳ ହୋଇ ରଖା ହୋଇଥିଲା !

ପ୍ରିୟ—ତମେ ଯେଉଁ ଯୁଗକଥା କହୁଚ ସ୍ୱର୍ଣ୍ଣ, ସେ ଯୁଗକୁ କୁହାଯାଉ ଥିଲା—ସୁନାର ଯୁଗ । ସେତେବେଳେ ଲୋକେ ଚିନ୍ତା କରୁଥିଲେ ଯେ ଗଦା ଗଦା ସୁନା ନେଇ ସେ କରିବ କ'ଣ ? ଏତେ ସୁନା ଲୋକର କି ଦରକାରରେ ଆସିବ ? କିନ୍ତୁ ବର୍ତ୍ତମାନ ଲୋକେ ଚିନ୍ତା କରୁଚନ୍ତି ଯେ—ଗଦା ଗଦା ସୁନା ଯେ ଏ ପୃଥିବୀରେ ଥିଲା, ଗଲା କୁଆଡ଼େ ? କିଏ ସେ ନରାଧମ, ସୁନା ସବୁକୁ

ଗାହମାଡ଼ ବସି ଯାଉଛ ? କେମିତି ତା' କବଳରୁ ସେ ସୁନା ଉଦ୍ଧାର ହବ !···ମୋର ଏ କଥାର ମର୍ମ ତମେ ବୁଝିଲଟି ?

ସ୍ୱର୍ଣ୍ଣ—ବୁଝିଲି ।

ପ୍ରିୟ—ସେଇକଥା ମୁଁ କହୁଚ । ଏ ଯୁଗର ଲୋକ ଯଦି ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରତ୍ୟେକ କଥା ଚିନ୍ତା ନକରେ--

ସ୍ୱର୍ଣ୍ଣ—ସୃଷ୍ଟି ତା'ହେଲେ ଓଲଟିଯିବ !!

ପ୍ରିୟ—ସୃଷ୍ଟି ଓଲଟି ନଯାଉରେ, କିନ୍ତୁ ତମର ସୁନାର ଯୁଗ ଆଉ ଲେଉଟି ଆସିବ ନାହିଁ ।

ସ୍ୱର୍ଣ୍ଣ—ହଉ, କି ଚିନ୍ତା—ଭାବନା ତମେ କରୁଚ, କରୁଥା—ମତେ ନିଦ ମାଡ଼ିଲାଣି, ମୁଁ ଶୋଉଚ ।

ପ୍ରିୟ—ସ୍ୱାନୁ ଶୋଇଲାଣି ?

ସ୍ୱର୍ଣ୍ଣ—ହଁ, ତା' ମୁଣ୍ଡୀ ପାଖରେ ଶୋଇଚ ।

ପ୍ରିୟ—ତା' ପଢ଼ାପଢ଼ି କେମିତି ଚାଲିଚ ?

ସ୍ୱର୍ଣ୍ଣ—ତମେ ଆସିଲାବେଳକୁତ ସେ ଚେଇଁଥିଲା । ତାକୁ ପଚାରିଲ ନାହିଁ ?

ପ୍ରିୟ—ମତେ ଯେ ପଢ଼ାକଥା କ'ଣ କହିବ ! ମୁଁ ତ ଘରେ ଗୋଡ଼ ଦେଲାକ୍ଷଣି ସିଏ ତା' କଣ୍ଢେଇ ବାହାଘର ଇତିହାସ ଗାଇ ବସିଲା ।

ସ୍ୱର୍ଣ୍ଣ—ତମେ ଶୁଣିଚଟି ସେ କଣ୍ଢେଇ ବାହାଘର କଥା ! ଝିଅ ସାଙ୍ଗରେ ଧାଇଁ ଗଲା ନାହିଁ ବୋଲି ବଳେ ବାହାହେଲା ବୋହୁକୁ ଛାଡ଼ ବର ଫେରେଇ ନେଇ ପଳେଇଲା (ହସୁଥାନ୍ତି) ଆଉ ଆମ କୁଞ୍ଜି ବୁଦ୍ଧିକି ଶୁଣ—

ପ୍ରିୟ—ମୁଁ ସବୁ ଶୁଣିଚ ।

ସ୍ୱର୍ଣ୍ଣ—କୁଞ୍ଜ ଯାହା କହୁଥିଲା ଶୁଣିଚ—ଯେ, ଧାଈମା ଗଲେ ଛୁଆ ପିଲାଙ୍କୁ ସମାଳିବ । ···ଆଉ କୁଞ୍ଜ କଥା ଶୁଣି ଆମ ରାନୁ ଯାହା କହିଲନା ! ···(ଟିକିଏରହି) ଶୁଣୁଚ ନା ନାହିଁ ମ ? (ହସି ହସି) ରାନୁ କହୁଚି—ପିଲା ଛୁଆ ହେଲେ କଟକ ବଡ଼ ଡାକ୍ତର ଖାନାକୁ ନେଇ ଯିବା ଭଲ······ଏଇ ଦେଖ, ପୁଣି ଗୃହକୁ ଅନେଇ ବସିଲେଣି । ଆଚ୍ଛା, ସତରେ କ'ଣ ସେ ଡାକ୍ତରଖାନାରେ ସବୁ ସୁବିଧା ଅଛି ? ମୋ' ଝିଅ ବେଳେ ମୁଁ ଥରେ ଡାକ୍ତର-ଖାନାକୁ ମୋ ଆଖି ଦେଖେଇବାକୁ ଯାଇଥିଲି ଯେ, ହେଲେ ସେ ଆଡ଼େ କିଛି ବୁଲି ଦେଖିନି ।

ପ୍ରିୟ—ରାନୁର ତା'ହେଲେ ଏଇ ସବୁ ଚର୍ଚ୍ଚା ଚାଲିଚି ?

ସ୍ୱର୍ଣ୍ଣ—ମୁଁ ପଚାରେ ତମକୁ ଡାକ୍ତର ଖାନା କଥା ପଚାରୁଚି !

ପ୍ରିୟ—ମୁଁ ପଚାରୁଚି ରାନୁକଥା । ଏ କଣ୍ଢେଇ ବାହାଘର କଥା ତା' ମୁଣ୍ଡରେ ଢୁକିଲା କେମିତି ? ପୁଣି ମୂଳରେ ଅଛି କିଏ ?

ସ୍ୱର୍ଣ୍ଣ—କଥା ଶୁଣ ! ସାତ ଆଠ ବର୍ଷର ଛୁଆଟା ! ଛୁଆ ପିଲାଙ୍କରତ କଣ୍ଢେଇ ବାହାଘର ଗୋଟାଏ ଖେଳ । ତମ ପିଲା ବେଳେ ତମ କଣ୍ଢେଇ ବାହାଘର କରିନ ?

ପ୍ରିୟ—ଅରେ ପରା ତମକୁ କହିଲି ସେ ଯୁଗ ଆଉ ନାହିଁ ।

ସ୍ୱର୍ଣ୍ଣ—ଓ ! ଏଇକଥା ତା'ହେଲେ ଏଇନେ ଭାବୁଥିଲ ?

ପ୍ରିୟ—ରବିବାର ଖୋରାକ୍ ଯାହା ତମେମାନେ ଜୁଟେଇ ଦେବ, ମଣିଷ ନ ଭାବି ଯିବ କୁଆଡ଼େ ?

ସ୍ୱର୍ଣ୍ଣ—ଆଜି ରାନୁ ବଜୁଙ୍କର କଣ୍ଢେଇ ବାହାଘର ଲାଗିଗଲା ବୋଲି ସେ ଚନ୍ତାରେ ସେ ବହିଁଙ୍କ ଆଖିରେ ନିଦ ନ ଥିବ । ହେଲେ ତାଙ୍କଠୁଁ ତମ ଭାବନା ଯେ ବଳିଗଲାଣି ଦେଖୁଚି ! ରାତି ଆସି ଅଧ ହେଲାଣି—ତମ ଆଖିରେ ନିଦ ନାହିଁ ।···ହଉ, ତମେ

କହୁଥିଲି, ଏଥର ତମେ ଏକା'ବେଳକେ ଗୃହମାସ ଯାଇ ତେଣେ କୁଆଡ଼େ ରହିଲ ?

ପ୍ରିୟ—ବିବାହ ଓ ସନ୍ତାନ ଜନ୍ମ !!! ଏ ଦୁଇଟାର ପ୍ରଭାବ ଆମର ବର୍ତ୍ତମାନର ସମାଜ ଉପରେ କେତେ ତମେ ଜାଣିଚ ସ୍ୱର୍ଣ୍ଣ ?

ସ୍ୱର୍ଣ୍ଣ—ମୁଁ ଯାହା ପଚାରୁଚି କୁହମ ? ତମେ ଗୃହକର୍ମ କଲାବେଳୁଁ କେବେ ହେଲେ ତ ଏକାବେଳେକେ ଗୃହମାସ ଘରକୁ ନ ଆସି ତେଣେ ରହି ନ ଥିଲ ? କୋଉ ଗସ୍ତରେ ଯାଇଥିଲ କି ?

ପ୍ରିୟ—ସରକାରୀ ଗସ୍ତରେ ।

ସ୍ୱର୍ଣ୍ଣ—ମଜା ! ସରକାରୀ ଗୃହକର୍ମ କରୁଚ, ସରକାରୀ ଗସ୍ତରେ ଆଜି ଯା'ନ୍ତ ନାହିଁକି ? ଯୁଆ'ବୋଲି ଏକାବେଳେକେ ଗୃହମାସ ! ଗସ୍ତକୁ ଯିବା ଆଗରୁ ଚିଠି ଲେଖିଥିଲ ମାସେ ଦି'ମାସରେ ଫେରି ଆସିବ ବୋଲି—ଗୃହମାସ ପୁଣି କାହିଁକି ହେଲା ?

ପ୍ରିୟ—ଅର୍ଡ଼ରର୍ ଗୃହକର୍ମ କରି ସେ କୈଫିୟତ୍ କେହି କେବେ କାହାକୁ ଦେଇ ପାରିବ ନାହିଁ ।

ସ୍ୱର୍ଣ୍ଣ - ହେଲା ଏବେ । ···ମୋ ଚିଠି ପାଇଥିଲ ?

ପ୍ରିୟ—ଚିଠି ?

ସ୍ୱର୍ଣ୍ଣ – ମାସେ ଦେଢ଼ମାସ ତଳେ ଖଣ୍ଡେ ଚିଠି ମୁଁ ତମ ପାଖକୁ ଦେଇଥିଲି । ଉତ୍ତର ପାଇଲି ନାହିଁ ବୋଲି ଆଉ ଚିଠି ଲେଖିନି । ···ମନ ମୋର ଯୋଉ ଦକ୍ ଦକ୍ !···ସତରେ ମୋ ଚିଠି ତମେ ପାଇନ ?

ପ୍ରିୟ—ଶୁଣୁଚ ପରା କୋରାପୁଟ ଗସ୍ତରେ ଯାଇଥିଲି—ଚିଠି ପା'ନ୍ତି କେମିତି ?

ସ୍ୱର୍ଣ୍ଣ—ଚିଠି ତେବେ ପାଇଲ୍ କିଏ ? ଚିଠିରେ କେତେ କଥା ମୁଁ ଲେଖିଥିଲି ।

ପ୍ରିୟ—ଚିଠିରେ ଯାହାସବୁ ଲେଖିଥିଲ, ତା'ର ତିନିଗୁଣ କଥା ତ ଏଠି ମୁହଁରେ କହି ପାରିବ—ଦୁଃଖ କରୁଚ କାହିଁକି ?

ସ୍ୱର୍ଣ୍ଣ—ତିନିଗୁଣ କାହିଁକି, ତିନିଶ ଗୁଣ କଥା କହି ହବ ସେ— ହେଲେ, ଚିଠିରେ ଯାହା ଲେଖି ହୁଏ, ମୁହଁ ଖୋଲି କଣ ସେ ସବୁ କଥା କହିହୁଏ ?

ପ୍ରିୟ—ହୁଁ ।

ସ୍ୱର୍ଣ୍ଣ—କଣ 'ହୁଁ' ?

ପ୍ରିୟ—ରାନୁ ତା' ଖୁଡ଼ୀ ପାଖରେ ଶୋଇଚି ?

ସ୍ୱର୍ଣ୍ଣ—କ'ଣ, ସେଇ କଣ୍ଢେଇ ବାହାଘର କଥା ତାକୁ ପଚାରିବ ? ଏଇ ଦେଖ, ପୁଣି ଉପରକୁ ଅନେଇ କ'ଣ ଭାବିଲେଣି ?··· ଶୁଣ ମ, ଚିଠିରେ ମୁଁ ଯାହା ଲେଖିଥିଲି—

ପ୍ରିୟ—ତମେ ଜାଣିଚ ସ୍ୱର୍ଣ୍ଣ ବର୍ତ୍ତମାନ ଭାରତର ଲୋକସଂଖ୍ୟା କେତେ ?

ସ୍ୱର୍ଣ୍ଣ—କ'ଣ କହିଲ ?

ପ୍ରିୟ—ବର୍ଷକୁ ଆମ ଦେଶରେ ଲୋକ ସଂଖ୍ୟା କେତେ ବୃଦ୍ଧି ପାଉଚି ଜାଣ ?

ସ୍ୱର୍ଣ୍ଣ - ଏଇକଥା ତା'ହେଲେ ବସି ଭାବୁଚ ?

ପ୍ରିୟ—ଭାରତ ପାକିସ୍ଥାନ ଭାଗ ଭାଗ ହେଲାବେଳେ ଅନେକ ଲୋକ ଦୁଃଖ କରିଥିଲେ ଯେ ଆମର ଲୋକ ସଂଖ୍ୟା କମିଗଲେ । କିନ୍ତୁ ବର୍ତ୍ତମାନ ଯେମିତି ମାରାତ୍ମକ ଭାବରେ ଆମ ଦେଶର ଲୋକ ସଂଖ୍ୟା ବଢ଼ି ଚାଲିଚି—ବର୍ଷକୁ ପଚାଶଲକ୍ଷ—ଏହାର ଶେଷଫଳ ଯେ କ'ଣ ହବ ! ତୃତୀୟ ପଞ୍ଚବାର୍ଷିକ ଯୋଜନା ଶେଷବେଳକୁ ଆମେ ଯେ କି ଦୁରବସ୍ଥା ଭୋଗିବୁ···

ସ୍ୱର୍ଣ୍ଣ—(ହାଇମାରି) ଆଲୁଅ ନିଭେଇଦିଅ—ମତେ ନିଦ ମାଡ଼ିଲାଣି । ମୁଁ ଶୋଇବି ।

ପ୍ରିୟ—ଜଙ୍ଗଲରେ ବାଘ ଭାଲୁ ବଢ଼ିଲେ—ନର୍ଦ୍ଦମାରେ ମଶା ମାଛି ବଢ଼ିଲେ କି ନଈରେ କୁମ୍ଭୀର ମଗର ବଢ଼ିଲେ, ଆମର ଯେତିକି ଭୟ ନଥିବାର କଥା—ତା'ଠୁ ବେଶୀ ଭୟ ହେଲାଣି ଆମ ଦେଶରେ ଏ କୋଟି କୋଟି ଲୋକସଂଖ୍ୟା ବଢ଼ିବାର ଦେଖି—

ସ୍ୱର୍ଣ୍ଣ—ସତରେ ତା'ହେଲେ ତମେ ଏଇସବୁ କଥା ବସି ଭାବୁଚ - ସାନୁର କଣ୍ଢେଇ ବାହାଘର କଥା ନୁହେଁ ?

ପ୍ରିୟ—ସତ କହୁଚି ସ୍ୱର୍ଣ୍ଣ ସାନୁର କଣ୍ଢେଇ ବାହାଘର କଥା ଶୁଣି ଏଇ ସବୁ କଥା ମତେ ବେଶି ଚିନ୍ତା କରିବାକୁ ପଡ଼ୁଚି ।

ସ୍ୱର୍ଣ୍ଣ—କ'ଣ ତମେ କହୁଚ ମୁଁ କିଛି ବୁଝିପାରୁ ନି ।

ପ୍ରିୟ ତମର ଏଇ ପିଲା ଖେଳ କଣ୍ଢେଇ ବାହାଘରର ଅର୍ଥ କ'ଣ ? ଉଦ୍ଦେଶ୍ୟ କ'ଣ ? ଭବିଷ୍ୟତରେ ସେଇ ପିଲାମାନଙ୍କର ବିବାହ ଓ ସେମାନଙ୍କର ସନ୍ତାନ ଜନ୍ମ ପାଇଁ ସେମାନଙ୍କ ମନରେ ଗୋଟାଏ ଆଗ୍ରହ ସୃଷ୍ଟି କରିବା !

ସ୍ୱର୍ଣ୍ଣ—ତା ହେଲେ ଏଣିକି ଆଉ କେହି ବାହା ହେବେ ନାହିଁ— ଘର ସଂସାର କରିବେ ନାହିଁ ?

ପ୍ରିୟ—ଅତି ଦୁର୍ଭାଗ୍ୟର କଥା ସ୍ୱର୍ଣ୍ଣ, ଯେ ଆମ ଦେଶରେ ଘର ସଂସାରର ଏକମାତ୍ର ଲକ୍ଷ୍ୟ ହେଲା—ସନ୍ତାନ ଜନ୍ମ ।

ସ୍ୱର୍ଣ୍ଣ - ଆଉ କୋଉ ଦେଶରେ ଯେ ଏ ଘର ସଂସାରର ଅର୍ଥ ଆଉ କିଛି ହୋଇଥିବ, ସ୍ୱା ତ ମୁଁ ଭାବି ପାରୁନି ।

ପ୍ରିୟ—ଏଥର ଅଡ଼ିଟରେ ଯେତେ ଲକ୍ଷ ଲକ୍ଷ ଟଙ୍କା ଫେରାର ହିସାବ ଆମେ ପାଇଚୁ, ତା'ର ମୂଳକାରଣ କ'ଣ ଜାଣିଚ ସ୍ୱର୍ଣ୍ଣ ?...ଏଇ ଲୋକ ସଂଖ୍ୟା ବୃଦ୍ଧି ।

ସ୍ୱର୍ଣ୍ଣ—ବାରମାସରେ ଘରକୁ ଫେରିଲ—ଘର ସଂସାର ପରିବାର କଥା ବୁଝିବ ନା ଏଇସବୁ ବାଜେ କଥା ବସି ଭାବୁଥିବ—ଗପୁଥିବ !!

ପ୍ରିୟ — ତୁମେ ଭୁଲ୍ ବୁଝୁଚ ସ୍ୱର୍ଣ୍ଣ । ମୋ' ପରିବାରର ଚିନ୍ତା ମୋର ନଥିଲେ — ଏସବୁ କଥା ମୁଁ ଚିନ୍ତା କରିପାରନ୍ତିନାହିଁ ।

ସ୍ୱର୍ଣ୍ଣ — ତୁମେତ ବେଶ୍ ଲୋକ ମୁଁ ଦେଖୁଚି ! ଏ ଦେଶରେ ଲୋକ ଗୁଡ଼ା କୋଟି କୋଟି ସଂଖ୍ୟାରେ ବଢ଼ୁଚନ୍ତି — ବଢ଼ନ୍ତୁ । ସେଥିରେ ତୁମର ଯାଏ ଆସେ କେତେ ? ତୁମ ପରିବାର କୋଉ ହୁହୁ ବଢ଼ି ଯାଉଛନ୍ତି କି ? ଧାଇଁ ଧାଇଁ ତ ଆଠ ବର୍ଷର ଛୁଆ ଖଣ୍ଡେ ସିନୁ ! ···ଭଗବାନ୍‌ଙ୍କର କି ଅଭିଶାପ କେଜାଣି !··· ଏ ଆଠ ବର୍ଷରେ ହୋଇଥିଲେ·········

ପ୍ରିୟ — ହୋଇଥିଲେ ଏ ଆଠ ବର୍ଷରେ ଆଉ ଦ'ଣ୍ଡନଟା ପିଲା ହୋଇ ଥା'ନ୍ତେ — ଏଇଆ ନା ?

ସ୍ୱର୍ଣ୍ଣ — ଓଃ ! କାଇଁକି ଗୁଡ଼ାଏ ସେମିତି ହଉଚ ମ ? ମୁଁ କ'ଣ ଚିଠି ଲେଖିଥିଲି ଶୁଣ ।

ପ୍ରିୟ — ଆଗେ ତୁମେ ମୋ' କଥା ଶୁଣ । ତୁମେ ଯାହାକୁ ଦେଶ ଓ ସଂସାରର କଥା କହି ଆଡ଼େଇ ଦବାକୁ ବସିଚ ନା, ତା'ତୁମେ କରିପାରିବ ନାହିଁ । ପ୍ରକୃତରେ ଏଇଟା ହଉଚି ଆମର ପୂରାପୂରି ପାରିବାରିକ କଥା । ଏଇପରି ଗୋଟିଏ ଗୋଟିଏ ପରିବାରରୁ ତ ଏ ସମସ୍ୟା ଦେଖାଦେଇଚି ।

ସ୍ୱର୍ଣ୍ଣ — ଏମିତି ଏକ୍‌ଜିଦିଆ ଲୋକ ! କାହିଁକି ମିଛରେ ଯେ ଚିନ୍ତା କରୁଚି ହଉଚ, ମୁଁ ବୁଝି ପାରୁନି । ଲୋକ ସଂଖ୍ୟା ତ ବଢ଼ୁଚନ୍ତି — ବଢ଼ିବେ । ତୁମେ ଏଠି ବସି ମୁଣ୍ଡ ବାଡ଼େଇଲେ କ'ଣ ହେବ ?

ପ୍ରିୟ — ମୁଁ ଯେତେବେଳେ କଟକ ପଢ଼ିବାକୁ ଗଲି···ଏଇ କୋଇଟା ବର୍ଷ ତଳର ବା କଥା — ସେତେବେଳେ କଟକରେ ଲୋକ-ସଂଖ୍ୟା ଥିଲା ଷାଠିଏ ହଜାର । ଆଉ ବର୍ତ୍ତମାନ ? ବର୍ତ୍ତମାନ କଟକର ଲୋକ ସଂଖ୍ୟା କେତେ ଜାଣ ?

ସ୍ୱର୍ଣ୍ଣ — ଆଜି କି ଯୋଗରେ ହିସ୍ତି ପାହୁଥିଲି କେଜାଣି ?

ପ୍ରିୟ—ଏକ ଲକ୍ଷ କୋଡ଼ିଏ ହଜାର—ଷାଠିଏ ହଜାରର ଦୁଇ ଗୁଣ । କଟକ ସହରର ରାସ୍ତାରେ ବର୍ତ୍ତମାନ ଏତେ ଲୋକ ଗହଳ ଯେ ସୁବିଧାରେ ବାଟ ଚାଲି ହଉନି ।...ଆଉ ଏ ପରିସ୍ଥିତି ଯଦି ଏମିତି ରହିଥିବ, ତା'ହେଲେ—ତା' ହେଲେ ତ ମୁଁ ଭାବୁଚି, ଲୋକଙ୍କର ଖାଇବା, ପିଇବା, ଚାଲିବା କଥା କିଏ ପଚାରେ—ଲୋକେ ସୁବିଧାରେ ରାସ୍ତାରେ ଯା'ଆସ କରିପାରିବେ ନାହିଁ । ଦିନ ଆସିବ ଯେତେବେଳେ ହୁଏତ, ସୁବିଧାରେ ଚଳ ପ୍ରଚଳନ ପାଇଁ, ସମସ୍ତ ଲୋକସଂଖ୍ୟାର ମାତ୍ର ଅଧେ ଦିନବେଳା ରାସ୍ତାକୁ ବାହାରିବେ—ଆଉ ଅଧେ ଲୋକ ରାତିବେଳା ରାସ୍ତାକୁ ବାହାରିବେ ।

ସ୍ୱର୍ଣ୍ଣ—(ହାଇ ମାରୁ ମାରୁ) ତା'ହେଲେ ତ ଭଲ କଥା । ରାତି ବେଳା ରାସ୍ତାରେ ଲୋକ ଯା' ଆସ କଲେ ଆଉ ଚୋର ଚୋରିର ଭୟ ରହିବ ନାହିଁ ।

ପ୍ରିୟ—ଚୋର ସିନା ହବ ନାହିଁ । ହେଲେ ଖୁନ୍, ଡକାଏତି ହରଣ ଚାଲି—ଇଏତ ବଢ଼ିଚାଲିବ !

ସ୍ୱର୍ଣ୍ଣ—ଏ ପୋଡ଼ାମୁହଁ ଟୋକାକୁ ଆଉ ଦିନ ନଥିଲା କଣ୍ଢେଇ ବାହାଘର କରିବାକୁ ! ଥିଥିବାର ଦେଖି ଆଜ ବାହାଘର କରୁଥିଲା !! ଦୁଣି ବାପା ଗୃହମାସରେ ବିଦେଶରୁ ଘରକୁ ଫେରିଲାକ୍ଷଣି ଗେଡ଼େଇ ହେଇ ତାଙ୍କ ଆଗରେ ବଖାଣି ବସିଲା ଯେ ବାପାଙ୍କ ଆଖିରେ ରାତି ସାରା ନିଦ ନାହିଁ !

ପ୍ରିୟ—ଏଥର ଅଢ଼ାଙ୍କ୍ ବେଳେ ହେଉ ସବୁ ଅପରାଧର ସୂଚନା ଆମେ ପାଇଲୁ—ତା' ମୂଳରେ ଯେ ଏଇ ଲୋକସଂଖ୍ୟା ବୃଦ୍ଧି—ଏ କଥା ନିଶ୍ଚୟ ।

ସ୍ୱର୍ଣ୍ଣ—ହେଇଟି, ମୋ' କଥା ଟିକେ ନ ଶୁଣିଲେ ନାହିଁ—ରାତି ବେଶୀ ହଉଚି, ତମେ ଶୁଅ । ମତେ ନିଦ ଆସିଲାଣି; ମୁଁ ଆଉ ବସି ପାରିବି ନାହିଁ, ଶୋଉଚି ।

ପ୍ରିୟ—ହଁ, ତମେ ଶୋଇପଡ଼ । ରାତି ପାହିଲେ କଟକ ଯିବ ।
ସ୍ୱର୍ଣ୍ଣ—କ'ଣ-କ'ଣ-କ'ଣ କହିଲ ତମେ ? କଏ କଟକ ଯିବ ?
ପ୍ରିୟ—ତମେ ଯିବ ମୋ ସାଥିରେ ।
ସ୍ୱର୍ଣ୍ଣ—କାଲି ?
ପ୍ରିୟ—ହଁ, କାଲି ସକାଳେ । ମୋର ତ ଆଉ ଛୁଟି ନାହିଁ—ଆଜି ଦିନକ ଛୁଟି ନେଇ ଆସିଥିଲି । କାଲି ସକାଳେ ଚାଲିଯିବାକୁ ହବ ।
ସ୍ୱର୍ଣ୍ଣ—ସତ କହୁଚ, ମୁଁ ତମ ସାଥିରେ ଯିବି ?
ପ୍ରିୟ—ହଁ ।
ସ୍ୱର୍ଣ୍ଣ—କାହିଁକି ?
ପ୍ରିୟ—କାହିଁକି ଆଉ କ'ଣ ? ଏମିତି ବୁଲି । ଅନେକଦିନୁ କଟକ ଯାଇନ—ଯିବ । କିଛିଦିନ ବୁଲାଚଲା କରି ଆସିବ ।
ସ୍ୱର୍ଣ୍ଣ—ଆଉ ରାନୁ ?
ପ୍ରିୟ—ରାନୁ ? ତା'ର ଯିବା ଦର୍କାର କ'ଣ ? ଗଲେ ତାର ସ୍କୁଲ ମାରି । ସେ ଏଇଠି ତା' ଖୁଡ଼ୀ ପାଖରେ ଥାଉ । ଦିନ ଆଠଟା କଥା—ଆସନ୍ତା ରବିବାର ମୁଁ ଆଣି ତାକୁ ଛାଡ଼ ଦେଇଯିବି । କ'ଣ କହୁଚ ?
ସ୍ୱର୍ଣ୍ଣ କହିବାକୁ ମୋର ଆଉ କିଛି ଅଛି ନା ? ତମର ଏଇ କଥା ପଦକ ଶୁଣି ମୋ ନିଦ କୁଆଡ଼େ ଛାଡ଼ ପଳାଇଲାଣି । ମୁଁ ଆଜି ଶୋଇବି କ'ଣ ? ଯାଉଚି, ଜିନିଷପତ୍ର ବନ୍ଧାବନ୍ଧି କରେ । ମୋର ସେଇ ବଡ଼ ଟ୍ରଙ୍କ୍‌ଟା ନେଲେ ଚଳିବ ତ ? ଆରେ ଶୁଭୁଚି ନା, ନାହିଁମ ? ପୁଣି ଉପରକୁ ଅନେଇ କ'ଣ ଭାବୁଚ ? ହଉ, ତମେ ତମର ଭାବୁଥାଅ—ମୁଁ ଯାଉଚି ମୋ ଟ୍ରଙ୍କ୍ ସଜାଡ଼େ ।

—*—

## ତୃତୀୟ ଦୃଶ୍ୟ

( ପରଦିନ ସକାଳ । ପ୍ରିୟବାବୁ ଓ ସ୍ୱର୍ଣ୍ଣ କଟକ ଯିବା ପାଇଁ ପ୍ରସ୍ତୁତ ହେଉଥାଆନ୍ତି । )

ପ୍ରିୟ—ଦେଖ୍ ରାନୁ ! କଣ୍ଢେଇ ରଖିବାର ସଉକ ଅଛି ତ ଆଲମିରା ସଜେଇ କରି ରଖ—ଚିନ୍ତା ନାହିଁ । କିନ୍ତୁ ଆଜଠୁ ସେ କଣ୍ଢେଇ ବାହାଘର କଥା ଭୁଲିଯା—ବୁଝିଲୁ ?

ରାନୁ—ବାହାଘର ଆଉ ହେଲା କୋଉଠି ? ବିନୁ ତ ବରକୁ ନେଇ ପଳେଇଲା ।

ପ୍ରିୟ—ପଳେଇଛି ଖୁବ୍ ଭଲ କରିଛି । ଏମିତି ଯଦି ଶିକ୍ଷକମାନେ ବର କନ୍ୟାଙ୍କୁ ଛାଡ଼ି ପଳାନ୍ତେ ନା .....

ସ୍ୱର୍ଣ୍ଣ—କାହିଁକି ସକାଳୁ ଏଗୁଡ଼ା ଛୁଆଙ୍କ ଆଗରେ ଗପୁଛ ମ ? କହିଲ ତ କଣ୍ଢେଇ ବାହାଘର କରିବ ନାହିଁ—ସେ କରିବ ନାହିଁ ! ଏସବୁ ଗପ ପୁଣି ଶୁଣିବ କାହିଁକି ?

ପ୍ରିୟ—ତମେ ଜାଣିନ ସ୍ୱର୍ଣ୍ଣ । ଦେଶର ଭବିଷ୍ୟତ ନାଗରିକ ହେଲେ ଏମାନେ । ଏ ସବୁ କଥା ଏମାନେ ଏଇଦିନୁ ଜାଣି ରଖିବା ଉଚିତ ।

ରାନୁ—ତୁ କେଉଁଦିନ ଫେରିବୁ ବୋଉ ?

ସ୍ୱର୍ଣ୍ଣ—ଏଇ ରବିବାର ! ଆଲୋ ମା, ତୁ ମୋ' ସାଥିରେ କଟକ ଯାଇଥାନ୍ତୁ ?

ରାନୁ—ଯାଇଥାନ୍ତି ଯେ, ହେଲେ ଏଣେ ପଢ଼ା ନଷ୍ଟ ହବ ।

ସ୍ୱର୍ଣ୍ଣ—ଦିନ ଆଠଟା ତ, ତୁ ଖୁଡ଼ୀ ପାଖରେ ରହି ପଢ଼ାପଢ଼ି କରିବୁ । କ'ଣ କହୁଚୁ ?

ରାନୁ—ହଁ ।

ପ୍ରିୟ—ତମର ସବୁ କାମ ସରିଲା ?
ସ୍ୱର୍ଣ୍ଣ—ହଁ ।
ପ୍ରିୟ—କୁଞ୍ଜ କାହିଁଗଲା ? ଏଣେ ଗାଡ଼ି ବେଳ ହୋଇ ଯାଉଛି ଯେ ? (ଡ଼ାକିଲେ) କୁଞ୍ଜ !

(କୁଞ୍ଜ ଆସିଲା )

କୁଞ୍ଜ—ଆଜ୍ଞା !
ପ୍ରିୟ—ଆଉ ଡେରି କରୁଚ୍ କାହିଁକି—ଚାଲ ଯିବା ।
କୁଞ୍ଜ—ଆଜ୍ଞା, ଗାଡ଼ି ମିଳିଲା ନାହିଁ ।
ପ୍ରିୟ—ଗାଡ଼ି ?
କୁଞ୍ଜ—ମା' କହିଥିଲେ ଉଦ୍ଧବ ଯେନା ଘର ବଳଦଗାଡ଼ିଟା ସଜିଲ କରିବାପାଇଁ । ହେଲେ ତା ଗାଡ଼ି କାଲିଠୁ ମାଲ୍ ଆଣିବା ପାଇଁ କଟକ ଯାଇଛି । ଆଉ କାହା ଗାଡ଼ି ବି ଜୁଟିଲା ନାହିଁ ।
ପ୍ରିୟ—କି ଆଶ୍ଚର୍ଯ୍ୟ କଥା ! ବାଟ ମାଇଲିଏ ହବ—ସେଥିପାଇଁ ଗାଡ଼ି କ'ଣ ଦର୍କାର ? ଗାଡ଼ି ପାଇଁ ତମେ କହିଥିଲ ?
ସ୍ୱର୍ଣ୍ଣ—ହଁ, ମୁଁ କୁଞ୍ଜକୁ ଗାଡ଼ି ପାଇଁ କହିଥିଲି । ହେଲେ ଗାଡ଼ି ତ କାଇଁ ମିଳୁ ନାଇଁ ।
ପ୍ରିୟ—ମିଳିଲେ ବି ଗାଡ଼ିରେ ଯିବା କାହିଁକି ? ବାଟ ତ ମୋଟେ ମାଇଲିଏ । ଫାଲ୍‌ଗୁନ ମାସ ସକାଳ—ଚାଲି ଚାଲି ଯିବାକୁ ବେଶ୍ ଆରାମ ଲାଗିବ । ଆସ । କୁଞ୍ଜ, ଜିନିଷ ଉଠେଇ ଚାଲ୍ ।
କୁଞ୍ଜ—ଚାଲନ୍ତୁ ଆଜ୍ଞା ।
ସ୍ୱର୍ଣ୍ଣ—(ଅନ୍ତରାଳରେ ଥିବା ସାନବୋହୂକୁ ଉଦ୍ଦେଶ୍ୟ କରି) ଆ'ଲୋ ସାନ-ବୋହୂ—ଆମେ ଯାଉଚୁ । ସନୁ ତୋତେ ଲାଗିଲା—ଏ ଦିନ ଆଠଟା ଭୁ ସନୁକୁ ଚଳେଇ ନବୁ ।

ସିନ୍ଧୁ—ବାପା, ଖୁଡ଼ୀ ତମକୁ ପ୍ରଣାମ କରୁଛି ।
ପ୍ରିୟୁ ଆଚ୍ଛା-ଆଚ୍ଛା-ଆଚ୍ଛା ।······ହୁଁ, ଡେରି ହଉଚି । ଆସ ।
ସୁର୍ଣ୍ଣ—ଚାଲ ।



## ଚତୁର୍ଥ ଦୃଶ୍ୟ

( ଗାଁ ମୁଣ୍ଡ ରାସ୍ତା । ପ୍ରିୟବାବୁ, ସ୍ୱର୍ଣ୍ଣ ଓ କୁଞ୍ଜ ଚାଲିଚନ୍ତି )

ସ୍ୱର୍ଣ୍ଣ—କେରେ କୁଞ୍ଜ, ପଛରେ ଆଉଚୁଟି ?

କୁଞ୍ଜ—ମୁଁ କଣ ବୋଝ ବୋହି ତମ ସାଙ୍ଗରେ ଚାଲିପାରିବ ମା— ମୁଁ ଆଗେ ଆଗେ ଧପାଲି ଯାଉଚ ।

ସ୍ୱର୍ଣ୍ଣ—ହଉ, ତୁ ଆଗରେ ବାହାରିଯା ।

(ଜନପଦହ କୁଞ୍ଜ ବାହାରିଗଲା)

ସ୍ୱର୍ଣ୍ଣ—ହଁ, ଏଥର କହିବଟି—କାହିଁକି ତମେ ମତେ କଟକ ନେଉଚ ? କାଲି ରାତିରେ ତ ଖଟରେ ବସି ଉପରକୁ ଅନେଇ ଭାବିଭାବି ଦେ' ସେଇଠି ଶୋଇଲ ଯେ, ଡାକ ଡାକ ଉଠିଲ ନାହିଁ । ···ଆରେ, ମୋ କଥା ଶୁଭୁଚ ନା ନାହିଁମ ? ···କଣ ବାଟ ଚାଲୁ ଚାଲୁ ବି ଭାବୁଚ ?

ପ୍ରିୟ—ଏଁ ! କ'ଣ କହୁଚ ତମେ ?

ସ୍ୱର୍ଣ୍ଣ—ପଚାରୁଚି ପରା—କାଇଁକି ମତେ କଟକ ନେଉଚ ? କ'ଣ ଏମିତି କଟକ ସହରରେ ଅଛି ଯେ ମୁଁ ସଉକ୍ କରି ବୁଲି ଦେଖିବାକୁ ଯିବି ? (ହସି) କ'ଣ କଟକ ସହରରେ ଷାଠିଏ ହଜାରରୁ ବଢ଼ି, ଲୋକ ସଂଖ୍ୟା ଯେ ଲକ୍ଷେ କୋଡ଼ିଏ ହଜାର ହୋଇଚି ସେଇଆ ଦେଖିବାକୁ ଯିବି ?

ପ୍ରିୟ—କାହିଁକି ମୋ ସାଥିରେ ଯାଉଚ ଯଦି ଜାଣିନ, ତେବେ ଯିବାପାଇଁ ଏମିତି ଖୁସି ମନରେ ବାହାରି ପଡ଼ିଲ କାହିଁକି ? ଏତେ ଖୁସି ଯେ ଆଖିରୁ ତମର କାଲି ରାତିରେ ନିଦ ଛାଡ଼ିଗଲା ! !

ସ୍ୱର୍ଣ୍ଣ—ସେ ମୋ କଥା, ମୁଁ ଜାଣେ । ତମେ କୁହନା, କାଇଁକି ମତେ ସାଥିରେ ନେଉଚ ?

ପ୍ରିୟ—ଆଚ୍ଛା ସ୍ୱର୍ଣ୍ଣ—ଗୋଟାଏ କଥା ମୁଁ ତମକୁ କହୁଚ । ତମେ ମଫସଲର ଝିଅ—ମଫସଲରେ ରହୁଚ । ତଥାପି ତମର ଅବସ୍ଥା ଅନୁଯାୟୀ ଶିକ୍ଷା ଦୀକ୍ଷା ତମର ଅଛି । ଦେଶ ବିଦେଶର ହାଲ୍ ମଧ୍ୟ କିଛି କିଛି ଜାଣିବାର ସୁବିଧା ତମର ରହିଚ । ···ତମେ କହିଲ, ବର୍ତ୍ତମାନ ଆମ ଦେଶର ଯୋଉ ଅବସ୍ଥା, ସେଥିରେ ଯଦି ଗୋଟିଏ ଗୋଟିଏ ପରିବାରରେ ପାଞ୍ଚ, ସାତ, ଦଶ କରି ପିଲା ଜନ୍ମ ହୁଅନ୍ତି, ତେବେ—

ସ୍ୱର୍ଣ୍ଣ—ଇଏତ ଆଚ୍ଛା କଥା ! ! ସେ ଚିନ୍ତା ତମକୁ କାହିଁକି ଲାଗୁଚ ?

ପ୍ରିୟ—ତମେ କ'ଣ ମୋ ସ୍ୱଭାବ ଜାଣିନ ସ୍ୱର୍ଣ୍ଣ ? ଜଣେ ସାମାନ୍ୟ ସରକାରୀ ଚାକିରିଆ ହେଲେ ବି ଦେଶର ସବୁ ଭଲ ମନ୍ଦ କଥାକୁ ମୁଁ ବରାବର ନଜର ରଖିଥାଏ ।

ସ୍ୱର୍ଣ୍ଣ—ସେଗୁଡ଼ିକ ଅଲଗା ନଜର । ତା'ର ମୂଲ୍ୟ କିଛି ନାହିଁ । ମୂଳକଥା—ତମେ ଅଣ୍ଟର ଚାକିରି କରି କରି ସବୁ ଜିନିଷକୁ ତନଖି ଦେଖିବାର ଗୋଟାଏ ବଦଅଭ୍ୟାସ ତମର ହେଇ ଗଲାଣି ।

ପ୍ରିୟ—ମୋର ଚାକିରି ଯୋଗୁଁ ମୋର ଯଦି ଏ ଅଭ୍ୟାସଟା ହେଇ-ଥାଏ, ତେବେ ଏଇଟା ଆଦୌ ବଦ୍‌ଅଭ୍ୟାସ ନୁହେଁ ସ୍ୱର୍ଣ୍ଣ—ଏଇଟା ଅତି ଭଲ ଅଭ୍ୟାସ ।

ସ୍ୱର୍ଣ୍ଣ—ମାନିଲି ଭଲ ଅଭ୍ୟାସ । କିନ୍ତୁ ଏ ଲୋକ ବଢ଼ିବା ଚିନ୍ତା ତମକୁ କାହିଁକି ଲାଗୁଚ । ତମ ପରିବାରଠୁଁ ତ ଶ୍ରେଷ୍ଠ ପରିବାର ଆଉ କାହାର ନ ଥିବ !

ପ୍ରିୟ—ସେଥିପାଇଁ ମୁଁ ଆମକୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଭବିଷ୍ୟତକୁ ସତର୍କ ରହିବାକୁ ଚାହେଁ । ଆଉ ସେଇଥିପାଇଁ ମୁଁ ତମକୁ କଟକ ନଉଚ ।

ସ୍ୱର୍ଣ୍ଣ—ମାନେ ?

ପ୍ରିୟ—ଶୁଣିଚ – ପୂର୍ବେ କୋଉ ଗୋଟାଏ ଦେଶରେ, ଯୋଉ ପରି-ବାରରୁ ବେଶୀ ସନ୍ତାନ ଜନ୍ମ ହଉଥିଲେ, ସେ ପରିବାରକୁ ସର୍କାର ତରଫରୁ ପୁରସ୍କାର ମିଳୁଥିଲା । ବର୍ତ୍ତମାନ ଆମଦେଶର ଅବସ୍ଥା ଯାହା, ଏଠି ଯାହାର ଯେତେ କମ୍ ସନ୍ତାନ ଜନ୍ମହେବେ, ସେ ହେବ ଏ ଦେଶର ଆଦର୍ଶ ପରିବାର ।

ସ୍ୱର୍ଣ୍ଣ—ତା'ମାନେ ଆମେ ସେଇ ଭିତରୁ ଗୋଟିଏ ।

ପ୍ରିୟ—ମୁଁ ସେଥିପାଇଁ ନିଜକୁ ଭାଗ୍ୟବାନ୍ ମନେ କରୁଚି ସ୍ୱର୍ଣ୍ଣ ।

ସ୍ୱର୍ଣ୍ଣ—ତମର ଏଇ ସୌଭାଗ୍ୟ କଥା ସମସ୍ତଙ୍କ ଆଗରେ ନାଗରା ପିଟି ଜଣେଇବା ପାଇଁ ତାହେଲେ ତମେ ମତେ କଟକ ନଉଚ ?

ପ୍ରିୟ—ଇଏତ ଅତି ଆନନ୍ଦର କଥା – ଗର୍ବର କଥା ।

ସ୍ୱର୍ଣ୍ଣ—(ବଡ଼ପାଟିରେ) ଆରେ କୁଞ୍ଜ ।

ପ୍ରିୟ—କ'ଣ ହେଲା ?

ସ୍ୱର୍ଣ୍ଣ—ମୁଁ ଏଇଠୁ ଫେରିଯିବି । ······କୋଉଠି କାହାର ବେଶୀ ପିଲା ଜନ୍ମ ହଉଚି—ସେଥିପାଇଁ ଯୁଆଙ୍କର ଏମିତି ମୁଣ୍ଡ ବଥଉଚି ଯେ···

ପ୍ରିୟ—ଆଚ୍ଛା – ଆମ ଗାଁ ଆଖପାଖରେ ଯଦି କୋଉଠି ହଇଜା କି ବସନ୍ତ ହୁଏ – ତେବେ, ସେଥିପାଇଁ କ'ଣ ତମ ମୁଣ୍ଡ ବଥାଏନାହିଁ ?

ସ୍ୱର୍ଣ୍ଣ—ସେ ଭିନ୍ନ କଥା ।

ପ୍ରିୟ—ମୋଟେ ଭିନ୍ନ କଥା ନୁହେଁ । ···ତମେ ମୋ' ସାଥିରେ କଟକ ଚାଲ—

ସ୍ୱର୍ଣ୍ଣ—କାଇଁକି କଟକ ଯିବି ଆଗେ ମତେ କୁହତ ?

ପ୍ରିୟ—ଆମେ କେତେଜଣ ବନ୍ଧୁ ମିଳି କଟକରେ ଗୋଟିଏ ସମିତି ଗଢ଼ିଚୁ । ମୋର ଆସନ୍ତା ଆଠମାସ ଭିତରେ କୁଆଡ଼େ ଟୁର୍‌ରେ

ଯିବାର ନାହିଁ । ସେଥିପାଇଁ ମୋର ବସାରେ ସମିତିର ବୈଠକ କେବେ କେବେ ବସିବ ବୋଲି ଠିକ୍ ହୋଇଛି ।

ସ୍ୱର୍ଣ୍ଣ—କି ସମିତି —କି ବୈଠକ ?

ପ୍ରିୟ —ଦେଶକୁ ଏ ଦୁରବସ୍ଥାରୁ କେମିତି ଉଦ୍ଧାର କରାଯାଇ ପାରିବ, ସେଥିପାଇଁ ଆମର ସାଧ୍ୟମତେ ଆମେ ଚେଷ୍ଟା କରିବୁ ।

ସ୍ୱର୍ଣ୍ଣ—କିନ୍ତୁ ମୁଁ ସେଠି ଯାଇ କରିବି କ'ଣ ?

ପ୍ରିୟ—କିଛି ନାହିଁ । ଏଇ ବୁଧବାର ଆମ ସମିତିର ପ୍ରଥମ ବୈଠକ ବସିବ । ତମେ ନିଜେ ସେଠି ଦେଖିବ, ଶୁଣିବ, ଆଉ ଯଦି ତମ ମନ ମାନେ, ତେବେ ଗାଁକୁ ଫେରି ଆସି ଏଠି ଅନ୍ୟମାନଙ୍କୁ ସେଇ ଶିକ୍ଷା ଦବ ।

ସ୍ୱର୍ଣ୍ଣ—ଏଇ କଥା ?

ପ୍ରିୟ—ହଁ ।

ସ୍ୱର୍ଣ୍ଣ—( କିଛିଏ ଚିନ୍ତା କରି ) ହଉ ଚାଲ ।



## ଶେଷ ଦୃଶ୍ୟ

( କଟକ ସହର । ପ୍ରିୟ ବାବୁଙ୍କ ବୈଠକଖାନା । ସମୟ—ଅପରାହ୍ଣ । ପ୍ରିୟବାବୁ ଓ ସ୍ୱର୍ଣ୍ଣ ବସିଚନ୍ତି । ଡାକ୍ତରାଣୀ ମୀରା ମହାନ୍ତି ଆସିଲେ )

ପ୍ରିୟ—ଆସନ୍ତୁ ଆସନ୍ତୁ, ମିସ୍ ମହାନ୍ତି ! (ସ୍ୱର୍ଣ୍ଣଙ୍କୁ) ସ୍ୱର୍ଣ୍ଣ, ଏଇ ହଉଚନ୍ତି ଡାକ୍ତରାଣୀ ମିସ୍ ମୀରା ମହାନ୍ତି । ଗଲାବର୍ଷ ଡାକ୍ତରୀ ପାଶ୍ କରିଚନ୍ତି ସତ, ଏଇ ଅଳ୍ପ ଦିନ ଭିତରେ ଖୁବ୍ ଭଲ ନାଁ କଲେଣି ।

ମୀରା—ଆପଣମାନେ ଆଜ ଆସିଚନ୍ତି ଶୁଣି ଚାଲି ଆସିଲି ।

ପ୍ରିୟ—ଖୁବ୍ ଭଲ କରିଚନ୍ତି । ଆପଣ ଆମ ସମିତିର ଜଣେ ମେମ୍ବର । ସ୍ତ୍ରୀ'ଙ୍କ ସହିତ ଆଗରୁ ପରିଚୟଟା ହୋଇଗଲା ।

ମୀରା—ଆପଣ ଯେମିତି ଟିକିଏ କ୍ଳାନ୍ତ ଜଣା ପଡ଼ୁଚନ୍ତି ସ୍ୱର୍ଣ୍ଣ ଦେବୀ ! ଆପଣଙ୍କ ଦେହ ଭଲ ଅଛି ତ ?

ପ୍ରିୟ—ବାସ୍ ! ଡାକ୍ତରାଣୀ ବୋଲି ଆଗେ ଦେହ କଥା ପଚାରି ବସିଲେଣି ।

ସ୍ୱର୍ଣ୍ଣ—ସତରେ ମୋ' ମୁଣ୍ଡଟା କାହିଁକି ଟିକିଏ ବୁଲଉଚି ।

ମୀରା—ଦେଖିଲେ ତ ପ୍ରିୟବାବୁ ! ଆପଣ ଅଡ଼ିଟର୍ ବୋଲି ଆପଣଙ୍କ ଆଖିରେ ଭୁଲଟା ଯେମିତି ପ୍ରଥମେ ଧରାପଡ଼େ, ଆମ ଆଖିରେ ରୋଗଟା ସେମିତି ଆଗେ ଧରାପଡ଼େ । ଚାଲନ୍ତୁ ସ୍ୱର୍ଣ୍ଣ ଦେବୀ, ଭିତରକୁ ଚାଲନ୍ତୁ । ଦେଖେ, ଆପଣଙ୍କର କ'ଣ ହୋଇଚି ।

( ସ୍ୱର୍ଣ୍ଣ ଓ ମୀରା ଭିତରକୁ ଗଲେ )

ପ୍ରିୟ—(ଡାକିଲେ) ଶାମ, ଶାମ—

( ଶାମ ଆସିଲା । ସେ ପ୍ରିୟବାବୁଙ୍କ ଚାକର)

ଶାମ—କ'ଣ ବାବୁ ?

ପ୍ରିୟ—ଚା'ପାଣି ବସେଇଚୁ ?

ଶାମ—ହଁ, ପାଣି ହେଲାଣି ।
ପ୍ରିୟ—ଏ ଯୋଡ଼ ମା’ ଆସିନାହାନ୍ତି—
ଶାମ—ମା ! ଆମ ମା ?
ପ୍ରିୟ—ଆରେ ନାଇଁ—ଏ ଯୋଡ଼ ଡାକ୍ତରାଣୀ ଆସିଚନ୍ତି···
ଶାମ—ଡାକ୍ତରାଣୀ କାଇଁକି ଆସିଚନ୍ତି ବାବୁ ? ଆମ ମା’ଙ୍କ ଦେହ କ’ଣ ଖରାପ ?
ପ୍ରିୟ—ଆରେ ନାଇଁ ବାବୁ, ମା’ଙ୍କ ଦେହ କିଛି ହୋଇନି । ଡାକ୍ତରାଣୀ ବୁଲି ଆସିଚନ୍ତି ।···ତାଙ୍କୁ ଯା’, ଗୁ’ଦେ ।
ଶାମ—ହଉ ଆଜ୍ଞା ।

(ଶାମ ଚାଲିଗଲା । ପ୍ରିୟବାବୁ ବସି ରହିଥା’ନ୍ତି । ଟିକଏ ପରେ ମିସ୍ ମହାନ୍ତି ଆସିଲେ )

ମୀରା—ପ୍ରିୟନାଥ ବାବୁ—କ’ଣ ବସି ଭାବୁଚନ୍ତି ?
ପ୍ରିୟ—ଏଁ !
ମୀରା—ସ୍ୱର୍ଣ୍ଣ ଦେବୀଙ୍କ ଦେହ ବେଶ୍ ଭଲ ଅଛି ।
ପ୍ରିୟ—ତାଙ୍କ ଦେହ ଖରାପ ହେବାର କାରଣ ବା କ’ଣ ଅଛି ?
ମୀରା—ନା ।···ତଥାପି ଏ ଅବସ୍ଥାରେ ଟିକଏ ଜଗିରଖି ଚଳିବା କଥା ।
ପ୍ରିୟ—ଅବସ୍ଥା !···
ମୀରା—ଅବଶ୍ୟ ଏଇଟା ପ୍ରଥମ ଡେଲିଭରି ନୁହେଁ । ତଥାପି ଗୋଟିଏ ପିଲା ଜନ୍ମ ହବାର ସାତ ଆଠବର୍ଷ ପରେ ପୁଣି ପିଲା ପିଲା ହେଲେ ଟିକଏ ବିପଦ ବୋଲି ବୁଝିବାକୁ ହବ । ସେଥିପାଇଁ ପିଲାଜନ୍ମ ହବାଯାଏ ତାଙ୍କୁ କଟକରେ ରଖିବା ଉଚିତ ବୋଲି ମୁଁ ଭାବୁଚି ।
ପ୍ରିୟ—( ଢୋକ ଢୋକ ) କ’ଣ କହିଲେ ଆଜ୍ଞା ?

ମୀରା—ଆପଣ ଭୟ କରନ୍ତୁ ନାହିଁ । ଭୟର କୌଣସି କାରଣ ନାହିଁ ।···ଡେଲିଭରି ତ ପ୍ରାୟ ଆଜିଠାରୁ ପାଞ୍ଚ ଛ'ମାସ ଡେରି ଅଛି । ଆଚ୍ଛା, ମୁଁ ଆସୁଚି—

ପ୍ରିୟ—ହୁଁ—

ମୀରା—ମୁଁ ବର୍ତ୍ତମାନ ଯାଉଛି···ହଁ, ପ୍ରିୟନାଥ ବାବୁ । ଆପଣ ତ ଆଉ ଆମ ସମିତିର ମେମ୍ବର ହୋଇ ପାରିବେ ନାହିଁ ।

ପ୍ରିୟ—କାହିଁକି ଆଜ୍ଞା ?

ମୀରା—ଆମ ସମିତିର ନିୟମ କ'ଣ ଆପଣ ଜାଣନ୍ତି ନାହିଁ ? ଆପଣ ନିଜେ ପର ସନ୍ତାନର ପିତା ହବାକୁ ଯାଉଚନ୍ତି—ଆଉ ଆପଣ ଜନ୍ମ-ନିରୋଧ ସମିତିର ମେମ୍ବର ହେବେ କେମିତି ? ହଁ, ସ୍ୱର୍ଣ୍ଣ ଦେବୀଙ୍କର ଦୃଢ଼ ଆଶା—ଆଉ ମୋର ମଧ୍ୟ ଆନ୍ତରିକ କାମନା—ଆପଣଙ୍କର ଏଥର ପୁଅଟିଏ ହବ ।······ଆଉ ଦେଖନ୍ତୁ, ଆପଣ ଆମ ସମିତିରୁ କଟିଗଲେ ବୋଲି ପୁଅ ଏକୋଇଶା ଭୋଜିରୁ ଆମକୁ କାଟି ଦେବେ ନାହିଁ । ···ଆଚ୍ଛା ଆସୁଚି । ନମସ୍କାର ।

( ପ୍ରସ୍ଥାନ । ଟିକିଏ ପରେ ସ୍ୱର୍ଣ୍ଣ ଆସିଲେ )

ସ୍ୱର୍ଣ୍ଣ—ସେ ଡାକ୍ତରଣୀ ଝିଅଟି ଗଲେଣି ?

ପ୍ରିୟ—ହଁ ।

ସ୍ୱର୍ଣ୍ଣ—ଘର ଭଲ ଝିଅଟିଏ ଏକା ।

ପ୍ରିୟ—ହଁ । ମତେ ସମିତିରୁ କାଟି ଦେଇ ଗଲା, ଭଲ ଝିଅ ନୁହେଁ କ'ଣ !!

ସ୍ୱର୍ଣ୍ଣ—ତମେ ସମିତିରୁ କଟିଯିବା ଦୋଷଟା କ'ଣ ତା'ର ?

ପ୍ରିୟ—ମୁଁ ତମକୁ ପଚାରୁଚି—ତମେ ଏ କଥା ଏପର୍ଯ୍ୟନ୍ତ ମତେ ଜଣେଇ ନ ଥିଲ କାହିଁକି ?

ସ୍ୱର୍ଣ୍ଣ—ଜଣେଇ ଥା'ନ୍ତୁ କେମିତି ? ଚିଠିଟା ଦେଇ ଥିଲ ପାଇଲ ନାହିଁ ।

ପ୍ରିୟ—କାଲି ଘରେ ଏ କଥା ମତେ କହିଲ ନାହିଁ କାହିଁକି ?

ସ୍ୱର୍ଣ୍ଣ—ମତେ ତମେ କହାଇ ଦେଲ ? ଲୋକସଂଖ୍ୟା ବଢ଼ିଯାଉଚନ୍ତି ବୋଲିତ ତମେ ସେଇ ଚିନ୍ତାରେ ରାତି ସାରା ଗୃହକୁ ଅନେଇ ବସି ଭାବୁଚ—ଏଣୁ ତେଣୁ ଗପୁଚ - ମୁଁ ଆଉ କହିଥା'ନ୍ତି କେତେବେଳେ ?

ପ୍ରିୟ—ନ କହିଲ ଯଦି; ମତେ ଏମିତି ଅପଦସ୍ତ କରିବା ପାଇଁ କଟକ ଗୃଲି ଆସିଲ କାହିଁକି ?

ସ୍ୱର୍ଣ୍ଣ—କାହିଁକି କଟକ ଆସିଲି ସେ କଥା ପଗ୍ର ତମର ଡାକ୍ତରାଣୀ ବନ୍ଧୁ କହିଗଲେ । ପିଲାଜନ୍ମ ହବାଯାଏ ମୁଁ ଏଇଠି ରହିବି । ତମରତ ଏ ଆଠ ମାସ କୁଆଡ଼େ ଟୁର୍‌ରେ ଯିବାର ନାହିଁ— ଆଉ ଅସୁବିଧା କ'ଣ ?······ହଁ, ତମେ ଆଜି ଘରକୁ ଚିଠି ଲେଖି ରାନୁକୁ ଡକେଇ ଆଣ—ସେ ଏଇଠି ପଢ଼ିବ । କ'ଣ ମୋ କଥା ଶୁଣୁଚ ନା ନାହିଁମ ? ପୁଣି ଉପରକୁ ଅନେଇ ବସିଲ !! ହଉ, ବସିଥାଅ—ମୁଁ ଯାଏ ଟିକେ ରୋଷେଇ ବାସ ଖବର ବୁଝେଁ । ( ପ୍ରସ୍ଥାନ )

———

**ଏ ପରିବାରରେ ଅଛନ୍ତି :**

ଶୋଭା ଦେବୀ—ଗୃହକର୍ତ୍ତ୍ରୀ (ବୟସ—୩୪ବର୍ଷ)

ମାଧବ—ତାଙ୍କ ସ୍ୱାମୀ (ବୟସ—୩୮ବର୍ଷ)

ଶେଫାଳି—ତାଙ୍କ ବଡ଼ଝିଅ (ବୟସ—୧୫ବର୍ଷ)

ଦୀପାଳି—ତାଙ୍କ ସାନଝିଅ (ବୟସ—୧୩ବର୍ଷ)

କାବୁଲି—ତାଙ୍କ ପୁଅ (ବୟସ—୧୧ବର୍ଷ)

ମୁକ୍ତା—ତାଙ୍କ ପରିଚାରିକା

ଓ

ସନାତନ—ଜଣେ ଋଷି

( ଏ ଚିତ୍ରର ରଚନାକାଳ—ମେ’ ୧୯୫୯ )

# ଶୋଭା ଦେବୀଙ୍କ ପରିବାର

## ପ୍ରଥମ ଦୃଶ୍ୟ

[କଟକ ସହର । ଶୋଭା ଦେବୀଙ୍କ ବାସଭବନର ଏକ ପ୍ରକୋଷ୍ଠ । ସମସ୍ତ ସକାଳ ପ୍ରାୟ ସାତଟା । ଦୃଶ୍ୟ ଆରମ୍ଭରେ ଶୋଭା ଦେବୀଙ୍କ ସ୍ୱର ଅନ୍ତରାଳରୁ ଶୁଣାଗଲା ]

ଶୋଭା – (ଅନ୍ତରାଳରୁ) କୁଆଡ଼େ ଗଲକି ? ଆରେ ! ତମକୁ ଥରେ ଡାକଲେ ଶୁଭେନାହିଁ ନା କ'ଣ ? ଶୁଣୁଚ ?

[ ଟିକଏ ପରେ ଶୋଭା ଦେବୀ କୋଠରୀ ଭିତରକୁ ଆସି ଦେଖିଲେ —କୋଠରୀରେ କେହି ନାହାନ୍ତି । ଶୋଭା ଦେବୀଙ୍କ ଦେହରେ ନର୍ସର ପୋଷାକ]

ଏଁ ! କାହିଁ, ନାହାନ୍ତି ତ ଏଠି ! …ଆଲୋ ମୁକ୍ତା—ମୁକ୍ତା !

(ମୁକ୍ତା ଆସିଲା)

ମୁକ୍ତା—ମା ।

ଶୋଭା—ବାବୁ କାହିଁ ଗଲେକି ? ଆଲୋ ଏମିତି ଜଳ ଜଳ କରି ଚାହିଁଚୁ କ'ଣ ? ବାବୁ ଏଇ ଟିକଏ ଆଗରୁ ଏ ଘରେ ବସି ପିପି କି ଶେଫି କାହାର ଗୋଟାଏ ଜାମା ସିଲେଇ କରୁଥିଲେଟି ?

ମୁକ୍ତା—ହଁ ।

ଶୋଭା—କୁଆଡ଼େ ପୁଣି ଗଲେ ? (ମୁକ୍ତା କିଛି କହି ନ ଥାଏ ) ଆଲୋ ତୁ ବୋବା ହେଇ ଗଲୁଣିକି ? ବାବୁ କାହାନ୍ତି ?

(ମୁକ୍ତା ଗାଧୁଆ ଘର ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲା)

ଶୋଭା – କ'ଣ ହେଲା ? ସକାଳ ସାତ ନ ବାଜୁଣୁ ଯାଇ ଗାଧୁଆ ଘରେ କଳ ଖୋଲି ମନଇଚ୍ଛା ଗାଧୁଆ ହଉଚ !! (ବଡ଼ ପାଟିରେ) କ'ଣ ଶୁଭୁଚ ? ଗାଧୁଆ ବନ୍ଦ କରି ଆସିବ ନା, ମୁଁ ଏଣେ ମେନ୍‌ସୁଇଚ୍ ବନ୍ଦ କରିଦେବି ?

ମାଧବ – (ଅନ୍ତରାଳରୁ) ଯାଉଚି···ଯାଉଚି ।

ଶୋଭା – ଯାଉଚି ଯାଉଚି କ'ଣ ହଉଚ ? ସାଙ୍ଗେ ସାଙ୍ଗେ ବାହାରି ଆସ । (ହାତରେ ତଉଲିଆ ଧରି ମାଧବ ଅପରାଧୀଙ୍କ ପରି ଆସିଲେ)

ମାଧବ—ହୁଁ—ତମେ କ'ଣ ଏଇ ସାଙ୍ଗେ ସାଙ୍ଗେ ଫେରି ଆସିଲ ?

ଶୋଭା—ମୁଁ ସାଙ୍ଗେ ସାଙ୍ଗେ ଫେରି ନ ଥିଲେ ତମେ ବୋଧହୁଏ ଆଜି କଳରୁ ପାଣି ବନ୍ଦ ନ ହବା ଯାଏ ଗାଧୁଆ ଘରୁ ବାହାରି ନ ଆନ୍ତ ?

ମାଧବ—ନାଇଁ ସେ କଥା ନୁହେଁ ଯେ············

ଶୋଭା—ଆଉ କୋଉ କଥା, କୋଉ କଥା କହୁଚ ? ତେମେ କ'ଣ ଭାବୁଚ ଯେ ତମ ପାଇଁ ମଣିଷ ଏଠି ଘର ସଂସାର ଛାଡ଼ି କୋଉ ମଠ ମନ୍ଦିରରେ ଯାଇ ରହିବ ? ଓହୋ ! ତଉଲିଆଟା ହାତରେ ଧରି ଠିଆ ହୋଇ ରହିଲ କାହିଁକି ? ଦେହମୁଣ୍ଡ ପୋଛି ହୋଇପଡ଼ ।···ଏଇଦେଖ, କେମିତି ପିଲାଙ୍କ ପରି ହାତ ବୁଲା ହଉଚ । ନାଇଁ-ନାଇଁ—ଦିଅ, ତଉଲିଆଟା ମତେ ଦବଟି—ମୁଁ ପୋଛିଦିଏଁ—ତମେ ଚୁପ୍ ହୋଇ ଠିଆ-ହୁଅ ।

( ଶୋଭା ପୋଛିବାରେ ଲାଗିଲେ )

ମାଧବ—ସତେ ମ ଶୋଭା—ତମେ ଏତେ ଚଞ୍ଚଳ ଫେରିଆସିବ ବୋଲି ମୁଁ ଭାବି ନ ଥିଲି ।

ଶୋଭା—ପୁଣି ଏ କଥା କହି ମୋ ଦେହ ଜଳାଅ ନା କହୁଚ । ଛ'ଟା ନ ବାଜୁଣୁ ପାଣି ବାଲ୍‌ଟି ଖରାରେ ଥୁଆ ହେଉଚ ତମେ ଗାଧୋଇବ ବୋଲି—ଆଉ ତମର ଏଣେ ଥଣ୍ଡା ପାଣିରେ ଗାଧୁଆ ଚୂଲଚ !···

ମାଧବ—ଦେଖୁଚ ତ, ଏ ମେ' ମାସ ଖରାରେ ଆଠଦିନ ହେଲା ସେଇ ତତଲା ପାଣିରେ ଗାଧୋଉଚ ।

ଶୋଭା—ପାଣି ତ କହୁ ନଆଁରେ ଫୁଟି ଗରମ ହଉନ । ସକାଳ ଛ'ଟାରୁ ଦଶଟା ପର୍ଯ୍ୟନ୍ତ ଯାହା ଖରାରେ ଥୁଆହଉଚ । ସେଇଥିରେ କଣ ଏମିତି—

ମାଧବ—ଦୟାକରି ତମେ ସେଇ ପାଣିରେ ଗାଧୋଇଲେ, ଜାଣନ୍ତ ଯେ ଖୋଦ୍ ସୂର୍ଯ୍ୟଙ୍କ ତାପଠାରୁ ସେ ପାଣି ବାଲ୍‌ଟିଟାର ତାପ କେମିତି ଅଧିକ । ଏ ଆଠଦିନ ହେଲା ମୋ' ଦେହ ହାତ ଏକା ବେଳକେ ସିଝି ଗଲାଣି ।

ଶୋଭା—ଦେହ ହାତ ସିନା ସିଝି ଗଲାଣି । ହେଲେ ତମ ତାଳୁରୁ ତଳପା ଯାଏ ଯେ ସର୍ଦ୍ଦି ଏକାବେଳକେ ରୁନ୍ଧ ଦେଇଥିଲା—ସେଥିରୁ ଯେ ବାରଣା ରକ୍ଷା ପାଇଲଣି, ସେ କଥା ଆଉ ମନକୁ ଆସୁ ନାହିଁ !

(କଥା କହିବା ସଙ୍ଗେ ସଙ୍ଗେ ଶୋଭା ତଉଲିଆଟା ରଖି ଆଉ ଗୋଟାଏ ତଉଲିଆ ଆଣି ପୋଛୁଲେ)

ମାଧବ—ନାହିଁ-ନାହିଁ—ସେ କଥା ମୁଁ ଠିକ୍ ବୁଝି ପାରୁଚ ଯେ, ତେବେ ମଣିଷ ଦେହ ତ···ଭାବିଲି, ଆଜି ସକାଳୁ ତ ଶହେ ନ' ଡିଗ୍ରୀ ଗରମ ·ଆରମ୍ଭ ହେଲାଣି—ଯାଏଁ, ଟିକେ ଅଣ୍ଡା ପାଣିରେ ପୋଛୁ ହେଇ ପଡ଼େ—

ଶୋଭା—ସ୍ୱା'କୁ ପୋଛୁ ହେଇ ପଡ଼ିବା କହନ୍ତ ? ଆଜ ଯେତେ ପାଣି ଢାଳ ହେଲଣି ନା—ସ୍ୱା'ର ଫଳ ପୁଣି ତମକୁ ପନ୍ଦର ଦିନ ଭୋଗିବାକୁ ପଡ଼ିବ । ଏତେ ଚେଷ୍ଟା-ଯତ୍ନ କରି ଦେହଟାକୁ ତମର ସଜାଡ଼ି ଆଣିଥିଲି ; ପୁଣି ଆଜ ବିଗାଡ଼ି ଦେଇ ବସିଲ ? ମୁଁ ଘରେ ନ ଥିଲି ବୋଲି ସିନା ତମର ଏ ଦୁଃସାହସ ହେଲା ?

ମାଧବ—ନାଇଁ—

ଶୋଭା—କ'ଣ ନାଇଁ ?···ନାଇଁ ନାଇଁ ପୁଣି କ'ଣ ହଉଚ ?

ମାଧବ—ସତ କଥା ଶୋଭା, ତମେ ଘରେ ଥିଲେ କ'ଣ ମୁଁ ଗାଧୁଆ ଘରେ ପଶିବାକୁ ସାହସ କରିଥାନ୍ତ ?

ଶୋଭା—କ'ଣ ଯେ ତମକୁ ମୁଁ ଆଉ କହିବି ? ବାହାସାହା ହେଇ, ଛୁଆପିଲା ନେଇ ଘର ସଂସାର କଲ—ସବୁଦିନେ ତମର ଏଇ ବୁଦ୍ଧି—ଏଇ କଥା ? ···ଆଚ୍ଛା, ମୁଁ ଯଦି ଘୁଁକଣ୍ଟ ବାକଣ୍ଟ ଛାଡ଼ି, ଚବିଶ୍ ଘଣ୍ଟା ତମକୁ ଘରେ ଜଗି ବସିବି, ତା'ହେଲେ ଅବସ୍ଥା କ'ଣ ହବ କହିଲ ?

(ଆଉ ଗୋଟାଏ ତଉଲିଆ ବଦଳେଇ ପୋଛୁଲେ)

ମାଧବ—ଓହୋ ହୋ ! ଆସ୍ତେ—ଆସ୍ତେ ଶୋଭା ! ଏ ଶୁଖିଲା ରଗଡ଼ା ତଉଲିଆଟାରେ ଏତେ ଜୋରରେ ମୁଣ୍ଡଟା ପୋଛୁ ଦଉଚ ଯେ, ମୁଣ୍ଡ ଭିତରଟା ଧପ୍‌ଧପ୍ ହେଇ ଯାଉଚି ।

ଶୋଭା—ହଉ ପଛେ, ମୁଁ ପୋଛୁବି ।

ମାଧବ—ତିନଟା ତଉଲିଆରେ ତ ତିନଥର ପୋଛୁ ସାରିଲଣି—ପାଣି ଆଉ ବୁନ୍ଦାଏ ବି ନାଇଁ—ଫୁଲା ଫୁଲା ହେଇ ମୁଣ୍ଡର ବାଳ ଉପୁଡ଼ି ଆସିଲାଣି ! ଥାଉ ଭଲା ସେତିକ ।

ଶୋଭା -- ସେତିକି ପାଣି ଆଜ ତମେ ଢାଳି ଦେଇଚ ନା, ତମ ମୁଣ୍ଡ ଅଧେ ଚନ୍ଦା ଦେଇ ଗଲେବି ଦୋଷ ନାହିଁ। ....କ'ଣ ସିଏ ମୁକ୍ତା ? ( ମୁକ୍ତା ହାତରେ ଗୋଟାଏ ଗ୍ଲାସ ଧରି ଆସିଚି )

ମୁକ୍ତା—ସିଝା ମିଶିଆ ପାଣି ।

ଶୋଭା—ଭଲ ହୋଇ ସିଝିଚି ତ ?

ମୁକ୍ତା—ହଁ। ଅଦା, ତେଜପତ୍ର ପକେଇ ଭଲ କରି ସିଝେଇ ଦେଇଚି । ପାଣି ଗବ ଗବ ହୋଇ ଫୁଟିଲାରୁ ପରା ଯାଇ ଚୂଲିରୁ ଓହ୍ଲେଇ, ଶୀତଳ କରି ଆଣିଚି।

ଶୋଭା—ହଉ ରଖି ଦେଇ ଯା — ତେଣେ ରୋଷେଇବାସ କଥା ଦେଖ । (ଗ୍ଲାସ ରଖିଦେଇ ମୁକ୍ତା ଚାଲିଗଲା)

ମାଧବ—ଏ ମୁକ୍ତା ବି କମ୍ ନୁହେଁ । ତମ କଥା ଅନୁସାରେ ସବୁ କାମ ଠିକ୍ ଧାରାରେ କରି ଚାଲିଚି ।

ଶୋଭା—ଆଉ କ'ଣ ତମରି ଭଳିଆ ହୋଇଚି—ସବୁ ବେ-ଧାରା ବେଆଇନ କାମ କରିବ । ଖାଲି ଦେହଟାରେ ବସିଲ କାହିଁକି ? ଗେଞ୍ଜିଟା ପିନ୍ଧ । ଏଇ, ଏ ଗେଞ୍ଜିଟା ପିନ୍ଧ ।

(ଦେଲେ—ମାଧବ ପିନ୍ଧିଲେ)

ମାଧବ—ମୋ ସାର୍ଟଟା ସେଠି ଦବଟି ।

ଶୋଭା – ସାର୍ଟ । ନାଇଁ ସାର୍ଟ ପିନ୍ଧିବା ଦର୍କାର ନାହିଁ । ନିଅ, ଏଇଟା ପିନ୍ଧ (ସୁଏଟାର୍ ଟାଏ ଦେଲେ )

ମାଧବ – ଏଇଟା !! ଏ ସୁଏଟାରଟା ମୁଁ ପିନ୍ଧିବି !

ଶୋଭା—ଓଃ । ଆଗେ ପିନ୍ଧିଲ ତମେ । ପରେ କଥା କହିବ ।

ମାଧବ—ଏ ଦୂରହାତ ଗଳାବନ୍ଦ ସୁଏଟାର୍‌ଟା ପିନ୍ଧିବି ?

ଶୋଭା---ପିନ୍ଧ ପରା କହୁଚି ।

ମାଧବ—ଏ ଶହେ ନ' ଡ଼ିଗ୍ରୀ ଗରମରେ ?

ଶୋଭା—ଭଲରେ ପିନ୍ଧିବ ନାହିଁ ତା' ହେଲେ ?
ମାଧବ—ହଉ । (ପିନ୍ଧିଲେ)
ଶୋଭା—ହୁଁ । ···ଦେଖି, ମୁହଁଟା ଟେକିଲ । (ନିଜେ ଟେକି ଧରିଲେ)
ମାଧବ—କ'ଣ ?
ଶୋଭା—ଟେନ୍‌ସିଲଟା ଦରକାର ହେଉନି ତ ?
ମାଧବ—ନା ।
ଶୋଭା—ଠିକ୍ କହୁଚ ତ ? ଦରକାର ହେଉଥିଲେ, ନିଅ ଏ ମଫଲାର ଗଳାରେ ଗୁଡ଼େଇ ଦିଅ ।
ମାଧବ—ନାହିଁ ଶୋଭା—ଟେନ୍‌ସିଲ୍ ମୋଟେ ଦରକାର ହେଉନି ।
ଶୋଭା—ଦରକାର ହେଉନି ତ ଭଲ କଥା । ଆଚ୍ଛା, ଏଥର ମିଶ୍ରି ପାଣି ପିଅ । (ଦେଲେ)
ମାଧବ—ତମେ ପିଇବ ନାହିଁ ? ନିଅ, ତମେ ଟିକିଏ ପିଅ ।
ଶୋଭା—ନାହିଁ—ନାହିଁ—ମୁଁ କାହିଁକି ସିଝା ମିଶ୍ରୀ ପାଣି ପିଇବି ? ମୋର ହେଇଚି କ'ଣ ? ତମେ ପିଅ । ସବୁ ତକ ପିଇବ ।
ମାଧବ—( ପିଇ ପିଇ ) ସିଝା ମିଶ୍ରୀ ପାଣି—ତମେ କେବେ ପିଇଚ ଶୋଭା ?
ଶୋଭା—ପିଇଚି ? ଖୁବ୍ ପିଇଚି ।
ମାଧବ—ଏମିତି ଅଦା—ତେଜପତ୍ର ପଡ଼ିଥିବ—
ଶୋଭା—କହୁଚି ପରା, ଖୁବ୍ ପିଇଚି ।
ମାଧବ—କେମିତି ଲାଗେ କହିଲ ?
ଶୋଭା—ତମକୁ ଆଉ ପାରିହବ ନାହିଁ ଦେଖୁଚି ! ଗିଲାସଟା ହାତରେ ଧରି ପିଲାଙ୍କ ପରି ଢଙ୍ଗ ବାହାରୁଚି । ପିଇଦବତ ଆଗେ । ମଲା ଏମିତି ଟିକେ ଟିକେ କରି ଚୁମୁଚ କ'ଣ ? ଢୋକ ଢୋକ କରି ପିଇଦିଅ । ହୁଁ ! ଗୁହ୍ମାଁଚ କ'ଣ ପିଇଦିଅ ।

ମାଧବ (ପିଇଲେ) ଆଜ ତମେ ଡ଼ିଉଟିକୁ ଯିବ ଶୋଭା ?
ଶୋଭା—ମୁଁ ଘରେ ରହିଲେ ତମକୁ ଅଡ଼ୁଆ ହଉଚ ପରା !
ମାଧବ—ମୁଁ କହିଲି ଏ କଥା ?
ଶୋଭା—କେବଳ ତମରି ପାଇଁ ତ ଆଠ ଦିନ ଛୁଟି ନେଇ ଘରେ ରହିଥିଲି । ଆଜ ଜଏନ୍ ନ କଲେ ଗୃହକର୍ମ ଚଳିବ କେମିତି ?
ମାଧବ—ହଁ, ଡାକ୍ତର ଖାନା ଗୃହକର୍ମ—
ଶୋଭା ଶୁଣ, ମୁଁ ଆଜ ଡ଼ିଉଟିକୁ ଯାଉଚ । ଦି'ଚାରିଦିନ ଡ଼ିଉଟି କରି ପୁଣି ପଚ୍ଛକେ ତମ ଦେହ ସମ୍ପୂର୍ଣ୍ଣ ଭଲ ହେବାଯାଏ ଛୁଟି ନେଇ । ହେଲେ ମୁଁ ଘରେ ନ ରହିଲେ ଯଦି ତମେ ତମ ଦେହ ପ୍ରତି ନଜର ନ ଦିଅ—
ମାଧବ—ନାଇଁ ଶୋଭା, ତମେ ଡ଼ିଉଟିକୁ ଯାଅ, ଦେଖିବ, ତମ କଥା ଅନୁସାରେ ମୁଁ ଠିକ୍ ଚଳିବ ।
ଶୋଭା—ତା' ଛଡ଼ା ତମ ନିଜ ତରଫରୁ ତମେ ନିଜେ ଟିକଏ ଜାଗ୍ରତ ରହି ଚଞ୍ଚଳ ଭଲ ହୋଇ ନ ଉଠିଲେ ଏ ଛୁଆପିଲାଙ୍କ ଜଞ୍ଜାଳକୁ ପାରି ଉଠିବା ମୁସ୍କିଲ ହୋଇ ଉଠିବ ।
ମାଧବ-- ତମେ କହିଲ ଭଲ—ଛୁଆ ପିଲାଙ୍କ କଥା କ'ଣ ମୁଁ ବୁଝେ ନାଇଁ ! ଆଜ ମୋ ଦେହଟା ଟିକଏ ଖରାପ ହୋଇଗଲା ବୋଲି···
ଶୋଭା—ସେଇ କଥା ତ ମୁଁ କହୁଚ । ତମ ଦେହ ଖରାପ ହେଲା ବୋଲି ତ ମୁଁ ଆଠ ଦିନ ଛୁଟି ନେଇ ଘରେ ରହିଲି । ଆମ ନୂଆ ସୁପରିନ୍‌ଟେନ୍‌ଡେଣ୍ଟଙ୍କ କଥା ତ ତମେ ଜାଣ । ଆଉ ଛୁଟି ନେଲେ ଗୃହକର୍ମ ଉପରେ ବାଧା ପଡ଼ିବ ।
ମାଧବ—ନାଇଁ ଶୋଭା, ତମେ ଆଜ ଯାଇ ଜଏନ୍ କର । ଆଉ ଛୁଟି ନବା ଦର୍କାର ନାହିଁ ।···ମୋ ଦେହ ବି ଆଜ ଖୁବ୍ ଭଲ ଲାଗୁଚ ।

ଶୋଭା—ଭଲ ଲାଗୁଚ ତ ଭଲ କଥା । ଦେଖି, ନାକ ସୁଁ କଲ । (ମାଧବ ସୁଁ କଲେ) ନା, ସର୍ଦ୍ଦି ସେମିତି ଥିଲା ପରି ଜଣା ପଡୁନି !

ମାଧବ—ମୋଟେ ପରା ନାହିଁ । ଏ ସୁଏଟାର୍‌ଟା ତା' ହେଲେ ଖୋଲି ଦଉଚ ।

ଶୋଭା—ନା-ନା-ନା-ସୁଏଟାର୍ ଏଇନେ ଖୋଲି ପାରିବ ନାହିଁ । ସୁନାଟା ପରା - ଅନ୍ତତଃ ଆଉ ଘଣ୍ଟାଏ ପିନ୍ଧ-ତା' ପରେ ପଛେ ଖୋଲି ଦବ ।

ମାଧବ—ଆଚ୍ଛା ।

ଶୋଭା—ପିଲାଏ ଆଜି ସ୍କୁଲରୁ ଫେରିଲା ବେଳକୁ ତ ମୁଁ ଡିଉଟିକୁ ଚାଲି ଯାଇଥିବି ।

ମାଧବ—ସେମାନଙ୍କର ପରା ଆଜି କ୍ଲାସ ପ୍ରମୋଶନ ।

ଶୋଭା—ସତେ ତ ! ଆଜି ସେମାନଙ୍କର କ୍ଲାସ ପ୍ରମୋଶନ । ଫେରିବାକୁ ବୋଧହୁଏ ଡେରିହବ ।

ମାଧବ—ହଁ, ଡେରି ନିଶ୍ଚୟ ହବ ।

ଶୋଭା—ତା'ହେଲେ ସେମାନଙ୍କ ପାଇଁ ଖାଇବା ତରକାରୀ ଗରମ ରଖିବାକୁ ପଡ଼ିବ । ଏ ଆଠଦିନ ସେ ଅଡ଼ୁଆ ନ ଥିଲା । ଆଜେ ମୁକ୍ତା—

ମାଧବ—ସେ କଥା ମୁଁ ବୁଝୁଚ । ତମେ ଗଲ, ଗାଧୁଆ ପାଧୁଆ କଲ, ନ ହେଲେ ତମର ପୁଣି ଡେରି ହେଇଯିବ ।

ଶୋଭା—ହଁ, ଆଠଦିନ ଛୁଟି ପରେ ଆଜି ଜଏନ୍ କରୁଚ—ଠିକ୍ ସମୟରେ ପହଞ୍ଚିବା ଦରକାର ।···ମୁଁ ଯାଏଁ······

—*—

## ଦ୍ୱିତୀୟ ଦୃଶ୍ୟ

( ସମୟ—ମଧ୍ୟାହ୍ନ । ମାଧବ ଗୋଟିଏ କଣ ସିଲେଇ କରୁଥାନ୍ତି । କାବୁଲ ଡାକ ଡାକ ଆସିଲା )

କାବୁଲି—( ଡାକ ଡାକ ) ବାପା-ବାପା—

ମାଧବ—କରେ କାବୁଲା ! ସ୍କୁଲରୁ ଆସିଲୁ ? କ'ଣ, ପ୍ରମୋଶନ ପାଇଛୁଟି ?

କାବୁଲ—ହଁ, ମୁଁ ପୁଣି ପ୍ରମୋଶନ ପାଇବିନି ? ପ୍ରମୋଶନ ପାଇଚ-ପୋଜିସନ ରଖିଚ । ଶୁଣିବ ମୋ ନମ୍ବର ?

ମାଧବ—ରହ । ସେ ଦିହେଁ କୁଆଡ଼େ ଗଲେ ?

କାବୁଲ—କିଏ ? ଦୀପି ଅପା, ଶେଫି ଅପା ?

ମାଧବ—ହଁ !

କାବୁଲ—ତେମେ ତ ଆଚ୍ଛା କଥା କହୁଚ ବାପା ? ମୁ ପୁଅ ପିଲା-ସେମାନେ ଝିଅ ପିଲା—ଆମ ସ୍କୁଲ ଏ ପାଖରେ—ତାଙ୍କ ସ୍କୁଲ ସେ ପାଖରେ—ମୁଁ ଆସିଲି ଚୂଲି ଚୂଲି—ସେମାନେ ଆସିବେ ବସ୍‌ରେ । ମୁଁ କେମିତି ଜାଣିବି ସେମାନେ କାହାନ୍ତି ?···

ମାଧବ—ଆରେ ମୁଁ କ'ଣ ଜାଣିନି ଏ ସବୁ କଥା ଯେ, ତୁ ମୋ ଆଗରେ ବାଖ୍ୟାକରି କହୁଚୁ ? ପଚୁରୁଚି କାଳେ ବାଟରେ କୋଉଠି ଭେଟିଥିବୁ ?

କାବୁଲ—ନା, ମୁଁ କୋଉଠି କାହାକୁ ଭେଟିନି । ଏଇ ଦେଖ ବାପା, ମୋ ପ୍ରଗ୍ରେସ୍ ରିପୋର୍ଟ—ଅଙ୍କରେ ଏକାନବେ —

ମାଧବ—ଓଃ, ଥାଉ ତୋ ପ୍ରଗ୍ରେସ୍ ରିପୋର୍ଟ—ତୋ ବୋଉ ଆସିଲେ ଦେଖିବ ।

ଶେଫାଳି—(ପ୍ରବେଶ କରି ଧୀର ଗଳାରେ) ବାପା !

ମାଧବ—ଏଇ ସେ ଦୁହେଁ ଆସିଲେଣି । କଲେ ମା, ତୁ ଏକା ?
ଦୀପାଳୀ କାହିଁ ?

ଶେଫାଳି—ତମେ ଆଗେ କହିଲ ବାପା, ବୋଉ ଆଜ ଡ଼ିଉଟିକ
ଯାଇଚକି ନାହିଁ ?

ମାଧବ—ହଁ ଯାଇଚ ।

ଶେଫାଳି—ତା ହେଲେ ଦୀପି ବର୍ତ୍ତିର ରକ୍ଷା ପାଇଗଲା । (ବଡ଼ ପାଟିରେ)
ଆଲୋ ହେ ଦୀପି, ସେ ଖରାଟାରେ ଆଉ ଠିଆ ହେଇଚୁ
କାହିଁକି ? ବୋଉ ନାହିଁ—ଆ । ଘର ଭିତରକୁ ଆ ।

ମାଧବ—କାହିଁକି, କଣ ହେଇଚ ? ଦୀପାଳି କଣ ପରୀକ୍ଷାରେ କିଛି
ଖରାପ କରିଚ ?

ଶେଫାଳି—ସେ ପ୍ରମୋଶନ ପାଇଚ ଯେ, ତା'ର ଗୋଟାଏ ଦି'ଟା
ସବ୍‌ଜେକ୍ଟରେ ଖରାପ କରିଚ । (ମୁହଁ ଶୁଖେଇ ଦୀପାଳି ଆସିଲା)

ମାଧବ—ପ୍ରମୋଶନ ତ ପାଇଚ—ଆଉ ଦୋଷ ରହିଲା କେଉଁଠି ?
ତୋର କ'ଣ ହେଇଚ ?

ଶେଫାଳି—ମୁଁ ତ ଖୁବ୍ ଭଲରେ ପାଶ କରିଚ । ଏଇ ଦେଖନ୍ତୁ
ଆମ ପ୍ରଗ୍ରେସ ରିପୋର୍ଟ । ଦେ' ଦୀପି, ତୋ'ରିପୋର୍ଟ ବାହାର
କର ।

ମାଧବ—ତମେ ସମସ୍ତେ ଆଗେ ଖାଇବ ଚାଲ । ବୋଉ ଡିଉଟିରୁ
ଫେରିଲେ—ତମ ରିପୋର୍ଟ ସବୁ ଦେଖିବ ।

ଦୀପାଳି—(କାନ୍ଦକାନ୍ଦ ହୋଇ) ବୋଉକୁ ରିପୋର୍ଟ ଦେଖେଇବା କଥା
ସିନା ତମେ କହୁଚ ବାପା—ହେଲେ ବୋଉ ଏ ରିପୋର୍ଟ
ଦେଖିଲେ କ'ଣ ଆଉ କିଛି ବାକି ରଖିବ ? କହିବ, ସ୍କୁଲରୁ
ନାଁ କଟେଇ ଘରେ ଆସି ରୋଷେଇ ବାସ କର ।

କାବୁଲ—ଆହା, ହା ! ବର୍ତ୍ତିଗ କ ହାଇରାଣରେ ପଡ଼ିଲା ! !

ଧାପାଳ—ଚୁପ୍ ବଦମାସ । ମୁଁ ଡଚଚ କହୁଚ ।
କାବୁଳ—ଦେଖୁଚ ବାପା—ଏଇନେ ନାକ ସୁଁ ସୁଁ କରୁଥିଲା । ମୁଁ କହିଲାରୁ ମୋ ଉପରେ କେମିନ୍ତି ଫାଇଁ ଫାଇଁ ହଉଚ ।
ଧାପାଳ—ଭଲକଲ, ଆଜ୍ଞାକଲ ! ତୋର କ'ଣ ଗଲାବେ—ବଜାଣ୍ଟ !! ତୁ ଯଦି ଫେଲ୍ ହୋଇ ନଯାଇଚୁ ?
କାବୁଳ—ଫେଲ୍ ! ! (ହସିଉଠିଲା) ଶୁଣୁଚ ବାପା ? ମୁଁ କୁଆଡ଼େ ଫେଲ୍ ହେବ ? ଜାନ୍ତେ ହୈ ଧାପିଅପା—ମୈ ପାଶ୍ କଷ୍ଟା—ପୋଜସନ ରଖା—ଅଉର୍ ବୋଲ୍ତେ ମୈ ଫେଲ୍ ହୁଙ୍ଗା ! ! ହୁଁ !
ଶେଫାଳ—ହେ କାବୁଳ । ବେଶି ଫାଜଲ୍ ହୋଇ ଯାଉଚୁ ! ବାପାଙ୍କ ଆଗରେ ହିନ୍ଦି କୁହାହଉଚ ?
କାବୁଳ—କାହିଁ କହିବନାହିଁ ? ହିନ୍ଦିରେ ଫାଷ୍ଟ ହୋଇଚ, କହିବନାହିଁ କାହିଁକ ?
ଧାପାଳ—ଓଃ ! ଯୋଉଡ ହିନ୍ଦି କୁହା ହଉଚ ! ! ସବୁଭୁଲ ।
କାବୁଳ—ତୁମ୍ ଚୁପ୍ କରୋ ।
ଧାପାଳ—ଦେଖିଲ ବାପା ।
ମାଧବ—ଓହୋ କାହିଁକ ତେମେ ଦହେଁ ଭଲା ଏମିତି ହଉଚ ? ହଁ କହିବୁଟି ଧାପାଳ, ତୋର କ'ଣ ହୋଇଚ ?
ଶେଫାଳ—ସେ ଦ'ଟା ସବ୍‌ଜେକ୍ଟରେ ଫେଲ୍ ହୋଇଚ ।
ମାଧବ—କୋଉ କୋଉ ସବ୍‌ଜେକ୍ଟ ?
କାବୁଳ—ଅଙ୍କ ଆଉ ସାହିତ୍ୟ ।
ଧାପାଳ—ଇସ୍ ! ଭାର କହିଲବାଲା ! ମୁଁ ଫେର୍ ଅଙ୍କ ସାହିତ୍ୟରେ ଫେଲ୍ ହେବ ! ଜାଣୁ, ସାହିତ୍ୟରେ ମୋର ସେକେଣ୍ଡ ହାଇଏଷ୍ଟ !

ମାଧବ—ଆଉ କୋଉଥିରେ ତେବେ ଫେଲ୍ ହୋଇଚୁ ? କାଇଁ ତୋ ପ୍ରଗ୍ରେସ ରିପୋର୍ଟରେତ କୋଉଠି ନାଲି କାଳି ମୁଣ୍ଡିଳା ବୁଲିନାଇଁ ।

ଶେଫାଳି—ବୁଲିଥିଲା ଯେ—

ମାଧବ—କ'ଣ ପୁଣି ହେଲା ?

ଶେଫାଳି—ଆମ ସ୍କୁଲ ଅଫିସ ଦପ୍ତରୀଠୁଁ ଖଣ୍ଡେ କାଳିଲିଭା ରବର ମାଗିଆଣି ଘଷିଘଷି ନଭେଇ ଦେଲି ।

ମାଧବ—ହଇଲେ ମା, ନଭେଇ ଦେଇଚୁ ?

ଶେଫାଳି—ହଁ । ପ୍ରଗ୍ରେସ ରିପୋର୍ଟରେ ନାଲି ମୁଣ୍ଡିଳା ଦେଖିଲେ ମତେ ଘର କାନ୍ଦମାଡ଼େ । ସେଇଥିପାଇଁ ମୁଁ ନଭେଇ ଦେଲି ।

କାବୁଲି—କପି ! ବାପା ଇଏ ପୂରିକପି । ପ୍ରଗ୍ରେସ ରିପୋର୍ଟରୁ ଯିଏ ଲେଖା ନଭେଇ ଦିଏ ସିଏ କପି କରେନା ତ ଆଉ କ'ଣ କରେ ? କପି—ଧାପି ଅପା କପି କରନ୍ତି ହେ ।

ଶେଫାଳି—କାବୁଲି ଅତି ଫାଜିଲ ହୋଇ ଯାଉଚି ! ପୁଣି ବାପାଙ୍କ ଆଗରେ ଛନ୍ଦ ଶୁଣେଇଲା !

କାବୁଲି—ତୁ ବାପାଙ୍କ ଆଗରେ ମୋ ଉପରେ ରାଗି କଡ଼ମଡ଼ କରି ଦାନ୍ତ ଶୁଣେଇଉଚୁଟି—ମୁଁ ଛନ୍ଦ ଶୁଣେଇଲେ କ'ଣ ହେଲା ?

ମାଧବ—ଓଃ, ତୁ ରହିବୁଟି କାବୁଲି । ( ଶେଫାଳିକୁ ) ତା'ହେଲେ ମା' ତୁ ଏଇ ଛନ୍ଦରେ ଫେଲ୍ ହୋଇଚୁ ?

ଶେଫାଳି—ହଁ ଛନ୍ଦରେ ।

କାବୁଲି—ଛନ୍ଦରେ ! ବାଃ ! ବାଃ ! ନଜେ ଛନ୍ଦରେ ଫେଲ୍—ମତେ କହୁଥିଲା ଯେ ମୁଁ ଭୁଲ ଛନ୍ଦ କହୁଚି ।

ଶେଫାଳି—କାବୁଲି !

କାବୁଲି—କ'ଣ ?

ଶେଫାଳି—ତୁ ଏଠି ଚୁପ୍‌ହୋଇ ବସ ।
କାବୁଲି—ହଉ ବସୁଚି । (ବସିଲା)
ମାଧବ—ଆଚ୍ଛା ମା, ତୁ ଆଉ କୋଉଥିରେ ଫେଲ୍ ହୋଇଚୁ ?
ଶେଫାଳି—ସିଲେଇ ।
କାବୁଲି - (ହସିଉଠିଲା)
ଶେଫାଳି—ଏ କାବୁଲି ? ଏମିତି ହେଁ ହେଁ ହୋଇ ହସୁଚୁ କାହିଁକି ?
କାବୁଲି—ତୁ କହିଲୁ ଶେଫିଅପା, ଝିଅପିଲା ସିଲେଇରେ ଫେଲ୍ ହବାକଥା ଶୁଣିଲେ ହସ ମାଡିବ ନାହିଁ ? ତୁ ନିଜେ ସିଲେଇରେ ଫେଲ୍ ହୋଇ ଥିଲେ ତୁ ନିଜେ ମୋ'ର୍ ଭଳି ହସନ୍ତୁ ନାହିଁ ?
ମାଧବ—କାବୁଲି !
କାବୁଲି— ଆଜ୍ଞା ।
ମାଧବ—ତୁ ଚୁପ୍‌ହୋଇ ବସିଲୁ ବାପା ।
କାବୁଲି—ହଉ ବସୁଚି ।
ମାଧବ—ନାଇଁ, ଆଉ ବସିବ କ'ଣ ! ଚାଲ ସମସ୍ତେ—ଖାଇବ ଚାଲ ।
ଶେଫାଳି—ନାଇଁ, ବାପା, ତମେ ଆଗ ମୋ କଥା ବୁଝ ।
ଶେଫାଳି—ସତେ ବାପା, ତମେ ଟିକି କଥା ବୁଝ । ନଇଲେ ବୋଉ ଆସିଲେ ତା'ର ଆଉ ରକ୍ଷାନାହିଁ ।
ମାଧବ—ସିଏ ପ୍ରମୋଶନ୍ ପାଇଚି—ଦେଖିବୁ, ବୋଉ ତୋର ଆଉ କିଛି କହିବନି ।
ଶେଫାଳି—ନାଇଁ ବାପା-ତେମେ ଜାଣିନ ! ବୋଉ କହିବ, ସିଲେଇରେ ଯଦି ଫେଲ୍ ହେଲୁ ତେବେ ସ୍କୁଲରୁ ନାଁ କଟେଇ ଦେଇ ଘରେ ଆସି ବସି ଖାଲି ସିଲେଇ କର ।
କାବୁଲି—ତେବେତ ଭଲକଥା । ପଢ଼ାପଢ଼ିର ଝିଂଝଟ ନାଇଁ ।

ତର୍ଜନେ ଛୁଞ୍ଚ ଆଉ ତବାଏ ସୂତା ଆଣି ଘରେ ବସି ସିଲେଇ କରିବୁ । ପଢ଼ିଲେ ଏକା ମୋ'ର ଏଇ ଜାମାଟା ! ଦେଖିଲୁ, ଏ ପକେଟ୍ ପାଖରୁ କେମିତି ସିଲେଇ ଫିଟି ଗଲାଣି ।

ଶ୍ରୀପାଳ—ତମେ ଶୁଣୁଥା ବାପା—କାବୁଲ ଯଦି ମତେ ଏମିତି ଥଟ୍ଟା କରିବ—ତା'ହେଲେ ତା ଦି ପାଟିକି ମୁଁ ସିଲେଇ କରିଦେବି ।

କାବୁଲ—ଅାଚ୍ଛାଜୀ—ହାମ୍‌ଭି ଦେଖେ ଗା ।

ଶେଫାଳ—ତୁ ଚୁପ ହୋଇ ବସୁଚୁ ନା ନାଇଁ କାବୁଲ ?

କାବୁଲ—ବସିଚତ ।

ଶ୍ରୀପାଳ—ହଉ ଦେଖିବା ଯେ ବୋଉ ଆସିଯାଉ ! କେମିତି ତୋର ଏ ଫାଜଲମି ରହିବ, ଦେଖିବା ।

କାବୁଲ—କାହିଁକି ? ମୁଁ କ'ଣ କୋଉଥିରେ ଫେଲ୍ ହୋଇଚକି ମୋର ଫାଜଲମି ରହିବ ନାହିଁ ?

ଶ୍ରୀପାଳ—ହଉ, ଦେଖିବା ଯେ—

କାବୁଲ—ହିଁହିଁ—ଦେଖା ଯାଏଗା ।

ମାଧବ—ଆରେ ଚୂଲସବୁ ଖାଇବ ଚାଲ । କେତେ ବେଳ ହେଲାଣି-

ଶ୍ରୀପାଳ—ମୋ କଥା କଣ ହବ ବାପା ?

ମାଧବ—ଆଲୋ କିଛି ହବନାହିଁ । ସିଲେଇ ଆଉ ସ୍କୁଲରେ ଫେଲ ହବାକଥା—ତୁ ତୋ' ବୋଉକୁ କିଛି କହିବୁ ନାଇଁ । ପ୍ରଗ୍ରେସ ରିପୋର୍ଟରେତ ନାଲି କାଳିର ମୁଣ୍ଡଲା ନାହିଁ । ଆଉ ତୋ ବୋଉର କ'ଣ ବେଳ ହେବ ଏତେ କଥା ପଚାରି ବୁଝିବାକୁ ?

କାବୁଲ—ହାମ୍‌ତ କହ ଦେଙ୍ଗା ।

ଶ୍ରୀପାଳ—କ'ଣ କହ ଦେଙ୍ଗା ? ( ସଙ୍କେଇ ହୋଇ ) ଏଇ ଦେଖ ବାପା, କାବୁଲ କହୁଚି ବୋଉକୁ କହିଦେବ ।

ମାଧବ—କ'ଣ କହିବ ?

ଦିପାଳି—ମୋ ପ୍ରଗ୍ରେସ ରିପୋର୍ଟ କଥା ।

ଶେଫାଳି—ସତେ ବାପା—ଏ କାବୁଲିଟା ଘର ବଦମାସ ହୋଇ-ଗଲାଣି । ବୋଉ ତାକୁ ମୋଟେ ଶାସନ କରୁନି ।

ମାଧବ—ହଉ, ତୋ ବୋଉ ଆଜ ଆସୁ—ମୁଁ ତାକୁ କହିବି—ଛୁଆ ପିଲାଙ୍କୁ ଏମିତି ବଢ଼େଇଲେ, ତାଙ୍କୁ କିଏ କେମିତି ଚଳେଇବ ?

କାବୁଲି—କାହିଁକି—ମୁଁ କ'ଣ କଲିକି ?

ଶେଫାଳି—ଦିପି ବିଚାରୀ କ'ଣ ଦି ଗୁରି ନମ୍ବର କମ୍ ରଖିଚି ବୋଲି ତା' ମନ ଘର ଧରିଲାଣି ! ତୁ ପୁଣି ଏତିକି ବେଳେ ତାକୁ ଧମକଉଚୁ, କଣନା,—"ବୋଉ ଆଗରେ କହିଦେବି" ।

ଦିପାଳି—(କାନ୍ଦ କାନ୍ଦ ହୋଇ) ସତରେ କାବୁଲି, ତୁ ବୋଉ ଆଗରେ କହିଦବୁ ?

କାବୁଲି—ନାଇଁ ଲୋ ମୋ ସୁନାଅପା, ମୁଁ ମୋଟେ କହିବିନାହିଁ ।

ଦିପାଳି—ଠିକ୍ କହୁଚୁତ କହିବୁ ନାହିଁ ?

କାବୁଲି—ନା ଲୋ'—ମୋଟେ କହିବି ନାହିଁ ।

ମାଧବ—ହଉ, ଆସ ତା'ହେଲେ—ଖାଇବ ଆସ ।



## ତୃତୀୟ ଦୃଶ୍ୟ

( ପୂର୍ବର ସେଇ କୋଠରୀ । ଖିଆପିଆ ଶେଷ ହୋଇ ଯାଇଚ । ମାଧବ ଆସିଲେ )

ମାଧବ—(ବଡ଼ ପାଟିରେ) ଆରେ କୁଆଡ଼େ ଗଲ ସବୁ ? କାବୁଲ ?

କାବୁଲ – (ଦୂରରୁ) ଆଜ୍ଞା ।

ମାଧବ – କ'ଣ ସବୁ ତେଣେ ହଉଚ ? ଘଣ୍ଟା କେତେ ହେଲାଣି ?

କାବୁଲ—ଗୋଟାଏ ବାଜିଲାଣି ।

ମାଧବ—ସମସ୍ତେ ଏଠିକି ଆସତ । ( ସମସ୍ତେ ଆସିଲେ )

ସମସ୍ତେ—କ'ଣ ବାପା ?

ମାଧବ – ଦିନ ଆସି ଗୋଟାଏ ବାଜିଲାଣି । ସମସ୍ତେ ଟିକେ ଟିକେ ଶୋଇପଡ଼ ।

ସମସ୍ତେ—ଶୋଇବୁ ?

ମାଧବ—ହଁ, ଶୋଇପଡ଼ ।

ଶେଫାଳି— ନାଇଁ ବାପା, ଆଜି ଆମେ ଶୋଇବୁ ନାଇଁ ।

ମାଧବ—କ'ଣ ହେଲା ? ଏ ଯୋଉ ଖରା, ଏ ସାରା ଦିପହରଟ! ଆଉ କରିବ କ'ଣ ? ଯାଅ, ସମସ୍ତେ ଶୋଇପଡ଼ ।

ଶେଫାଳି—ନାଇଁ ବାପା, ଆଜି ଆମର ପ୍ରମୋଶନ । ପୁଣି ସ୍କୁଲ ଛୁଟି । ଆଜି ଆମେ ଶୋଇବୁନାହିଁ, ଖେଳିବୁ ।

ମାଧବ—ଖେଳିବ ?

ଦୀପାଳି—ହଁ ବାପା, ଶେଫିଅପା ଠିକ୍ କଥା କହୁଚ । ଆଜି ଆମେ ଶୋଇବୁ ନାହିଁ ।

ମାଧବ – କିରେ କାବୁଲି, ତୁ କ'ଣ କହୁଚୁ ?

କାବୁଲ—ଶେଫିଅପା ଝପି ଅପାଙ୍କ କଥାରୁ ମୁଁ କ'ଣ କେବେ ବାହାର ଯାଏ ? ଆଜ ଖରାବେଳେ ଆମେ ଶୋଇବୁ ନାହିଁ । ଶୋଇଲେ ବ ଆମକୁ ନଦ ହବ ନାହିଁ ।

ମାଧବ—ଭଲକଥା, ତମେମାନେ ସବୁ କେହ୍ନ ମୋ' କଥା ନମାନିବ ମୋର ଆଉ ଉପାୟ କ'ଣ ? ତୋ' ବୋଉ ଆଜ ଆସି ବୁଝୁ ଏ କଥା । ମୁଁ ଆଉ ପାରିବ ନାହିଁ ।

ଶେଫାଳି—ପୁଣି ତ ତମେ ସେଇକଥା କହିଲ ବାପା । ବୋଉ ସବୁ ବୁଝିବ—ଆମେ ଆଉ ତମକୁ କହିଲୁ କାହିଁକ ?

ମାଧବ—ହେଲେ ଏ ସାରା ଦ'ପହରଟା ନ ଶୋଇ ଖେଳିଲେ ଦେହ ଖରାପ ହେବ ଯେ ( ମୁକ୍ତା ଆସିଲ )

ମୁକ୍ତା—ହଁ ଶେଫି ଦେଈ · ସମସ୍ତେ ଶୋଇପଡ଼ । ଏ ଖରା ବେଳଟାରେ ଚେଇଁ ରହିଲେ ଦେହ ଝାଉଁଳ ଯିବ । ପୁଣି ତମ ବାପାଙ୍କ ଦେହ ଭଲନାହିଁ ।

ଶେଫାଳି—ଭଲନାହିଁ ? କଣ ହେଇଚ ?

ଝିପାଳି—କ'ଣ ହେଇଚ ବାପା ? ମୁଣ୍ଡ ବିନ୍ଧୁଚ ?

କାବୁଲ—ପେଟକୁ ମାରୁଚ ?

ମୁକ୍ତା—ପେଟକୁ କାହିଁକ ମାରିବମ ? ସେଇ ପୁରୁଣା ବେମାରି—ସର୍ଦ୍ଦି, ଥଣ୍ଡା । ଏଇପରା—ସକାଳୁ ଆଜ ଥଣ୍ଡା ପାଣିରେ ଗାଧୋଇ ପଡ଼ିଥିଲେ ବୋଲ ମାସୁଏଟାରିଟା ଘିନ୍ଧେଇ ଦେଇ ଯାଇଥିଲେ ।

ଶେଫାଳି—ସର୍ଦ୍ଦିରୁ ଆଉ ଜର ହେଇନାତ ? ଦେଖି ବାପା ତମ ଦେହ ତାତିଚକ ନାହିଁ ? ( ଦେହ ପରୀକ୍ଷା କଲା )

ଝିପାଳି—ଖାଲି ମୁଣ୍ଡରେ ହାତମାରି ଦେଖୁଚୁ କ'ଣ ଅପା ? ବେକ ତଳକୁ ହାତମାରି ଦେଖ—ତାତିଚୁ ?

କାବୁଲ—ତୁ ପରା ନାଡ଼ ଦେଖି ଜାଣୁ ଶେଫିଅପା—ନାଡ଼ ଦେଖୁନୁ ଜର ଅଛିକ ନାଇଁ ।

ମାଧବ—ଆରେ ନାଇଁ ବାବୁ ମୋର କଛୁ ହେଇନ । ତମ ବୋଉ କଥା କ'ଣ ତମେ ସବୁ ଜାଣିନ ? କେବେଯାଇ ସର୍ଦ୍ଦି ହେଇ ଥିଲା—ଆଜ ହଠାତ୍ ହୁକୁମ ହେଲା—ସୁଏଟାର ପିନ୍ଧ ! ପିନ୍ଧିଲି । ବୋଉ ତମର ଯାଇ ଶକ୍ସାରେ ବସିଥିବକ ନାଇଁ, ସୁଏଟାର୍ କାଢ଼ି ରଖିଦେଲି ।

ଶେଫାଳି—ତମ ଦେହ ତା'ହେଲେ ଭଲ ଅଛିଟି ବାପା ?

ମାଧବ—ସମ୍ପୂର୍ଣ୍ଣ ଭଲଅଛି ।

ଶେଫାଳି—ରକ୍ଷା ! ଏ ମୁକ୍ତା ଯୋଉଠି ଥବ !

ମୁକ୍ତା—ମୁଁ କ'ଣ କରିବିମ ? ମା ଯାହା କହିଥିଲେ ନା ।

ଶେଫାଳି—ହଉ, ତୁ ଖାଇ ସାରିଲୁଣିତ ?

ମୁକ୍ତା—ହଁ ।

ଶେଫାଳି—ତା'ହେଲେ ତୁ ଯା' ଶୁଅ ।

ମୁକ୍ତା—ତମେ ସବୁ କେହି ଶୋଇବ ନାଇଁ ?

କାବଲି—ତୁମ୍ ପୁଛନେବାଲେ କୋନ୍ ହୈ ?

ମୁକ୍ତା—ମୋ ମାଲେ !! ମୁଁ ମୋର ଯାଉଚ—ତମେ ନ ଶୁଅ ।

( ପ୍ରସ୍ଥାନ )

ମାଧବ—ତା'ହେଲେ ? ବର୍ତ୍ତମାନ ବଗ୍ଡର କ'ଣ ?

ଶେଫାଳି—କଛିନାହିଁ । ଆମେ ଖେଳବା—ତେମେବ ଆମ ସାଥିରେ ଖେଳବ ।

ମାଧବ—କ ଖେଳ ?

ଶେଫାଳି—ତାସ୍ ।

କାବୁଲି—ତା-ଆ-ସ୍ । ତାସ୍ ମତେ ଖେଲ ଆସେନ । ବେଗାଟେଲ ।

ଶେଫାଳି—ଉଁଃ ! ବେଶ୍ ଗୋଟାଏ ଖେଳ !!

ମାଧବ—ଶୁଣ ମୁଁ ଯାହା କହୁଛି—ଏ ଖେଳକଥା କିଛି ନୁହେଁ । ଘାପାଳି, ସିଲେଇ ବାକ୍ସଟା ଆଣିବୁଟି ।

ଘାପାଳି—ସିଲେଇ ବାକ୍ସ ?

କାବୁଲି—ମର୍‌ଗଲି । ସିଲେଇ ନାଁ ଶୁଣି ଘପିଅପା ମର୍‌ଗଲି ।

ଘାପାଳି—ଦେଖିଲ ବାପା, କାବୁଲିକୁ !

ମାଧବ—ତୁ ଆଗେ ସିଲେଇ ବାକ୍ସଟା ଆଣତ । ମୁଁ ତୋତେ ସିଲେଇ କରିବାକୁ କହୁନ ।

ଘାପାଳି—ଆଉ ?

ମାଧବ—ଶେଫାଳି ସିଲେଇ କରିବ—ମୁଁ ସିଲେଇ କରିବି—ତେମେ ଦୁହେଁ ଆମକୁ ସାହାଯ୍ୟ କରିବ । କ'ଣରେ କାବୁଲି ?

କାବୁଲି—ହଁ ବାପା, ମୁଁ ରେଡ଼ି । ହେଲେ ଆଗେ ମୋର ଏଇ ସାର୍ଟଟା ।

ମାଧବ—ହଁ, ହଁ—ଆଗେ ତୋ ସାର୍ଟଟା ହବ । ଶେଫାଳି ! ଇଏ କଣ ମା ? ତୁ କାଇଁକି ମୁହଁ ଶୁଖେଇ ବସିଲୁଣି ?

ଶେଫାଳି—ନାଇଁ ମ । ମୁହଁ ଶୁଖେଇ କାହିଁକି ବସିବି ? ଆମେ ଶୋଇଲୁ ନାଇଁ ବୋଲି, ତେମେ ଶୋଇଲ ନାହିଁ । ତମ ଦେହ କାଳେ କିଛି ଖରାପ ହବ !

ମାଧବ—କହୁଛି ପରା-ମୋ ଦେହ କିଛି ହେଇନ । ଏଗୁଡ଼ିକ ଏଣେ କେତେ ସିଲେଇ କାମ ବାକି ପଡ଼ିଲାଣି ଦେଖିଲୁ ? ଆଣିଲୁ ମା-ସିଲେଇ ବାକ୍ସ ?

ଘାପାଳି—ହଁ । ( ବାକ୍ସ ଆଣିଲା )

ମାଧବ—ହଉଆସ—ସମସ୍ତେ ଏଇଠିକି ଆସ ।

( ରାସ୍ତାରେ ସବ୍‌ଜି ବାଲାର ଡାକ ଶୁଭିଲା )

କାବୁଲି—ବାପା ! ସର୍ବତ !·· ଆମକୁ ସର୍ବତ କିଣିଦିଅ ବାପା ! ···
ବାପା !!

ମାଧବ—ଆରେ ବାବୁ, ଟିକଏ ଧର୍ଯ୍ୟ ଧର ।

ଶେଫାଳି—ଆମେ କଣ ଅଧର୍ଯ୍ୟ ହେଉଚୁକି ବାପା ?

ମାଧବ—ଆଉ କଏ ଅଧର୍ଯ୍ୟ ହଉଚି ?

ଧାପାଲି—ସେଇ କଲିଜା ଥଣ୍ଡା ବରଫ ବାଲାଟା ଗୁଲିଯିବ ବୋଲି
ଅଧର୍ଯ୍ୟ ହଉଚି !

ମାଧବ—ଆଚ୍ଛା ଆଜି ଥାଉ—ଆଉଦିନେ ଦେଖିବା ।

କାବୁଲି—କାହିଁକିନା—ଆଜି ରବିବାର କାହିଁକି ? ଆଜି ଆମେ
ପ୍ରମୋଶନ ପାଇଚୁ ।

ଶେଫାଳି—ଏବର୍ଷ ଖରାଦିନ ଆରମ୍ଭରୁ ଆମେ କେହି ଥଣ୍ଡା ସରବତ
ଖାଇନୁ ।

ମାଧବ—ହଉ ଯାଅ—ତିନିଗ୍ଲାସ ଆଣ !

ଶେଫାଳି—ତିନି ଗ୍ଲାସ ! ! ତମେ ଖାଇବ ନାହିଁକି ?

ମାଧବ—ମୋ ଦେହ ପରା—

ଧାପାଲି—ମିଛକଥା ! ଏଇନେତ ତମେ କହିଲ ତମ ଦେହ କିଛି
ହୋଇନି ।

ମାଧବ—କହିଲି ସିନା—ହେଲେ···

ଶେଫାଳି—ତା'ହେଲେ ଥାଉ । ତମ ଦେହ ଯଦି ଖରାପ—ଆମ
ସର୍ବତ ଖିଆ ଏବେ ନ ହେଲା ! ହଁ, ଦେଖିଲ ବାପା, ବୋଉର
ଏ ବ୍ଲାଉଜ୍‌ଟା !

ମାଧବ—କ'ଣ ହେଇଚି ?

କାବୁଲି—ସର୍ବତ କଥା କ'ଣ ହେଲାମ ଶେଫି ଅପା ?

ଶେଫାଳି—ଓଃ ! ତୁ ରହ, ପାଟି କରନା । ଏଇ ଦେଖ, ଏ କାନ୍ଧ

ଉପର ସିଲେଇ ପାଖରୁ କେମିତି ଫାଟି ଯାଇଛି । ଘର ଅଡ଼ୁଆ
କାମ—ମୁଁ ପାରିବ ନାହିଁ ।

ମାଧବ—ଆଚ୍ଛା, ସେଇଟା ମତେ ଦେ—ତୁ ଏ ଡକଆ ଖୋଲଟା
ଦେଖ । ଆଉ ଧାପାଳ, ତୁ ଯା, ସେ ବରଫ ବାଲାଠୁ ଗୁରିଗ୍ଲାସ
ସର୍ବତ ଆଣ ।

କାବୁଲ—ଗୁରିଗ୍ଲାସ ଆସିବଟି ବାପା ?

ମାଧବ—ହଁ ।

କାବୁଲ—ବାଃ ! ଏଇଥର ଯେ ମଜା । ଖାପି ଅପା, ଫୁର୍ତ୍ତି ଯା—
ଡେଇ କରୁଛ କାହିଁ ?

ଶେଫାଳି—(ହସି) କ ହ୍ୱାନୀ କହୁଚ ! ତୁ ଧାପି, ଟ୍ରେଟା ନେଇଯା—
ଆଉ ଗୁରିଟା ଗ୍ଲାସ ନେଇଯା ।

ଧାପାଳ—ପଇସା ?

ମାଧବ—ଏଇ ନେ--ଯା । (ପଇସା ନେଇ ଧାପାଳ ଚାଲିଗଲା)

ଶେଫାଳି—ମୋର ସିଲେଇରେ ଏଥର କେତେ ନମ୍ବର ଅଛି ଜାଣିଚ
ବାପା ?

ମାଧବ—କେତେ ?

ଶେଫାଳି—ତିରିଶିରୁ ସତେଇଶି ।

କାବୁଲ—ସତେଇଶି ? ?

ଶେଫାଳି—ହଁ ।

କାବୁଲ—କ୍ୟା ବାତ୍ ?

ଶେଫାଳି—ମୋ ଟେବୁଲ କ୍ଲଥ୍‌ଟାରେ ଅଧେ ନମ୍ବର ଉଠେଇ ଦେଲେ ।
କନା ଉପରେ ନାଁ ଲେଖାଟା ଏକା ଭାରି ସୁନ୍ଦର ହୋଇଥିଲା ।

ମାଧବ—କାହା ନାଁ ଲେଖିଥିଲୁ ?

ଶେଫାଳି—ତମରି ନାଁ ପରା ! କ୍ୟାପିଟାଲ ଲେଟର୍‌ରେ ତମର ପୂରା
ନାଁଟା ଲେଖିଥିଲି—ମାଧବାନନ୍ଦ ଦାସ ।

ମାଧବ – ସତେ ? ମୋ ନାଁ ଲେଖିଥିଲୁ ?

ଶେଫାଳି—ଆମ ଦଦ ମତେ ପଚାରିଲେ—ଏ ମାଧବାନନ୍ଦ ଦାସ କିଏ ଶେଫାଳି ?

କାବୁଲି—ତୁ କ'ଣ କହିଲୁ ?

ଶେଫାଳି – ବୋକାଟା କରେ ? କ'ଣ ଆଉ କହନ୍ତି ? କହିଲି ମୋ ବାପା ।

ମାଧବ—ସେଇଠୁ ?

ଶେଫାଳି—ସେଇଠୁ ଦଦ କହିଲେ—କାହିଁ, ମାଧବାନନ୍ଦ ଦାସ ତ ତୋ ଗାର୍ଡ଼ିୟାନ ନୁହନ୍ତି !

ମାଧବ—ସେଇଠୁ ?

ଶେଫାଳି—ମୁଁ କହିଲି—ନା, ମୋର ମା' ଶୋଭାଦେବୀ ମୋର ଗାର୍ଡ଼ିୟାନ ।

କାବୁଲି—ତମ ଦଦ ସେଇଠୁ କ'ଣ କହିଲେ ?

ଶେଫାଳି – କହିଲେ – ସାବାସ୍ ! ପିଲାଝିଲାଙ୍କ ଗାର୍ଡ଼ିଆନ ମା'ମାନେ ହବା ଉଚିତ ।

କାବୁଲି—ହେଲେ ବାପା, ଆମ ସାର୍ ମତେ କ'ଣ କହିଲେ ଜାଣ ? କହିଲେ—କରେ ଟୋକା—ତୋ' ବାପା ତ ଏଠି ଅଛନ୍ତି—ତୋ ମା' କାହିଁକି ତୋର ଗାର୍ଡ଼ିଆନ୍ ହେଇଚନ୍ତି ?

ମାଧବ—(ହସିହସି) ସେଇଠୁ ତୁ କ'ଣ କହିଲୁ ?

କାବୁଲି—କ'ଣ ଆଉ କହିବ ? କିଛି କହି ପାରିଲି ନାହିଁ । ଆଚ୍ଛା କହିଲ ବାପା, କାହାକଥା ଠିକ୍ ? ଆମ ସାର୍‌ଙ୍କ କଥା ଠିକ୍ ନାଁ ଶେଫିଅପା ଦଦଙ୍କ କଥା ଠିକ୍ ।

ମାଧବ—(ହସିହସି) ଦୁହିଁଙ୍କ କଥା ଠିକ୍ ।

ଧଂପାଳ—(ବଡ଼କଡ଼ ଆସିଲ) ଅପା, ଧର ଅପା, ପଡ଼ିଯିବ ।

କାବୁଲି—ପଡ଼ିଯିବ ତ ମାରିଡାଲୁଙ୍ଗା । ସର୍ବତ ଗ୍ଲାସ ଆଣିପାରୁନ
—କହୁଚ - ପଡ଼ିଯିବ !

ଘପାଳ—ଏ କାବୁଲି, ସେମିତି କହୁଚ ତୋତେ ଟୋପାଏ
ଦେବନ ।

ଶେଫାଳି—ଏଇ ନଅ ବାପା, ତମର ନଅ ( ସର୍ବତ ଦେଲା)

ମାଧବ - ଆରେ ତମେ ସମସ୍ତେ ଆସ । ବସ ଏଠି । ହୁଁ, ମୁଁ ତ
ଏତେ ଖାଇ ପାରିବ ନାହିଁ । ମୁକ୍ତା କାହିଁ ଗଲା ? ଶୋଇଚ ?

ଶେଫାଳି—ହଁ । ତମେ ପିଇଦିଅ ମ ବାପା, କଷ୍ଟ ହବନ ।

ମାଧବ—ଆଚ୍ଛା ପିଉଚ । କରେ କାବୁଲି କେମିତି ହେଇଚ ?

କାବୁଲି—ଓଃ ! ଫାଷ୍ଟକ୍ଲାସ ! ଖୁବ୍ ଥଣ୍ଡା—ଖୁବ୍ ମିଠା ।

ମାଧବ—(ପିଇ) ସତେ ତ, ଭାରି ସୁନ୍ଦର ସର୍ବତ ହେଇଚ । ହଉ,
ପିଅ,ପିଅ । ଧିରେ ସୁସ୍ଥେ ଏଇଠି ବସି ସମସ୍ତେ ପିଅ ।

(ସମସ୍ତେ ପିଇବାରେ ଲଗିଲେ । ଏତିକବେଳେ ଶୋଭା ଆସିଲେ)

ଶୋଭା—ହୁଁ, ଏଇ ପାଲି ତା'ହେଲେ ଏଠି ଚାଲିଚ ?

( ଶୋଭାଙ୍କୁ ଦେଖି ସମସ୍ତେ ଡରିଗଲେଣି )

ମାଧବ—ଆରେ—ରେ ଶୋଭା । ତମେ ଏତେ ଚଞ୍ଚଳ ଆସିଲ
କେମିତି ? ପାଞ୍ଚଟା ତ ବାଜିନାହିଁ !

ଶୋଭା—କ'ଣ ଏତିକରେ ମନ ମାନିଲା ନାହିଁ ଯେ, ନଉମୋନଆକୁ
ନିମନ୍ତ୍ରଣ କରାହଉଚ !

ମାଧବ—ତମେ ତ ଡଉଟିରୁ ଏତେ ବେଗି ଫେରି ଆସିଲ ଶୋଭା !
ତମ ଦେହ ଭଲଅଛିଟି ?

ଶୋଭା—ମୁଁ ଯାହା କହୁଚ—ମୁଁ ଆଉ ଏ ଘରେ ରହି ପାରିବ
ନାହିଁ । ମୁଁ ମୋର ଯାଉଚ କୁଆଡ଼େ ଚାଲିଯିବ । ଖାସ ତମର
ଦେହ ପାଇଁ ମୁଁ ଡଉଟି କରି ପାରିଲି ନାହିଁ—ପଳେଇ ଆସିଲି ।
ତମର ଏଣେ ବରଫ ସରବତ୍ ଖିଆ ଚାଲିଚ !

ମାଧବ—ତମେ ଦେଖୁନ ଶୋଭା—ମୋ ଦେହ ଆଜ ସମ୍ପୂର୍ଣ୍ଣ ଭଲ ଅଛି ।

ଶୋଭା—ଆଜ ତ ସମ୍ପୂର୍ଣ୍ଣ ଭଲ ଅଛି ! ହେଲେ ଆଠଦିନ ତଳେ କ'ଣ ଥିଲ ? ଏଇ ଦ'ଦିନ ତଳେ କାହିଁକି ନାକ ସୁଁ ସୁଁ କରୁଥିଲ ? ଏଭଳି ଲୋକଙ୍କୁ ନେଇ ମଣିଷ ଯେ କେମିତି ଚଳିବ, ମୁଁ ବୁଝିପାରୁନ ।

ମାଧବ—ଆଜ···ତମେ ତ ଜାଣିଚ ଶୋଭା—ଆଜ ପିଲାମାନଙ୍କର କ୍ଲାସ ପ୍ରମୋଶନ ହେଲା । ସମସ୍ତେ ପ୍ରମୋଶନ ପାଇଚନ୍ତି । ହଁ, ସମସ୍ତେ ବେଶ୍ ଭଲ ନମ୍ବର ରଖି ପ୍ରମୋଶନ ପାଇଚନ୍ତି ।

ଶୋଭା—ଓ, ତା'ହେଲେ ସେଇ ଆନନ୍ଦରେ ଏ ସବୁ ତ ଖିଆ ଚାଲିଥିଲା ! ଏ ସବୁ ତ ଖାଇବା କଥା ଉଠେଇଲା କିଏ ? କୁହ, କିଏ ଆରମ୍ଭ କଲା ?

( ପିଲାମାନେ ମୁହଁ ତଳକୁ କରି ଠିଆ ହୋଇଥା'ନ୍ତି )

ଶୋଭା—ଓଃ ! ତିନୋଟି ଯାକ ମୂର୍ତ୍ତି ଯେମିତି ପଥରରେ ତିଆରି—କାହାରି ପାଟିରୁ କଥା ବାହାରୁ ନାହିଁ ! କେହି କିଛି ଜାଣନ୍ତି ନାହିଁ ! କରେ କାବୁଲ, ତୁ କହ, କରେ କହୁନୁ—ମୋ ମୁହଁକୁ ଏମିତି ଜଳ ଜଳ କରି ଅନେଇଚୁ କାହିଁକି—କହ-ସ୍ୱା ମୂଳରେ ତୁ ?

କାବୁଲ—( ଡରିଡରି ) ନେହିଁ ମା'ଜୀ—ମୈଁ କୁଛ୍ ନାହିଁ······

ଶୋଭା—ଚୁପ୍ ? ଫାଜିଲ ଟୋକା ! ମତେ ପୁଣି ହିନ୍ଦୀରେ ଜବାବ୍ ଦିଆ ହଉଚି ! କେବେଠୁ ଏମିତି ହିନ୍ଦୀ କହି ଶିଖିଲୁଣି ? ଦେବି ଧରି କାନମୋଡ଼ି ଦେ' ଚଟକଣା ଯେ—( କାବୁଲ ସୁଁ ସୁଁ ହୋଇ କାନ୍ଦିବ ) ଓଃ ! କଥା ପଦକରେ ଆଖିରୁ ଲୁହ ଝରି ପଡ଼ିଲା ! ଏମିତି ସୁକୁମାର କେବେଠୁଁ ହେଲୁମ ?

ମାଧବ—ତମେ ଚାଲିବଟି ଶୋଭା—ଏ ନଗଟ ଖରଟାରେ ଆସିଚ,
ଆଗେ ମୁହଁହାତ ଧୋଇବ ଚାଲ ।

ଶୋଭା—ପିଲା ଚାଲିଗଲେ—ମତେ ପୁଣି ହ୍ୱାଡ୍ରିରେ ଜବାବ୍ ଦଉଚ !
...ଗୋପାଳ !

ଗୋପାଳ—ହଁ ବୋଉ ।

ଶୋଭା—କ'ଣ ହଁ ବୋଉ ?

ଗୋପାଳ—ଏଇ କାବୁଲି ଭାରି ବଦ୍‌ମାସ ହେଇ ଗଲାଣି । ମତେ ପରା
ଏଇନେ କହୁଥିଲା ?

ଶୋଭା—କଣ କହୁଥିଲା ?

ଗୋପାଳ—କହୁଥିଲା—"କହଦୁଙ୍ଗା" ।

ଶୋଭା—କ'ଣ ?

ଗୋପାଳ—କହିଲା ପରା—"କହଦୁଙ୍ଗା" ।

ଶୋଭା—କଣ କହଦୁଙ୍ଗା ? ( ଗୋପାଳ ନୀରବ) କଲେ, ପଚାରୁଚି ପରା-
କ'ଣ କହଦୁଙ୍ଗା ? କହୁଚୁନା ପୁଣି ଏଇନେ ଦେଖିବୁ ?

ଗୋପାଳ—(କାନ୍ଦକାନ୍ଦ) ମୁଁ କଚ୍ଛୁ ଜାଣିନ ।

ଶୋଭା—ଜାଣିନୁ ତ କହୁଥିଲୁ କାହିଁକି ? ଓଃ, ପୁଣି କାନ୍ଦ ଦେଖ !

ମାଧବ—ତମେ ଚାଲିବଟି ଏଠୁ ଶୋଭା—ଘରକୁ ଆସିଲତ ପିଲା
ଗୁଡ଼ାଙ୍କୁ କନ୍ଦେଇଲ !

ଶୋଭା—ଖାସ୍ ତମରି ପାଇଁ ! ତମେ ଏମାନଙ୍କୁ ମୁହଁଦେଇ ଦେଇ
ଏମିତି କଲଣି ।

ମାଧବ—ହଉ ତମେ ଚାଲିବଟି—ମୁହଁ ହାତ ଧୋଇବ ।

ଶୋଭା—ମୁଁ ଯିବି କୁଆଡ଼େ ? ଆଗେ ତମେ ଆସ । ଏଇ ନିଅ
ଥର୍ମୋମେଟାର—ମୁହଁରେ ଦିଅ-ମୁଁ ଦେଖେ ତମ ଦେହ
କେମିତି ଅଛି ?

# ଶେଷ ଦୃଶ୍ୟ

( ଶୋଭା କାଗଜ ପତ୍ର ଦେଖୁଥାନ୍ତି )

ମାଧବ—ରାତି ନଅଟା ବାଜଲାଣି ଶୋଭା, ଶୋଇବ ନାହିଁ ?

ଶୋଭା—ଏ ଆଠ ଦିନର ଗୁଡ଼ାଏ କାମ ବାକି ଥିଲା । ସବୁ କାଗଜପତ୍ର ଘରକୁ ନେଇ ଆସିଛି । ଆଉ ଘଣ୍ଟାଏ ବସିଲେ ସରିଯିବ ।

ମାଧବ—ନାହିଁ-ନାହିଁ ଆଜି ସେତିକି ଥାଉ । କାଲି ସକାଳେ ପଡ଼େ କାମ କରିବ । ଦିନଯାକ ହସ୍‌ପିଟାଲ୍‌ରେ ଖଟି ଖଟି ପୁଣି ଘରେ ଆସି ରାତି ଅଧଯାଏ କାମ କଲେ ନିଜ ଦେହର ଅବସ୍ଥା କ'ଣ ହବ କହିଲ ? ଆସ । ଉଠିଆସ ।

ଶୋଭା—ପିଲାଏ ଶୋଇଲେଣି ?

ମାଧବ—ହଁ, ସମସ୍ତଙ୍କୁ ଶୁଆଇ ପକେଇଲିଣି । ତମକୁ ପ୍ରଗ୍ରେସ ରିପୋର୍ଟ ଦେଖେଇବା ଉପରେ କିଏ କୁଆଡ଼େ ଶୋଇ ପଡ଼ିଲେଣି ।

ଶୋଭା—ତମେ ବୁଝିନ ! ତମଠୁଁ ତ ଦୁନିଆଯାକର ସ୍ନେହ ପାଉଚନ୍ତି —ମୋଠୁ ଟିକିଏ ଶାସନ ନ ପାଇଲେ ବିଗିଡ଼ି ଯିବେ ଯେ ! ହଁ, ତମେ ଯାଇ ଶୁଅ—ମୁଁ ଏଇ ଟିକିଏ ପରେ ଯାଉଚି ।

ମାଧବ—ହଉ ତମେ ଚଞ୍ଚଳ ଆସ । (ପ୍ରସ୍ଥାନ)

ସନାତନ—(ବାହାରୁ) ବାବୁ ଅଛନ୍ତି, ବାବୁ—

ଶୋଭା—ଆଲୋ ମୁକ୍ତା ! ବାହାରେ ଦେଖିଲୁ, କିଏ ଡାକୁଚି ?

ମୁକ୍ତା—କିଏ ? [କହୁ କହୁ ମୁକ୍ତା ଯାଇ ସଦର ଦରଜା ଫିଟାଇଲା । ବାହାରେ ସନାତନ ]

ସନା—ଏଇଟା ମାଧବବାବୁଙ୍କ ଘର ତ ?

ମୁକ୍ତା—କୋଉ ମାଧବ ବାବୁ ?

ସନା—ବାବୁ ମାଧବାନନ୍ଦ ଦାସ—ମୌଜେ ନୂଆଁଖାଇ—ପ୍ରଗଣେ ......

ମୁକ୍ତା—ନା, ନା, ଏଠି କେହି ମାଧବ ବାବୁ ନାହାନ୍ତି ।

ସନା କି ଆଚମ୍ବିତ କଥା ! ! ଏ ସାହାଲିରେ ତ ହେଇ ପହିଲେ ସେ ଦୋମହଲା କୋଠା, ତା ପାଖକୁ ପୁଣି ଗୋଟାଏ ଦୋମହଲା, ତା ପାଖକୁ ସେ ଗୁଳଘର—ଗୁଳଘର ପାଖକୁ ଖପରଲ ଘର, ଖପରଲ ଘର ପାଖକୁ ତ ହେଇଛି ଏ ଏକମହାଲା କୋଠା—ଠିକଣା ବିଲୁକୁଲ୍ ମିଳି ଯାଉଚି—ଆଉ ନାହିଁ କରୁଚ କ'ଣ ?

ମୁକ୍ତା—କହିଲିପରା ଏଇଟା ମାଧବବାବୁଙ୍କ ଘର ନୁହେଁ ।

ସନା—କଓ ମୁଁ କଣ ଆଜ ନୂଆ କଠକ ଆସିଲି କି ? ଏ ସାହାଲିକୁ ସିନା କେବେ ଆସିନି !

ମୁକ୍ତା—ଏ ସାହାଲିରେ ସେମିତିଆ ବାବୁ କେହି ନାହାନ୍ତି ।

ସନା—ଏଇଟା ତେବେ କାହାଘର ?

ମୁକ୍ତା - ଏଇଟା ଶୋଭାଦେବୀଙ୍କ ଘର । ହେଇ ଏ କାନ୍ଥରେ ଦେଖ, ଏତେ ଏତେ ବଡ଼ ଅକ୍ଷରରେ ଲେଖା ହେଇଚି — ଶ୍ରୀମତୀ ଶୋଭା ଦେବୀ ।

ସନା—ଇଏତ ଆଚ୍ଛା ହଇରାଣରେ ମଣିଷ ପଡ଼ିଲା ! ! ଆଚ୍ଛା, ତେମେ କିଏ ମତେ କହିଲ ?

ମୁକ୍ତା—ମୁଁ କିଏ ସେଥିରେ ତମର କ'ଣ ଅଛି ହୋ ! ଗ୍ଳଲିଯାଅ ଏଠୁ ।

ସନା—କାହିଁକି ଗ୍ଳଲିଯିବି ହେ ? ମୁଁ ପରା କହୁଚି—ଏଇଟା ଆମ ବାବୁଙ୍କ ଘର ।

ମୁକ୍ତା—ମୁଁ କହୁଚି ଏଇଟା ଶୋଭା ଦେବୀଙ୍କ ଘର । ତେମେ ଗ୍ଳଲିଯାଅ ।

(କବାଟ ବନ୍ଦ କରିବାକୁ ଯାଉଥିଲା)

ସନା—ଆରେ ମୋ କଥା ଶୁଣ ଭଲା !

ମୁକ୍ତା—ବେଶୀ ବକବକ୍ ହବତ କୁକୁର ଲଗେଇ ଦେବ—ଚାଲିଯାଅ ଏଠୁଁ ।        (କବାଟ ବନ୍ଦ କରିଦେଲା)

ସନା—(ବାହାରୁ) ଆରେ ଆରେ ! ଧଡ଼କନା କବାଟଟା ବନ୍ଦ କରି ଦେଇ ଚାଲିଗଲ ! ଶୁଣିଯାଅ—ହୋ ନାନୀ !

(ମୁକ୍ତା ଘର ଭିତରକୁ ଆସିଲା)

ଶୋଭା—କ'ଣ କଲେ ମୁକ୍ତା ?

ମୁକ୍ତା—କିଏ ଗୋଟାଏ କୋଉଠୁ ଆସି କୋଉ ମାଧବବାବୁଙ୍କୁ ଖୋଜୁଛି ।

ଶୋଭା—ମାଧବବାବୁ !

ମୁକ୍ତା—ହଁ, ବୋଉ ମାଧବାନନ୍ଦ ଦାସ !

ଶୋଭା—ତୁ କ'ଣ କହିଲୁ ?

ମୁକ୍ତା—କହିଲି; ଏଠି ମାଧବବାବୁ କେହି ନାହାନ୍ତି । ଏଇଟା ଶୋଭା ଦେଈଙ୍କ ଘର ।

ଶୋଭା—ଆଲୋ ଟୁଣ୍ଡୀ, ବର୍ଷେ ହେଲା ଏଠି ରହିଲୁଣି—ତୋ ବାବୁଙ୍କ ନାଁ ତୁ ଜାଣିନୁ ?

ମୁକ୍ତା—ଆମ ବାବୁଙ୍କ ନାଁ କ'ଣ କି ?

ଶୋଭା—(ହସି) କ'ଣ ଆଉ କହିବି ତୋତେ ?

ମୁକ୍ତା—ମୁଁ କେମିତି ଜାଣିବି କହିଲ ମା ! ଏ ବର୍ଷେ ହେଲା ତ ସିଏ ଏଠିକି ଆସେ—ସିଏ ଖୋଜେ ଶୋଭାଦେବୀଙ୍କି । ସମସ୍ତଙ୍କ ମୁହଁରୁ ମୁଁ ଶୁଣେ—ଶୋଭା ଦେବୀଙ୍କ ଘର । ମୁଁ ଆଉ କେମିତି ଜାଣିଲି ଭଲା ?

ଶୋଭା—ଆଲୋ ସେ ଅଛନ୍ତି ନା ଗଲେଣି ?

ମୁକ୍ତା—ଥିଲେ ତ ।

ଶୋଭା—ଯା ଡାକିଆଣ ତାଙ୍କୁ । (ମୁକ୍ତା ଗଲା ଓ ପ୍ରାୟ ସଙ୍ଗେ ସଙ୍ଗେ ସନାତନ ସହ ଆସିଲା)

ସନା—ଦଣ୍ଡବତ ମା ! ବାବୁଙ୍କ ପାଖକୁ ଗୋଟାଏ ଖବର ଆଣିଥିଲି ।

ଶୋଭା—କୁହ । ବାବୁ ଶୋଇଲେଣି—ମତେ କହିଲେ ବାବୁ ଖବର ପାଇଯିବେ ଯେ ।

ସନା—ବୁଝିଲି—ମା ବୁଝିଲି । ମୁଁ ଆପଣଙ୍କ ଭାଗଚାଷୀ । ମୋ' ଗାଡ଼ି ଆଜି କଟକ ଆସିଲା ଯେ, ଆପଣଙ୍କ ଗୁମାସ୍ତା ମୋ' ଗାଡ଼ିରେ ଗୃହବସ୍ତ୍ର ଚାଉଳ ଆପଣଙ୍କ ପାଇଁ ପଠେଇଚନ୍ତି । ଚାଉଳ ମାଲ-ଗୋଦାମରେ ଅଛି—କାଲି ସକାଳୁ ଲୋକ ଗଲେ ନେଇ ଆସିବ । ମୋ ନାଁ ସନାତନ ।

ଶୋଭା—ହଉ ଭଲ କଥା । ତୁମେ ଆସ—ଗୋଡ଼ହାତ ଧୋଇ—

ସନା—ନାଇଁ ମା—ମୋ ସାଙ୍ଗରେ ଲୋକେ ହେଇ ସେ ଛକ ଉପରେ ବଇଚନ୍ତି, ରାତି ହେଇ ଯାଉଛି—ମତେ ମାଲଗୋଦାମ ଫେରିବାକୁ ହବ । ଘରଟ ଦେଖିଲିଣି—ଏଣିକି ଆସିବି ଯେ ! ଯାଉଚି ମା—ଦଣ୍ଡବତ । (ପ୍ରସ୍ଥାନ)

ଶୋଭା—ମୁକ୍ତା, ଯା—କବାଟଟା ଦେଇ ଦେ । (ମୁକ୍ତାର ପ୍ରସ୍ଥାନ । ଟିକିଏ ପରେ ମାଧବ ଆସିଲେ)

ଶୋଭା—ତମେ ନ ଶୋଇ ଉଠି ଆସିଲ ଯେ ?

ମାଧବ—ଏ ଘରୁ ଯେମିତି କାହା ପାଟି ଶୁଭିଲା ? କିଏ ଆସିଥିଲା ?

ଶୋଭା—ସନାତନ ।

ମାଧବ—ସନାତନ ?

ଶୋଭା—ତମ ଗାଁ ଭାଗଚାଷୀ ।

ମାଧବ—କାହିଁକି ଆସିଥିଲା ?

ଶୋଭା—ଗାଁରୁ ଗୃହଳ ଆସିଚ ଯେ, ସେଇ କଥା କହିବାକୁ ଆସିଥିଲି ।

ମାଧବ—ଗଲାଣି ?

ଶୋଭା—ହିଁ ।···ଗୋଟାଏ ଭାରି ମଜା ଘଟଣା ଏଠି ଘଟିଲା ।

ମାଧବ—କ'ଣ ?

ଶୋଭା—ସନାତନ ଆସି ମାଧବନନ୍ଦ ଦାସଙ୍କ ଘର ଖୋଜିଲା ।

ମାଧବ—କୋଉ ମାଧବାନନ୍ଦ ଦାସ ?

ଶୋଭା—ବାଃ ! ତମେ ବି କଣ ମୁକ୍ତାଭଳି କହିଲଣି !

ମାଧବ—ମାନେ ?

ଶୋଭା—ମୁକ୍ତା ସନାତନକୁ କହିଲା—(ହସି) ଏଠି ମାଧବବାବୁ କେହି ନାହାନ୍ତି—ଏଇଟା ଶୋଭା ଦେଈଙ୍କ ଘର ।

ମାଧବ—(ହୋ ହୋ ହୋଇ ହସି) ବୁଝିଲି, ବୁଝିଲି !···ଶୋଭାଦେବୀଙ୍କ ଘର—ଶୋଭାଦେବୀଙ୍କ ପରିବାର !! କଥାଟା କାନକୁ ଯେମିତି ଶୁଭୁଚି, ମନକୁ ବି ସେମିତି ପାଉଚି ! ନା ଶୋଭା ??

(ଦୁହେଁ ହସୁଥାନ୍ତି)



## ଏ ପରିବାରରେ ଅଛନ୍ତି:

ଦିବାକର ବାବୁ ଓଭରସିଅର୍—ଗୃହସ୍ୱାମୀ (ବୟସ—୪୦ବର୍ଷ)

ମାମିବୋଉ—ତାଙ୍କ ପତ୍ନୀ (ବୟସ—୩୭ବର୍ଷ)

ମାମି—ତାଙ୍କ ବଡ଼ଝିଅ (ବୟସ—୧୭ବର୍ଷ)

ଛବି—ତାଙ୍କ ସାନଝିଅ (ବୟସ—୧୪ବର୍ଷ)

ଟିଙ୍କୁ—ତାଙ୍କ ପୁଅ (ବୟସ—୧୧ବର୍ଷ)

ଓ

ସୁଦାମ—ତାଙ୍କ ଭଗ୍ନୀପତି (ବୟସ—୪୫ବର୍ଷ)

( ଏ ଛବିର ରଚନାକାଳ—ଜୁନ୍ ୧୯୫୯ )

# ଓଭାର୍‌ସିଅର୍ ବାବୁଙ୍କ ପରିବାର

## ପ୍ରଥମ ଦୃଶ୍ୟ

[ କଟକ ସହର । ବାରକମିସ୍ତ୍ରୀ ବସ୍ତିରେ ଓଭାର୍‌ସିଅର୍ ଝଡାକର ବାବୁଙ୍କ ବାସଭବନର ଏକ ପ୍ରକୋଷ୍ଠ । ସମୟ ପୂର୍ବାହ୍ନ । ଡାକ ଡାକ ମାର୍ଜ୍ଜ- ବୋଉ ଆସିଲେ । ସେ କେବଳ 'ବୋଉ' ନାମରେ ପରିଚିତା ]

ବୋଉ—ଆରେ ଟିଙ୍କୁ, ଟିଙ୍କୁ !···ଆଲୋ ଛବ ! କାଇଁ—କେହି କଣ ଶୁଣିବେ ? ନସୁନ କରିଚନ୍ତି ପରା—ଡାକ ଡାକ ତମର ତଣ୍ଟି ଶୁଖି ଗଲେ ବି କେହି ଉଁ କି ଚୁଁ ପାଟି ଫିଟେଇବେ ନାହିଁ ! ଇସ୍କୁଲତ ବନ୍ଦ—ପଢ଼ାପଢ଼ିତ ନାହିଁ—ସଂଖ୍ୟାଟାଯାକ କିଏ କୋଉଠି କଣ କରୁଚନ୍ତି—କେଜାଣି !···ଆରେ ଟିଙ୍କୁ—

(ଟିଙ୍କୁ ଅଗଣାରେ ଥାଇ ଜବାବ୍ ଦେଲା)

ଟିଙ୍କୁ—ହଁ ହଁ—

ବୋଉ—ଦେଖୁଚ, ମୁଁ ତାକୁ ଡାକୁଚି—ସେ ସେଇଠି ଥାଇ ଜବାବ୍ ଦଉଚି—ହଁ ହଁ !! (ଟିଙ୍କୁକୁ) ଆରେ ମୁଁ ତୋତେ ଡାକୁଚି ପରା—

ଟିଙ୍କୁ—ମୁଁ କଣ ନାହିଁ କରୁଚି ?

ବୋଉ—ଏ ଗୁରୁଙ୍କୁ ନେଇ ମଣିଷ ଚଳିବ କେମିତି, କେଜାଣି ? (ଟିଙ୍କୁକୁ) ଆରେ ବାପା କାହାନ୍ତି ?

ଝିଙ୍କୁ—ବାପା ?

ବୋଉ—ଥରକରେ କ'ଣ ସେ ବୁଝିବ ? (ଝିଙ୍କୁକୁ) ଆରେ ବାପା କାହିଁ ଗଲେ ?

ଝିଙ୍କୁ—କାହିଁ—ନାହାନ୍ତି ତ ଏଠି ।

ବୋଉ—ତୁ ସେଠି କଣ କରୁଚୁ ?

ଝିଙ୍କୁ—ବାପାଙ୍କ କାମ କରୁଚି ।

ବୋଉ—ବାପା ପରା ସେଠି ନାହାନ୍ତି ?

ଝିଙ୍କୁ—ନାଁ—ନାହାନ୍ତିତ ।

ବୋଉ—ଆଉ ତୁ କଣ କରୁଚୁ ?

ଝିଙ୍କୁ—କରୁଚି ପରା ବାପାଙ୍କ କାମ । ମାଛ ମାରୁଚି ।

ବୋଉ—ବଦମାସ୍ ଟୋକା—ତୁ ଆଇଲୁ ଏଠିକି ।

ଝିଙ୍କୁ—ଗଲୁନୁ । (ଆସିଲା)

ବୋଉ—ହଇରେ, କଣ କରୁଥିଲୁ ସେଠି ?

ଝିଙ୍କୁ—ମାଛ ଧରୁଥିଲି ପରା ।

ବୋଉ—ଆଉ ବାପାଙ୍କ କାମ କ'ଣ କରୁଥିଲୁ କହୁଚୁ ?

ଝିଙ୍କୁ—ବାପା ଆଜି କହୁ ନ ଥିଲେ—ଏଇ ଅସରାଏ ଦି' ଅସରା ବର୍ଷାରେ ମାଛ ବେଜାୟ ବଢ଼ି ଗଲେଣି ! ସବୁ ନିପାତ କରିବାକୁ ହବ !

ବୋଉ—ତୁ ନିପାତ କରୁଥିଲୁ ?

ଝିଙ୍କୁ—ଆସୁନୁ ଦେଖିବୁ—ମୋର ଏ ଆଞ୍ଜୁଳାରେ ଆଞ୍ଜୁଳାଏ କି ଦି ଆଞ୍ଜୁଳା ହବ ମାଛ ମାରି ଜମେଇ ଦେଲାଣି ।

ବୋଉ—ଇସ୍ସ ! କି ଅସନା କଥା—ହଇରେ, ତୁ ମାଛ ଗୁଡ଼ାଙ୍କୁ ମାରୁଚୁ କାହିଁକି ? କେମିତି ମାରୁଚୁ ?

ଝିଙ୍କୁ—ଘର ପୋଖରୀ ଉପାୟ । ଖଣ୍ଡେ ଲେଖାଁ ଆମ୍ବ ଖାଇ ଗୋଟା ପକେଇ ଦେଉଚ । ଯେମିତ ପଚାଁ ଏ ଲେଖାଁ ମାଛି ଆସି ବସି ଯାଉଚନ୍ତି—

ବୋଉ—କ'ଣ ହେଲା ? ଆମ୍ବ ଖାଇ ଗୋଟା ପକେଇ ଦେଉଚୁ ?

ଝିଙ୍କୁ— ହଁ । ଗୋଟାଟାକୁ କଣ ଆଉ ଖାନ୍ତି ? ପକେଇ ଦେଉଚ ?

ବୋଉ—ଆରେ ତୁ ଆମ୍ବ ଆଣିଲୁ କୋଉଠୁ ?

ଝିଙ୍କୁ—ଆମ୍ବ ? —ଆମ୍ବତ (କିଛୁ କହି ପାରୁ ନ ଥାଏ)

ବୋଉ—ସେଇ ଯୋଉ ଆମ୍ବ ଆଜ କଣା ହେଇଥିଲା ?

ଝିଙ୍କୁ - ହଁ ।

ବୋଉ—ହଇରେ, ଝଙ୍କାକୁ ଆମ୍ବ ଗୁରଟା ! ରଜପାଇଁ ଆମ୍ବ କଣା ହେଇଥିଲା—ତୁ ସେଇଆକୁ ଚଳୁ କଲୁଣି ? କେଇଟା ଆମ୍ବ ଖାଇଚୁ ?

ଝିଙ୍କୁ—ଗୋଟାଏ । ସେଇ ଯୋଉ ଆମ୍ବଟା ମୁଣ୍ଡ ପାଖରୁ ଫାଟି ଯାଇଥିଲା—

ବୋଉ—ଫାଟି ଯାଇଥିଲାତ ତୋର କଣ ଗଲା ?

ଝିଙ୍କୁ—ଫାଟି ଯାଇ ସେଥିରୁ ରସ ବାହାରୁ ଥିଲା ଯେ, ସେଥିରେ ସବୁ ମାଛି ବସିଥାନ୍ତେ !

ବୋଉ—(ଈଷତ୍ ନମ୍ର ସ୍ୱରରେ) ପୋଡ଼ାମୁହାଁ !! ଯାହାତ କଲୁଣି—ଆଉ ପାଟି କରନା—ସେ ଦୁହେଁ ଶୁଣିଲେ ଆଉ ବାକୀ ରଖିବେ ନାହିଁ ।

ଝିଙ୍କୁ—(ନମ୍ର ସ୍ୱରରେ)ମୁଁ କଣ ପାଟି କରୁଥିଲି ? ତୁ ମତେ ପାଟି କରି ଡାକିଲୁ ନା—

ବୋଉ—ମୁଁ ଡାକିଲି ? ହଁ—ହଇରେ, ବାପା କାଇଁଗଲେ ?

ଝିଙ୍କୁ—ରଥ ଦେଖୁଚ ।

( ଝରକା ପାଖକୁ ଯାଇ ଦେଖିଲା । ବୋଉ ବିରକ୍ତ ହୋଇ ଚାଲିଗଲେ ।
ଟିକିଏ ପରେ ଛବି ଆସିଲା )

ଟିଙ୍କୁ—ଛବିଅପା—ଏ ଛବିଅପା ! କଣ କରୁଚୁ ?

ଛବି—ତୋର କଣ ଗଲା ମୁଁ କଣ କରୁଚି !

ଟିଙ୍କୁ—ଆଲୋ ବାପା କାଇଁଗଲେ ?

ଛବି—ଓଃ ! ବାପାଙ୍କର ଗେହ୍ଲାପୁଅ ବୋଲି, ବାପା କୁଆଡ଼େ ଗଲେ - କ'ଣ କଲେ—ସବୁ ଖବର ଇଏ ରଖିବ !

ଟିଙ୍କୁ—ଦେବ ଯେ ଦ'ଟା ଥୋଇ !

ଛବି—(କାନ୍ଦ କାନ୍ଦ ହୋଇ ବଡ଼ ପାଟିରେ) ହୋଇଲା ବାପା, ଦେଖିଲ !

ଟିଙ୍କୁ—ବାପା ଦେଖିବେ ପରେ—ତୁ ବାପାଙ୍କୁ ଦେଖିଚୁକି ନାହିଁ କହିଲୁ ?

ଛବି—ହଁ, ଦେଖିଚି । କହିବି ନାହିଁ ।

ଟିଙ୍କୁ—ମତେ କହିବାକୁ ମୁଁ କହୁଚି ? ବୋଉ ପଚାରୁଚି—ଯା କହିବୁ । ମୁଁ ଯାଉଚି ମାଟ୍ଟି ମାରିବ । (ଚାଲିଗଲା)

ଛବି—ଛତରା, ବଜାଗା ! (ଟିକିଏ ପରେ ଡାକିଲା) ମାମାଅପା—ମାମାଅପା
(ମାମା ଆସିଲା)

ମାମା—କ'ଣ କଲୋ ? କାଇଁ ଗୋଟାଏ ଏମିତି ହୁରି ପକଉଚୁ ?

ଛବି—ବାପା କାଇଁ ଗଲେକ ?

ମାମା—ତୁ ଜାଣିନୁ ବାପା କାଇଁ ଗଲେ ?

ଛବି—ନାଁ ।

ମାମା—ମୁଁ ବି ଜାଣିନାଇଁ ।

ଛବି—ତୁ ଇଏ କ'ଣ କରୁଚୁକି ?

ମାମା—ତୁ ଆସିଲୁ ମୋ କାମର ହିସାବ ନବାକୁ ?
(ମାମା ବହି ବଉଳ ଫୁଲର ମାଳ ଗୁନ୍ଥିଲା)

ଛବି—ଆଲୋ ଅପା, ବଉଳ ଫୁଲର ମାଳ ଗୁନ୍ଥୁଚୁ ?
ମାମି—ଦେଖୁଚୁ ତ—ଆଉ ପଚାରୁଚୁ କ'ଣ ?
ଛବି—ଘରେ ଅଡ଼ୁଆ କାମ ଇଏ—ଘର ନକଟା ।
ମାମି—ମୁଁ ଅଡ଼ୁଆରେ ପଡ଼ିଚି ବୋଲି ତୋ ମନ କାହିଁ ଉଠୁଚି ପରା !
ଛବି—ସତେ ମ ଅପା—ମତେ କହିଲୁ ନାହିଁ—ମୁଁ ଗୁନ୍ଥି ଦେଇଥାନ୍ତି ! ତୁ କାହିଁକି ଏ ନକଟା କାମ କରୁଥିଲୁ ? ତୋର କୋଉଠି ବେଳ ଅଛି ?
ମାମି—ସେ ଫୁସୁଲି ଫୁସୁଲି କଥା ଥାଉ । କେତେ କାକୁତି ମିନତି ହେଇ କହିଲାରୁ ମଧୁ ମାଳୀ ଗଣିଗଣି କରି ଅଠର ଗଣ୍ଡା ଫୁଲ ଦେଇଚି—ଗୋଟାଏ ମାଳକୁ ନିଅଣ୍ଟ !
ଛବି—ମୁଁ ଜାଣିନାହିଁ ! ମଧୁମାଳୀ ପଇସା ନେଇ ବଉଳ ଫୁଲ ଦେଇଚି ।
ମାମି—ଜାଣିଚୁ ତ, ଯା—ଚୁପ୍ ହୋଇ ବସ ।
ଛବି—ମଧୁ ମାଳୀ ତ ପଇସା ନେଇ ଫୁଲ ଦେଲା—ମାଳା କାହିଁକି ଗୋଟାଏ ହବ ? ମୋ ପାଇଁ ଗୋଟାଏ ହବ ନାହିଁ କାହିଁକି ?
ମାମି—କ'ଣ ହେଲା ? ମଧୁ ମାଳୀ ପଇସା ନେଇଚି ବୋଲି ତୁ ଭାଗ ବାଣ୍ଟିବାକୁ ଆସିଚୁ ? କିଏ ପଇସା ଦେଇଥିଲା ? ବାପା, ବୋଉ ନା ତୁ' ନା ଆଉ କିଏ ? ସାବିତ୍ରୀକୁ ମୋ ଶବନ୍ ପାଇଁ ମତେ ଯୋଉ ବାର'ଣା ପଇସା ମିଳିଥିଲା—ସେଥିରୁ ମୁଁ ଦ'ଅଣା ପଇସା ବଞ୍ଚେଇ ସେଇ ପଇସାରେ ଫୁଲ କିଣିଚି । ଆଉ ଇଏ ଆସିଲା ଭାଗ ବାଣ୍ଟିବାକୁ !
ଛବି—ଦରକାର ନାହିଁ ଆମର ଏ ଫୁଲ । ଇଏ କଟକ ସହର ବୋଲି ସିନା ଫୁଲ ମହରଗ ହେଇଚି ! ଆମେ ତ ଉଜଳୁ ଗାଁ'କୁ ଯାଉଚୁ । ମୋ' ବଉଳ କହିଚି—ମୋ ପେଇଁ ଗୋଟାଏ

ନୁହେଁ କ ଦ'ଟା ନୁହେଁ—ଏକାବେଳକେ ଆଠ ଆଠଟା ବଉଳ ଫୁଲର ହାର କର ରଖିଥିବ ।

ମାମି—ହଉ ଯା—ସେଥିରୁ ଗୃରଟା ହାର ବେଣୀରେ ବାନ୍ଧ ଆଉ ଗୃରଟା ହାର ମୋ ନାଁ'ରେ ପାଣିକ ପକେଇଦବୁ—ବୁଝିଲୁ ? ଯା ଏଠୁ ।

ଛବ—ଯିବ କୁଆଡ଼େ ? ପଗୃରୁଚ ପଗ୍ ବାପା କୁଆଡ଼େ ଗଲେ ?

ମାମି—(ଋଗିଯାଇ) ଛବ !

ଛବ—ମତେ ନାଲଆଖି ଦେଖଉଚୁ କ'ଣ ? ବୋଉ ପଗୃରୁଚ—ଯା ବୋଉକୁ କହ୍ବବୁ—ବାପା କୁଆଡ଼େ ଗଲେ ! ନଇଲେ ବୋଉଠୁ ଶୁଣିବୁ ଯେ—ହଁ ! ! (ଋଲଗଲା)

ମାମି—(ବଚକ୍ତହେଇ) ବୋଉ—ବୋଉ ! (ବୋଉ ଆସିଲେ)

ବୋଉ—କ'ଣ କ ?

ମାମି—ବାପା କୁଆଡ଼େ ଗଲେ ତୁ ଜାଣିନୁ ?

ବୋଉ—ମୋ ପେଟରୁ ଏ ତିନଟା ପୁଅ ଝିଅ ଜନ୍ମ ହେଇ ନଥିଲେ ଯେ—କାଳ ଜନ୍ମ ହେଇଥିଲେ ! ଘଡ଼ିଏ ହେଲା ମୁଁ ଏଇଠି ଶୁଣୁଚ—ଇଏ ତାକୁ ପଗୃରୁଚ ବାପା କୁଆଡ଼େ ଗଲେ—ସିଏ ତାକୁ ପଗୃରୁଚ ବାପା କୁଆଡ଼େ ଗଲେ ! ଶେଷକୁ ଇଏ ଥିଲେ ଯେ, ଓଲଟି ମତେ ଆସି ପଗୃରୁଚନ୍ତ ! ଏଇ ବୁଦ୍ଧି—ଏଇ ଗୁଣ ! ଏଇଥିରେ କୁଆଡ଼େ ମେଟ୍ରିକ ଫାଷ୍ଟ ଡିଭିଜନ୍‌ରେ ପାଶ କରିଚନ୍ତ—କଲେଜ୍‌ରେ ପାଠ ପଢ଼ିବେ !

ମାମି—ମୁଁ କ'ଣ କହିବ ? ମତେ ତ ଛବ କହ୍ଲା ।

ଛବ—(କହ୍ବକହ୍ବ ଆସିଲ) ଛବ କ'ଣ ମନକୁ କହ୍ଲା ? ମତେ ତ ଟିଙ୍କୁ ଆସି କହ୍ଲା ।

( କନ୍ଦ କନ୍ଦ ଟିଙ୍କୁ ଅସିଲା )

ଟିଙ୍କୁ—ଟିଙ୍କୁ କଣ କୋଉଠୁ ଆଇଲା କ ? ମତେ ତ ବୋଉ କହିଲାରୁ ମୁଁ ତୋତେ ଯାଇ ପଚାରିଲି ।

ବୋଉ—ଏଗୁଡ଼ାକ ଏଡ଼େ କର୍ମ କୋଡ଼ି ହେଇଗଲେଣି !

ଟିଙ୍କୁ—ଏଇ ଦେଖ ବୋଉ—ତୁ ବାରବାର କରି ମନା କରିଥିଲୁନା —ବଲେଇ ଛୁଆକୁ ଥାଳରେ ଖାଇବାକୁ ଦିଆଯିବ ନାହିଁ ! ! ଏଇ ଦେଖ୍—ଛବି ଅପା ଆଜି ତିନଟାଯାକ ବଲେଇ ଛୁଆଙ୍କୁ ଏଇ ଠାକୁର ଥାଳରେ ଖାଇବାକୁ ଦେଇଚି ।

ଛବି—ମୁଁ ଖାଇବାକୁ ଦେଇଚି—ମୁଁ ଥାଳ ମାଜିବି । ତୋର କ'ଣ ଗଲା—ଛତରି ବଜାଖି ! ! ଏଇ ଦେଖ—ତୋର ଆଗରେ ଥାଳ ମାଜିବାକୁ ନଉଚି । (ଥାଳ ନେଇଯାଉଯାଉ ହଠାତ୍ ପାଟିକରି ଉଠି) ହେଇଟି ବୋଉ—ଇଏ କ'ଣ ହେଇଚି ଦେଖିଲୁ ! ଏଠି କ'ଣ ଆମ୍ବ ଗୋଟିପା ପଡ଼ିଚି—ଆମ୍ବ କିଏ ଖାଇଲା ?

ଟିଙ୍କୁ—ଆମ୍ବ ? ଆମ୍ବ କିଏ ଖାଇଲା ? କାଇଁ ? କୋଉଠି କିଏ ଖାଇଚି ?

ମାମା—ଏଇପରି—କଳତଳେ ଗୋଟିପା ପଡ଼ିଚି ।

(ବୋଉ କିଛି କହୁ ନ ଥାନ୍ତି)

ଛବି—ତୁ କିଛି କହୁନୁ କାହିଁକି ବୋଉ ? ରଜକୁ ଆମ୍ବ କଣା ହେଇ ଥୁଆ ହେଇଚି—ଇଆଡ଼ୁ ଯିଏ ପାରି ସିଏ ଆମ୍ବ ଖାଇଲେଣି !

ଟିଙ୍କୁ—ଯିଏ ପାରି ସିଏ କାଇଁକି ଖାଇବ ମ ?

ମାମା—ଆଉ କିଏ ଖାଇଚି ?

ଟିଙ୍କୁ—ବାପା ଖାଇଚନ୍ତି ।

ଛବି—ବାପା ଖାଇଚନ୍ତି ?

ମାମା—ସତେ ବୋଉ ବାପା ଖାଇଛନ୍ତି ?

ଟିଙ୍କୁ—ହେ ମାମା ଅପା, ତୁ କେତେ ଓଲଟାଏ ମ ? ବାପା ଆମ୍ବଟାଏ

ଖାଇଚନ୍ତି ବୋଲି ତୁ ସେକଥା ବୋଉକୁ ପଚାରି ବୁଝିବୁ ? ବାପା ଶୁଣିଲେ କ'ଣ କହିବେ ?

ମାମା—ବାପା କାହାନ୍ତି କି ?

ଦିବାକର—(ଅନ୍ୟଘରୁ) କିଏ କ'ଣ କହୁଚ—ମୁଁ ଏଇଠି ଅଛି ।

ଟିକ୍କୁ—ଇରେ ବାପ୍‌ରେ ! ବାପା ଏଇ ମଝିଘରେ ଅଛନ୍ତି । ଏ ଛବି ଅପା—ପଳେଇଆ । ମାମା ଅପା, ଠିଆହେଲୁ କାହିଁକି ? ଆ । ବାପା ଆମ୍ବ ଖାଇବା କଥା ଶୁଣିଲେ କ'ଣ କହିବେ କହିଲୁ, ଚାଲିଆ ।

(ମାମା, ଛବି ଓ ଟିକ୍କୁ ଚାଲିଗଲେ । ପ୍ରାୟ ସଙ୍ଗେ ସଙ୍ଗେ ଦିବାକର ଆସିଲେ)

ବୋଉ—ତମେ ଏଇଠି ଥିଲଟି ?

ଦିବା—ଏ କଥା ଅସ୍ୱୀକାର କରୁଚି କିଏ ?

ବୋଉ—ନାଇଁ, ତିନିଟାଯାକ ପିଲା ଏଇଠି ବାପା କାହାନ୍ତି—ବାପା କାହାନ୍ତି ବୋଲି ଦଣ୍ଡଘେରା ଖାଇଲେଣି ! ତମେ ଟିକିଏ ନ କରି ବସି ମଜା ଦେଖୁଚ ?

ଦିବା—ମୁଁ ମଜା ଦେଖୁଛି ? ଏଁ ! ଆମର ଏ ଘରଟା କ'ଣ ଦିଲ୍ଲୀ ରାଷ୍ଟ୍ରପତି ଭବନ ହେଇଛି ଯେ, ଏଠି ମୋଟରେ କେତେଟା କୋଠରି ଅଛି—କିଏ କୋଉ କୋଠରିରେ ରହୁଚି—ତାର ସଠିକ ହିସାବ କେହି ଦେଇ ପାରିବେନି ! ! ଘର ବୋଲିତ ମୋଟେ ପାଞ୍ଚ ବଖରା । ସେଥିରୁ ରୋଷେଇଶାଳକୁ ମୋର ପ୍ରବେଶ ଅଧିକାର ନାହିଁ । ଷ୍ଟୋର ଘର ବୋଲି ଯାହାକୁ କୁହାଯାଉଚି —ସେଥିରେ କାଠ କରଡ଼ି ଗୁଣ୍ଡିଠୁ ଆରମ୍ଭ କରି ମୂଷା ଅସରପି ଯାଏ ସମସ୍ତେ ଆଶ୍ରୟ ନେଇଚନ୍ତି । ବାକି ଗୋଟିଏ ଘରେ ତମେ ତମ ଠାକୁରଙ୍କ ସହ ଆସ୍ଥାନ ମାଡ଼ି ବସିଚ । ଆଉ ଗୋଟାଏ ଘରେତ ସକାଳୁ ସଞ୍ଜଯାଏ ସେ ତିନିଜଣ

ଏମିତି ଆଡ୍‌ଡ଼ା ଜମେଇଚନ୍ତି ଯେ, ସେ ଘରଟାକୁ ମୋ ପକ୍ଷରେ ଗୋଟାଏ ନିଷିଦ୍ଧ ଅଞ୍ଚଳ ବୋଲି ମୁଁ ଧରି ନେଇଚି । ବାଲି ଗୋଟାଏ ଘରେ ମୋ ରହିବାର କଥା ନୁହେଁ ବୋଲି ଯଦି ତମେ ଭାବୁଥାଅ—ତାହାଲେ କଣ ଏ ସହରରେ ଯେତେ ସର୍ବ-ସାଧାରଣ ସଦନ, ଭବନ, ସମାଜ କ ଶାଳା ଅଛି —ସେଇଠି ଯାଇ ମୋ' ଶଯ୍ୟା ମୁଁ ପାରିବି ?

ବୋଉ—ତମେ ଭାରି କହିଲାବାଲା ହେଇଗଲଣି ମୁଁ ଦେଖୁଚି ! ଦେଉଳ ସାହିଠୁ ଢୋଲ ମୁଣ୍ଡେଇ ଯାଏ ଦଶକ ବାର ଜାଗାକୁ ତମର କୋଉଠି ଯିବାର ଥିଲା ବୋଲି ପରା ତମେ ଏଇ ଘଡ଼ିଏ ଆଗରୁ କହୁଥିଲ ? ମୁଁ ଏବେ କେମିତି ଜାଣିଲି ଯେ—ତମେ କୁଆଡ଼େ ନଯାଇ ଏଇଠି ତୁନିହେଇ ବସିଚ ?

ବାବା—ମୁଁ ତମକୁ ହଜାରବାର କହିଚି ମାମାବୋଉ—ଗୋଟାଏ କିଛି କରିବା ଆଗରୁ ବେଶ୍ ମାପିଚୁପି ଓଜନ କରି ଦେଖିବ—କାହାଁକି କହୁଚ ଓ କ'ଣ କହୁଚ ?

ବୋଉ—ଏବେନେ ତମେ ଆଉ ମତେ କଥା କହି ଶିଖାଅ ନା'ମ ? ଆମକୁ ଆଉ ମାପିଚୁପି ଜଗିରଖି କଥା କହି ଆସେନି ? ଏଇନେ କଣ-କି ଅମାପ କଥାଟା ମୁଁ କହିଲି ?

ବାବା—ମୁଁ ମୋର ଯୋଉଠିକି ଯିବାର କଥା—ଯାଇଚି, ଆସିଚି । ପୁଣି ଯିବି—ଆଉ ଆସିବି । ଅଥଚ ତୁମେ କିଛି ନଜାଣି ନଶୁଣି କହି ଦଉଚ କଣ ନା···

ବୋଉ—ହଉ ହେଲା । ମୁଁ କହିଚି ମୋର ଭାଇଲି ହେଇଚି । ହେଲେ ତମର କଣ ଖାଲି ଇଆଡ଼େ ଏମିତି ଯିବା ଆସିବା ଲାଗିଥିବ ?

ବାବା—ମାନେ ? ତମେ କଣ କହିବାକୁ ଗୁହଁଯେ ମୋର ଝାଲ ଘରୁ ଯିବାଟା ହବ—ଆଉ ଆସିବାଟା ହବ ନାହିଁ ?

ବୋଉ—ହେଇଟି, ମୁଁ ତମ ପାଖରେ ରହସ୍ୟ କରିବାକୁ ଏଠି ଠିଆ ହେଇନି । କାଲି ଗୁରୁ ପଅଣ୍ଡିବନ ପଡ଼ିଲି ରଜ !

ବାବା—ସେକଥା ମନା କରୁଚି କିଏ ?

ବୋଉ—ତମେ ମନା କରୁଚ ।

ବାବା—କି ଆଶ୍ଚର୍ଯ୍ୟ କଥା ! ଧର୍ମଶାସ୍ତ୍ରାନୁମୋଦିତ-ମିଶ୍ର ନିଷ୍ପାମକ ଦୃକ୍‌ସିଦ୍ଧ ପଞ୍ଜିକାର ସିଦ୍ଧାନ୍ତକୁ ମୁଁ ମନା କରୁଚି ?

ବୋଉ—ସଜବାଜ ଦିନ ପଡ଼ି ଗାଁ'କୁ ଯିବାକଥା ?

ବାବା—ସଜବାଜ—ମାନେ କାଲି ?

ବୋଉ—ହଁ, କାଲି ।

ବାବା—ଓ ! କାଲି ତମେ ଗାଁ'କୁ ଯିବା କଥା କହୁଚ ?

ବୋଉ—ମୁଁ କଣ କହୁଚି ? କଥାଟି ହେଲା—ଏବର୍ଷ ରଜକୁ ଗାଁ'କୁ ଯିବା । ପିଲାଏ ଏ ବର୍ଷ ଗାଁ'ରେ ରଜ ପାଳିବେ । ଆଉ ମୁଁ କହିବି କ'ଣ—ତମେ କହିବ କ'ଣ ?

ବାବା— କାହାରି ତାହାହେଲେ ଆଉ କିଛି କହିବାର ନାହିଁ ?

ବୋଉ—କହୁନ ତେବେ କ'ଣ କହିବ ? କିବା ଗୋଟାଏ କଥା ସେଇଥିପାଇଁ ଗଲା ଆଠଦିନ ହେଲା ଝିକର ଝିକର ଲଗିଚି !

ବାବା—ଆଚ୍ଛା, ଗୋଟାଏ କଥା ତମେ କହିଲ—ଏବର୍ଷ ଗାଁ'ରେ ରଜ ପାଳିବାକୁ ତମର ଏତେ ଆଗ୍ରହ କାହିଁକି ?

ବୋଉ—ଠିକ୍ ସେଇକଥା ମୁଁ ତମକୁ ପଚାରୁଚି—ରଜକୁ ଗାଁ'କୁ ଯିବାପାଇଁ ତମର ଆପତ୍ତି କାହିଁକି ?

ବାବା—ପୁଣି ତମେ ବେମାପରେ କଥା କହିଲ ମାମାବୋଉ । ତମେ ଆଗେ ମୋ ପ୍ରଶ୍ନର ଉତ୍ତର ଦିଅ—ମୁଁ ତମ ପ୍ରଶ୍ନର ଉତ୍ତର ଦେବି ।

ବୋଉ—ମନ୍ଦ । ଜୀବନଯାକତ ତମର ବିଦେଶରେ କଟିଲା । ଆଜ ବାଲେଶ୍ୱର ତ କାଲି ବାରିପଦା । ଏତେଦିନକେ ସରକାରଙ୍କ ଦୟା ହେଲା—ତମେ କଟକ ଆସିଲ ।

ବାବା—ମୁଁ ସେଇକଥା କହୁଚି । ବାଲେଶ୍ୱର ବାରିପଦା ରାୟଗଡ଼ା ରାଇରଙ୍ଗପୁର—ସବୁଠିତ ରଜ ପାଳିଲ । କଟକ ଆସିଲୁ ମୋଟେ ଏଇ ଦଶମାସ ହେଲା ! ଅତଏବ କଟକରେ ଏ ବର୍ଷ ରଜ ନପାଳିଲେ, ଓଡ଼ିଶାର ଏଇ ସର୍ବଶ୍ରେଷ୍ଠ ସହରର ପ୍ରତି ତମେ ଅବିଚାର କଲ ବୋଲି ମୁଁ କହିବି ।

ବୋଉ—ତମର ସେ ଅଲଣା କଥାଗୁଡ଼ାକ ଥାଉ । କଟକ ଆସି ଗାଁ'କୁ ନଗଲେ ଲୋକେ କ'ଣ କହିବେ ? ସକାଳେ ଏଠୁ ମଟରରେ ବସିଲେ ଦଶଟାବେଳକୁ ଯାଇ ଗାଁରେ ପହଞ୍ଚିବ । କହିବାକୁ ଗଲେ—କଟକ ଆଉ ଗାଁ'ତ ଏକ ।

ବାବା—ବେଶ୍ ! କଟକ ଆଉ ଗାଁ ଯଦି ଏକ୍—ତେବେ କଟକ ଛାଡ଼ି ଗାଁ'କୁ କାହିଁକି ଯିବା ?

ବୋଉ—ଯିବ ନାହିଁ ତା'ହେଲେ ?

ବାବା—କାହିଁକି ଯିବା—ତା'ର ସନ୍ତୋଷଜନକ କାରଣଟା ନ ଦର୍ଶାଇଲେ—

ବୋଉ—(ଅଭିମାନ କରି) ହେଲା, ହେଲା, ହେଲା ! ଖୁବ୍ ହେଲା—ଖୁବ୍ ହେଲଣି । ଆଜକୁ କୋଡ଼ିଏ ବର୍ଷ ହେଲା ଏ ସଂସାର କଲିଣି—ତମକୁ କ'ଣ ମୁଁ ଚିହ୍ନି ନ ! ଏଇ କାନରେ ଗଣ୍ଠି ପଡ଼ିଲା—ଗାଁ'କୁ ଯିବା ମୋର ଦର୍କାର ନାହିଁ । (କହୁକହୁ ସ୍ୱର ଯାଉଥିଲେ)

ବାବା—ତା'ହେଲେ ଏ ଅଧ୍ୟାୟ ଏଇଠି ଶେଷ ହେଲା ? ଗାଁ'କୁ ରଜରେ ଯିବା ବନ୍ଦ ।

ବୋଉ—(ପୁଣି ଫେରିଆସି) ଆଚ୍ଛା, ମାମାଙ୍କୁ କେତେ ବର୍ଷ ହେଲା ?

ବାବା—ଏଁ ?

ବୋଉ—ପଚାରୁଛି ପରା—ମାମାଙ୍କୁ କେତେ ବର୍ଷ ହେଲା ?

ବାବା—ମାମାର ବୟସ ହିସାବରେ ମୋର ସାଧାରଣ ଜ୍ଞାନ ପରୀକ୍ଷା କରିବାକୁ କ'ଣ ଏ ପ୍ରଶ୍ନ ପଚାରୁଛ ?

ବୋଉ—ଏଇ ବୈଶାଖକୁ ମାମାଙ୍କୁ ଷୋଳ ପୂରି ସତର ଚାଲିଲା ନା ?

ବାବା—ଦୟାକରି ମାମାର ବୟସର ହିସାବଟା ତା'ର ଗୃହକର୍ତ୍ତୀ କନ୍ୟା ବିବାହର ବନ୍ଦୋବସ୍ତ ହେବା ପର୍ଯ୍ୟନ୍ତ ସ୍ଥଗିତ ରଖ ।

ବୋଉ—ସେଇ ବାହାଘର କଥା ମୁଁ କହୁଛି । ଆଉ ତ ତମେ ତାଙ୍କୁ ଘରେ ରଖି ପାରିବ ନାହିଁ । ଏ ବର୍ଷ ଯେମିତି ହେଲେ ତା'ର ବାହାଘର ହବ । ଆମ ଘରେ ଏଇ ତା'ର ଶେଷ ରଜ । ସେଇଥିପାଇଁ ମୁଁ କହୁଛି—ଏ ବର୍ଷ ତା' ରଜକୁ ଯଦି ସାଇଭାଇ ଦି'ଖଣ୍ଡ ପିଠା କି ପାନ ନ ପାଇଲେ, ତା'ହେଲେ ନୂଆପାଟି ଗାଁ'ରେ ତମେ ଆଉ ମୁଣ୍ଡଟେକି ବାଟ ଚାଲିପାରିବ ଟି ?

ବାବା—ଅଲବତ୍ ପାରିବ । ଏହି କାରଣରୁ ମୋ ମୁଣ୍ଡ ନଇଁଲା ଭଳି ଅବସ୍ଥା ଏତେ ଚଞ୍ଚଳ ଆମର ଆସୁନି ।

ବୋଉ—କ'ଣ ତମେ କହୁଛ ମୁଁ ବୁଝି ପାରୁନି ।

ବାବା—ମୁଁ କହୁଛି ଯେ ମାମାର ବିବାହ ପ୍ରଶ୍ନର ବିଚାର ବର୍ତ୍ତମାନ ବହୁ—ବହୁ ଦୂରରେ ରହିଛି ।

ବୋଉ—ଏ କଥା ତମେ କହୁଛ ?

ବାବା—ଏକାବେଳକେ ମାପିଚୁପି ଭାଗ ମାପ ଅନୁସାରେ କହୁଛି । ମାମାର ବର୍ତ୍ତମାନ ବୟସ ଓ ତା'ର ପତ୍ରାଦୃଷ୍ଟିରୁ ମାମା ନିଜେ ବର୍ତ୍ତମାନ ବିବାହ କରିବାକୁ ପ୍ରସ୍ତୁତ ନୁହେଁ । ଆଉ ଆମେ— ମାମାର ବାପା ବୋଉ—ଆମର ଅର୍ଥନୈତିକ ଅର୍ଥାତ୍ ମାମାଙ୍କୁ

ଯୌତୁକ ଦବାର କ୍ଷମତା ଦୃଷ୍ଟିରୁ ଆମେ ମଧ୍ୟ ମାମିର ବିବାହ ପାଇଁ ବର୍ତ୍ତମାନ ପ୍ରସ୍ତୁତ ନୋହୁ । ପୁଣି ଏ ପକ୍ଷରେ ଆମେ ସମସ୍ତେ ଅପ୍ରସ୍ତୁତ ଥିବା ଅବସ୍ଥାରେ, ଆମ ଦେଶରେ ‹ପର କେହି ନରାଧମ ବରପାତ୍ର ନାହାଁ—ଯେ କି ମାମିକୁ ବିବାହ କରିବାପାଇଁ ପ୍ରସ୍ତୁତ ହୋଇପାରିବ ! ଅତଏବ, ମାମିର ବିବାହ-ପୂର୍ବ ରଜପର୍ବ-ପାଳନର ଆଳ ଦେଖାଇ ତମର ଗାଁ'କୁ ଯିବା କଥାଟା ଏକାବେଳକେ ବେମାପ । ହଁ, ଯଦି ଆଉକିଛି କାରଣରୁ ତମେ ଗାଁ'କୁ ଯିବାକୁ ଚାହୁଁଥାଅ—ଯେଉଁ-ଟା କି ତମେ ଏ ପର୍ଯ୍ୟନ୍ତ ତମ ନିଜ ଭିତରେ ଲୁଚାଇ ରଖିବାକୁ ଚେଷ୍ଟାକରି ଆସିଚ—ସେ କଥା ଖୋଲିକରି କୁହ—ତା ର ବିଚାର କରାଯିବ । କୁହ—ହଁ, କୁହ । ଚୁପ ହୋଇ ଠିଆହୋଇଲ କାହିଁକି—କୁହ ।

ବୋଉ—ତମେ କ'ଣ ଜାଣିନ ?

ଦିଦା—କଣ ହେଲା ? ତମ ମନ କଥା ମୁଁ ଜାଣି ତମକୁ କାଠଗଡ଼ାର ଆସାମୀ ଭଳି ଏମିତି ଜେରା କରୁଚି ବୋଲି ତମେ ଭାବୁଚ ? ତମ ପାଖରେ ଏତେ ନିଷ୍ଠୁର ମୁଁ କେବେ ହୋଇପାରେ ମାମି-ବୋଉ ?

ବୋଉ - ଏଇ ରଜ ଭିତରେ ମୁଁ ଟିକଏ ଆମ ଘରକୁ ଯା'ନ୍ତି ।

ଦିଦା—ଏ ପର୍ଯ୍ୟନ୍ତ ତା'ହେଲେ ଆଉ କାହା ଘରକୁ ଯିବା ପାଇଁ ଏତେ ଆୟୋଜନ ଚାଲିଥିଲା ?

ବୋଉ—ମୁଁ ଆମ ନିଜ ଘରକୁ ଯିବା କଥା କହୁଚି ମ—

ଦିଦା—ବଡ଼ ଗୋଲକଧନ୍ଦାରେ ପକେଇଲ ମାମିବୋଉ ! ତମ ପର ଘରଟା ପୁଣି କଏ—ମୁଁ ବୁଝି ପାରୁନି ।

ବୋଉ—ନ ବୁଝିଲେ ନାଇଁ, ଯା ! ! (ଚାଲିଯାଉଯାଉ ଅଟକି) ଝିଅ

ବାହା ହେଇ, ସାରା ଜୀବନ ଘର ସଂସାର କରି ବୁଢ଼ୀ ହେଇ ମରିବାଯାଏ—ତା' ବାପଘର ହଉଚି ତା' ନିଜଘର—ଆଉ ଶାଶୁଘର ହଉଚି —

ବାବା—ପରଘର ! ! ବୁଝିଲି । ତମେ ଦେଖିଥିବ ମାମାବୋଉ, ବେଳେବେଳେ ମେଘତଳେ ପୂର୍ଣ୍ଣିମୀର ଜହ୍ନ ବି ଢାଙ୍କି ହେଇ ରହିଯାଏ । ଆମେ ସମସ୍ତେ ଜାଣୁ ଆକାଶରେ ଜହ୍ନ ଉଇଁଚି— କିନ୍ତୁ ଉପରର ମେଘ ଯୋଗୁଁ ଏଇ ନିରାଟ ସତକଥାଟାକୁ ଆମେ ଅନୁଭବ କରି ପାରୁନା ! ତମ ବାପଘର ଯେ ତମ ନିଜ ଘର—ଏଇଟା ସତକଥା । କିନ୍ତୁ ନିଜ ଘରଠୁଁ ବଳି ଆହୁରି ନିଜର କରି ଶାଶୁଘରେ କୋଡ଼ିଏ ବର୍ଷ ଘରକରଣା କଲା-ପରେ ବି ମେଘତଳେ ଜହ୍ନ ପରି ତମ ନିଜଘର ମାହାତ୍ମ୍ୟଟା ସହଜରେ ଆମ ଆଖି ଆଗରେ ଧରା ପଡ଼େନା ! ତେବେ ମୁଁ ଖାଲି ଏତିକି ଭାବୁଚି—ଏ ଦୁନିଆରେ ଲଳନା ଜାତିଟାର ସୃଷ୍ଟି ହେଇ ନଥିଲେ—ଛଳନା ଶବ୍ଦଟାର ସୃଷ୍ଟି ବୋଧହୁଏ ଆଦୌ ହେଇ ନ ଥାନ୍ତା !

ବୋଉ—ମୋର ଯାହା କହିବାରଥି ମୁଁ କହିଲି । ତମେ ପୁଣି ଏମିତି ବୁଲେଇ ବାଙ୍କେଇ କଥାଟାକୁ ଏ ପାଖ ସେ ପାଖ କରୁଚ କାହିଁକି ?

ବାବା—ନାଇଁ ମାମାବୋଉ, ମୁଁ ବର୍ତ୍ତମାନ ସିଧାସଳଖ ତମ ପ୍ରସ୍ତାବ ଉପରକୁ ଆସୁଚି । ତମେ କୁହ ଯେ ରଜ ଭିତରେ ତମେ ତମ ଘରକୁ ଯିବ ?

ବୋଉ—(ଖୁସିରେ) ହଁ ।

ବାବା—ଇଏତ ଅତି ଉତ୍ତମ ପ୍ରସ୍ତାବ । ଏଥିରେ ମୋର ଆପତ୍ତି

କରିବାର କ'ଣ ଅଛି ? କିନ୍ତୁ ଯାହାହିଁକି ଏମିତି ନ ବଙ୍କେଇ ଏକା ବେଲକେ ସିଧା କରିଦେଲେ ?

ବୋଉ —ଏଁ ?

ଢବା—ବୁଝି ପାରୁନା ? ତମେ କହୁଚ ଯେ ତମେ ଆମ ଗାଁକୁ ଯାଇ ସେଠୁ ତମ ଘରକୁ ଯିବ ?

ବୋଉ —ହଁ ।

ଢବା—ମୁଁ କହୁଚି —ଏତେ ବଙ୍କେଇବା ଦର୍କାର କଣ ? କଟକରୁ ମଟରରେ ଯାଇ କନ୍ଦରପୁରଠୁଁ ଜଗତସିଂହପୁର ରାସ୍ତାରେ ଗଲେ ଆମ ଘରେ ପହଞ୍ଚିବ । କିନ୍ତୁ ଯାହାର ମୁଖ୍ୟ ଉଦ୍ଦେଶ୍ୟ ଯେତେବେଳେ ହେଲା ତମ ବାପଘର—ସେତେବେଳେ କନ୍ଦରପୁରଠୁଁ ଜଗତସିଂହପୁର ରାସ୍ତାରେ ନ ଯାଇ, ତାରପୁର ରାସ୍ତାରେ ଗଲେତ ସିଧା ସଳଖ ତମ ଭାଇ ଭାଉଜଙ୍କ ପାଖରେ ଯାଇ ହାଜର ହେଇଯିବା !

ବୋଉ — (ଡରିଡରି) କ'ଣ ଆମେ ସମସ୍ତେ ଯିବା ?

ଢବା—ହଁ, ସପରିବାରେ । ତମ ଶାଶୁଘରଟା ତମ ନିଜର ଘର ହେଇ ନ ପାରେ—କିନ୍ତୁ ତମ ସ୍ୱାମୀ ଓ ସନ୍ତାନ ଯେ ତମର ଅତି ନିଜର—ଏ କଥା କ'ଣ ତମେ ମନା କରିବ ?

ବୋଉ—ହେଲେ ଏଇଟା କ'ଣ ତମକୁ ସୁନ୍ଦର ଦିଶିବ ?

ଢବା—କଥାଟାର ଅସୁନ୍ଦର ଦିଗଟା ଯେତେବେଳେ ମୁଁ ଚିନ୍ତା କରିନି, ଏଇଟା ସୁନ୍ଦର ଦିଶିବ କି ନା ମୁଁ କହି ପାରିବି ନି । ତମେ କୁହ—ଏଇଟା ସୁନ୍ଦର କି ଅସୁନ୍ଦର ?

ବୋଉ—ଯେତେ ହେଲେ ତ ସିଏ ତମର ଶଶୁର ଘର ।

ଢବା—ଭୁଲ୍ କହିଲ ମାମାବୋଉ । ଯେତେ ହେଲେ ନୁହେଁ—ଯାହା ହେଲେ ବି, ସିଏ ମୋର ଶଶୁର ଘର !

ବୋଉ—କଣ, ଯାହାହେଲେ ?

ଦାଦା—ତମେ କହୁଚ ଯେ ଯେତେ ନିକଟ ବନ୍ଧୁ କ ଯେତେ ସ୍ନେହୀ ହେଲେ ବି, ଶଶୁର ଘରତ···ଏମିତି ଯାଇ ପହଞ୍ଚି ଯିବା ଠିକ୍ ନୁହେଁ । ମୁଁ କହୁଚ—ସେମାନେ ଯାହା ହେଲେ ବି, ଅର୍ଥାତ୍ ଯେତେ ନିକୃଷ୍ଟ ବନ୍ଧୁ କ ଯେତେ ଅସ୍ନେହୀ ହେଲେ ବି, ଶଶୁର ଘର ତ—ପହଞ୍ଚି ଗଲେ କ୍ଷତିଟା କ'ଣ ?

ବୋଉ—ନାଇଁ—ନାଇଁ—ଶଶୁର ଘରେ ଜ୍ୱାଇଁ ବିନା ନିମନ୍ତ୍ରଣରେ ଯାଇ ପହଞ୍ଚିବା ମୋତେ ଠିକ୍ ନୁହେଁ ।

ଦାଦା—ଆଚ୍ଛା, ତମେ ତା'ହେଲେ କ'ଣ କହୁଚ ?

ବୋଉ—ଏଠୁ କାଲି ଆମେ ଗାଁକୁ ଯିବା । ପଦ୍ମିଲ ରଜଦିନ ତମ ଘରେ ରଜପାଳି, ପିଠାପଣା ଦିଆ ନିଆ କରି ମଝି ରଜ ଦିନ ମୁଁ ଆମ ଘରକୁ ଯାଇ, ଭୂଇଁ ନଅଣ ଦିନ ପୁଣି ଚାଲି ଆସିବି ।

ଦାଦା—ତମେ ଏକା ଯିବ ?

ବୋଉ—ଶାଉଜଙ୍କ ଦେହ କ'ଣ ଭଲ ନାହିଁ ଯେ, ସେଇଥିପାଇଁ ଯିବା କଥା । ମାମା କୋଉଦିନୁ ମାମୁଁ ଘରକୁ ଯାଇନି—ତାକୁ ସଙ୍ଗରେ ନେଇଯିବି । ଆଉ ଟିକୁଁଟା ଯିବାକୁ ଯଦି କଟାଳି କରେ—ତାକୁ ତମେ କ'ଣ ସମାଳି ପାରିବ ?

ଦାଦା ନିଜେ ଆମ୍ବ ଖାଇ ମୋ ମୁଣ୍ଡରେ ଅଠା ବୋଳୁଚ୍ଛ, ତାକୁ ସମାଳିବା ଅବଶ୍ୟ ସହଜ କଥା ନୁହେଁ ।

ବୋଉ—ମାମା ଆଉ ଟିକୁଁ ଦୁହେଁ ଯେତେବେଳେ ଯିବେ—ଛୁଆଟା କଣ ସମାଳ ହୋଇ ରହିବ ! ହବତ, ତାକୁ ସାଙ୍ଗରେ ନେଇ ଯିବି ।

ଦାଦା—ତା'ହେଲେ ଏଥିରୁ ଏଇଆ ପ୍ରତିପାଦିତ ହେଲା ଯେ ଓଡ଼ିଆର ନିଜସ୍ୱ ପର୍ବ ଏଇ ରଜ ପର୍ବର ତ୍ରିଦିବସ୍ଥ ଦିନରେ ମୁଁ ମୋ

ପରିବାରଙ୍କଦ୍ୱାରା ପରିତ୍ୟକ୍ତ ହୋଇ ନିଜ ଘରେ ପରବାସୀ ପରି ଏକାକୀ ଦିନ କାଟିବି !

ବୋଉ—ଗୋଟାଏ ଦିନର କଥା ତ......

ଦିବା—ସ୍ୱାର୍ଥ ! ! ବୁଝିଲ ମାମାବୋଉ, ଏଇ କଥାରୁ ତମ ସ୍ୱାର୍ଥ ସହିତ ମୋ ସ୍ୱାର୍ଥର ଚରମ ସଂଘର୍ଷର ବେଳ ଆସି ପହୁଞ୍ଚିଲାଣି । ତମ ମନକାମନା ପୂର୍ଣ୍ଣ କରିବାପାଇଁ···ମୁଁ ଏତେବଡ଼ ସ୍ୱାର୍ଥ ତ୍ୟାଗ କରି ପାରିବି କି ନା କିମ୍ବା ତମେ ତମ ସ୍ୱାର୍ଥ ବଳି ଦେଇ ପାରିବ କି ନାହିଁ···ଏଇଟା ବର୍ତ୍ତମାନ ବିଚାର କରିବାର କଥା ।

ବୋଉ—(ଅସହିଷ୍ଣୁ ହୋଇ) ତମେ ତମର ବିଚାର କରୁଥା—ମୁଁ ଯାଉଛି, ଏବେଠୁଁ ଜିନିଷପତ୍ର ବନ୍ଧାବନ୍ଧି କରିବି । (ଚାଲିଗଲେ)

ଦିବା — ଆ···ଚ୍ଛା !

---

# ଦ୍ୱିତୀୟ ଦୃଶ୍ୟ

( ପୂର୍ବର ସେଇ କକ୍ଷ । ସମୟ—ପରଦିନ ପୂର୍ବାହ୍ନ । ଦିବାକର ଓ ସୁଦାମ ଆଳାପରତ । ବେଶ୍ ହସ ଖୁସିରେ କଥାବାର୍ତ୍ତା ଚାଲିଥାଏ )

ସୁଦାମ—ବୁଝିଲ ଦିବାକର ବାବୁ—ମୋର ଆସିବାର କ'ଣ ଗୋଟାଏ ଠିକ ଠିକଣା ଥିଲା ।

ଦିବା—କୋଉଦିନ ତମର ଭଲା କୋଉ କାମରେ କିଛି ଠିକ୍ ଠିକଣା ଥାଏ ?

ସୁଦାମ—ଯାହା କହିଚ ! ହଠାତ୍ ଠିକ୍ କଲି ଯେ—କୁଆଡ଼େ ଗୋଟାଏ ଯିବା ! ! ତେବେ, କୁଆଡ଼େ ଯିବା ? ସେମିତି··· ହଠାତ୍ ମନେ ପଡ଼ିଗଲା ତମ ଠିକଣାଟା, ଯେ ଆମ ଦିବାକର୍-ବାବୁ ଆଠ ଦଶ ମାସ ହେଲା କଟକ ବଦଳି ହୋଇ ଆସିଲେଣି ! ବାସ୍—ଆସୁ ଆସୁ ତ ଆସିଗଲି—ଆଉ କ'ଣ ?

ଦିବା—ଭଲ କଲ ସୁଦାମ ଭାଇ—ଭାରି ଭଲ କଲ । ମୁଁ ଭାରି ଖୁସି । ତମ ସହିତ ମୋର କେତେ ବର୍ଷ ହେଲା ଦେଖା ହୋଇନ କହିଲ ?

ସୁଦାମ—ହିଁ···ହବ ନାହିଁକି ଛ'ସାତ ବର୍ଷ ? ତମେ ଥିଲ ସେତେ-ବେଳେ କେନ୍ଦ୍ରାପଡ଼ାରେ ସବ୍‌ଡିଭିଜନାଲ ଅଫିସରେ—ଯାଉଥିଲି ରାୟଗଡ଼ା—ମୁଁ ଯାଇଥିଲି କଳାହାଣ୍ଡି, ଫେରୁଥିଲି କଟକ । ବାଟରେ ବିଜୟନଗର ଷ୍ଟେସନରେ ଦେଖା—ମନେନାହିଁ ?

ଦିବା—ବାଃ । ମନେ ପୁଣି ନାହିଁ ! ବିଜୟନଗରର ସେଇ ହୋଟେଲରେ ଦୁହେଁ କମ୍ପିଟିସନ୍ କରି ଖାଇଲେ—ତମେ ଖାଇଲ ସାତ ପ୍ଲେଟ ଉପମା— ଆଉ ମୁଁ ଖାଇଲି—

ସୁଦାମ—ଛ' ପ୍ଲେଟ । ଗୋଟାଏ ପ୍ଲେଟ୍‌ରେ ତମେ ହାରିଗଲ । ଆଉ ହାରିଗଲ ବୋଲି ତେରଦ ପ୍ଲେଟ୍‌ର ଦାମ···ଆରେ, ମୁଁ ଜିତିଲି ବୋଲି ଆଉ ଟଗୋଟାଏ ପ୍ଲେଟ୍ ମୁଁ ଖାଇଲି ନାହିଁ ?

ଦ୍ୱବା—ଓ ହଁ ହଁ, ମନେ ପଡ଼ିଲା···ମନେ ପଡ଼ିଲା ।

ସୁଦାମ—ମନେ ପୁଣି ପଡ଼ିବ ନାହିଁ ? ଦ୍ୱାରଗଲ—ପୁଣି ସବୁପାକ ଦାମ୍ ତୁମେ ଦେଲ—ଏତେ ବଡ଼ ଗୋଟାଏ ଘଟଣା କଏ କେବେ ଭୁଲିଯାଇପାରେ ନା ତୁମେ ଭୁଲିବ ?

(ହସୁଥାନ୍ତି । ପିଲାମାନେ ଆସିଲେ)

ଦ୍ୱବା—ଆରେ ମାମୀ, ଛବି, ଏଠିକି ଆସ, ଦେଖ କଏ ଆସିଚନ୍ତି । ଏ ଟିଙ୍କୁ ଏଣିକି ଆ··· । କଣ, ଚହ୍ନି ପାରୁଚ ? ···କ’ଣ୍ଲେ ମାମୀ, ଚହ୍ନି ପାରୁନୁ ?

ମାମୀ—ହଁ, ପି’ସା— ବଡ଼ ପି’ସା ।

ଛବି }
ଟିଙ୍କୁ } —ବଡ଼ ପି’ସା !! (ସମସ୍ତେ ପ୍ରଣାମ କଲେ)

ସୁଦାମ—ଆଚ୍ଛା-ଆଚ୍ଛା ଆଚ୍ଛା-ହେଲା । ···ମାମୀ, ମା’ ମୋର ଠିକ୍ ଚହ୍ନିଲା ।

ଦ୍ୱବା—ଏ ଦୁହେଁ ତ ଖୁବ୍ ପିଲାବେଳେ ତମକୁ ଦେଖିଥିଲେ, ଚହ୍ନିବେ କେମିତି ?

ସୁଦାମ— ଏଠିକି ଆସିଲେଣି ଯେତେବେଳେ—ବଲେ ଚହ୍ନିବେ ।

ଦ୍ୱବା—ମାମୀ, ପି’ସାଙ୍କ ଲୁଗା ପଠା ନେଇ ସେ ଘରେ ରଖ ।

( ମାମୀ ଆଦେଶ ପାଳନ କଲା)

ସୁଦାମ—ଆରେ ଆମ ମାମୀ ବୋଉ କୁଆଡ଼େ ଗଲେ ? କୁଆଡ଼େ ମୁହଁ ଛପା ଦେଇ ରହିଚନ୍ତି । (ଇତିମଧ୍ୟରେ ଟିଙ୍କୁ ଅନ୍ୟ ଘରକୁ ଯାଇ ଫେରି ଆସିଚି)

ଟିଙ୍କୁ—ବାପା, ତମକୁ ବୋଉ ଡାକୁଚି ।

ସୁଦାମ — [ହୋ ହୋ ହୋଇ ହସି ]ଯାଅ ହେ ଦ୍ୱବାଂକର—ତମ ଘରଣୀ ବି ଆମକୁ ଚହ୍ନି ନପାରି ଏଠିକି ଆସିବାକୁ ଦୋଦୋ-ପାଞ୍ଚ ହଉଚନ୍ତି—ଯାଅ ତାଙ୍କୁ ବାଟବରଣ କରି ଆଣ । ···

ଆଲୋ ମାମା, ବ୍ୟାଗ୍‌ରେ ମୋ' ପାନ ବଟାଟା ରହିଗଲା କି ?
(କହୁକହୁ ବାହାରକୁ ଗଲେ ଟିକିଏ ପରେ । ମାମୀବୋଉ ଆସିଲେ )

ବୋଉ—ହଇଓ, ପିଲାଏ କ'ଣ କହୁଚନ୍ତି, ତାଙ୍କ ପି'ସା ଆସିଚନ୍ତି । ଇଏକୋଉ ପି'ସା ।

ବାବା—କ'ଣ ଏମିତି ନ ଚହ୍ନିଲାଙ୍କ ପରି କଥା କହୁଚ ମ ?

ବୋଉ—ଇଏ ତମ ବଡ଼ ଭଣୋଇ—ସୁଦାମବାବୁ ?

ବାବା—ହଁ ।

ବୋଉ—ଇଏ କେମିତି କୁଆଡ଼ୁ ଆସିଲେ ?

ବାବା—ତାଙ୍କ ଘରୁ ରେଲ୍ ଷ୍ଟେସନ ଆସି, ଟ୍ରେନରେ ଚଢ଼ି କଟକ ଷ୍ଟେସନରେ ଓହ୍ଲାଇ, ରିକ୍‌ସାରେ ବସି ଏଠିକି ଆସିଲେ—ହେଲା ?

ବୋଉ—ଉଁଃ । ଖାଲି ଏଇକଥା ଗୁରାକ କହି ଶିଖିଛନ୍ତି ।

ବାବା—କି ଆଶ୍ଚର୍ଯ୍ୟ କଥା ! ଆମ ବଡ଼ ଭଣୋଇ ସେ—ଆମ ଘରକୁ ଆସିଚନ୍ତି—ତମେ ତାଙ୍କ ଶଳା ଭାଉଜ—ତେବେ ତାଙ୍କର ଚର୍ଚ୍ଚା କରିବ ନା ମୁହଁ ଲୁଚେଇ ବସିବ !

ବୋଉ—ମଲା ! ମୁଁ ମୁହଁ ଲୁଚେଇ ବସିବି କାହିଁକି ? କାଇଁ ଗଲେ ସେ ? (ଏତିକିବେଳେ ସୁଦାମ ଆସିଲେ)

ସୁଦାମ—ଆରେ ! ମାମାବୋଉ ଭାଉଜ ! କୋଉକାଳୁ ତମକୁ ଦେଖିନ - ଆଜ ଟିକିଏ ଆଖି ପୂରେଇ ଦେଖିନିଏ ।

ବୋଉ—ଆମକୁ ଆଉ ଦେଖିବାରେ କ'ଣ ଅଛି ?

ସୁଦାମ—ଉଁ ହୁଁ ! ଏ କଥା କହିଲେ ହବ ! ବୁଝିଲ ଭାଉଜ, ଗୋଟାଏ ପାଗ ଯୋଗ ଦେଖି ଏକା ଆସି ପହୁଞ୍ଚି ଯାଇଚି । ଆଜ ସଜବାଜ—କାଲି ପହିଲି ରଜ—

ବୋଉ—ଭଲ ହେଲା—ଗୋଟାଏ ଭଲ ଦିନରେ ଆସି ପହଞ୍ଚିଲେ !

ଆମର ଭାଗ୍ୟ । (ପାନବାଟ୍ଟି ବଢ଼ାଇଲେ)

ଦିବା—ସତକଥା ସୁଦାମ ଭାଇ, ତମେ ଆସିଲ ଆମେ ଭାରି ଖୁସି । ହେଲେ ଅପା ତମକୁ କେମିତି ଏ ରଜ ପର୍ବରେ ଘରୁ ଛାଡ଼ିଲା ?

ସୁଦାମ—ମୁଁ କହିଲା ପରା ହେ ଦିବାକର—ମତେ ପୁଣି ଛାଡ଼ିବ କିଏ ? ମୋର କ'ଣ ଠିକ୍ ଠିକଣା ଅଛି ? କହିଲା ସବୁଥରତ ଗୋଟାଏ ଜାଗାରେ ରଜ ହଉଚି—ଏଥର ଗୋଟାଏ ନୂଆ ଜାଗାକୁ ଯିବା ! ନା କ'ଣ ଭାଉଜ ?

ବୋଉ—ହଁ ପରା, ଆମେ ସେମିତି ଏଥର—

ସୁଦାମ—(ବାଧାଦେଇ) ମୁଁ ଶୁଣିଚି । କଟକରୁ ତମ ବାବୁଙ୍କ ଅଫିସ୍-ଏକାଉଣ୍ଟାଣ୍ଟ୍ ଗୋପୀବାବୁ ଗାଁ'କୁ ଗଲେ ଯେ, ସେଇ କହୁଥିଲେ- ଦିବାକର ବାବୁ ଏଥର ନୂଆ ହୋଇ କଟକ ବଦଳି ହୋଇ ଆସିଚନ୍ତି—ଏଥର କଟକରେ ତାଙ୍କର ନୂଆ ରଜ ପାଳିବେ ।

ଦିବା—ହଁ, ପ୍ରାୟ ପନ୍ଦର ବର୍ଷ ପରେ ଆମେ କଟକ ଆସିଲୁ । କଟକ ଆମ ପକ୍ଷରେ ନୂଆ ନୁହେଁ ଆଉ କ'ଣ ?

ସୁଦାମ—ଆଉ, ଗାଁ କଥା । ବୁଝିଲେ ଦିବବାବୁ, ଗାଁ'ରେ ରଜ ପାଳିବା କଥାଟା—

ବୋଉ—ସେଇ କଥା ପରା ! ରଜରେ ଗାଁ'କୁ ଯିବାପାଇଁ—

ସୁଦାମ—(ବାଧାଦେଇ) ମୋଟେ ତମର କାହାରି ଇଚ୍ଛା ନ ଥିବ ମୁଁ ଜାଣେ । ଆଉ କାହିଁକି ବା ଯିବ ? ଆଉ କ'ଣ ପୂର୍ବର ସେ ରଜ ମଉଜ ଗାଁ'ରେ ଆଜିକାଲି ଅଛି ?··· ନା କ'ଣ ହେ ଦିବାକର ?

ଦିବା—ତମେ ବରାବର ଗାଁ'ରେ ରହୁଚ, ତମଠୁ କ'ଣ ଗାଁ ହାଲଚାଲ୍ ଆଉ କିଏ ବେଶୀ ଜାଣେ ?

ବୋଉ — ଏଇ···ପାନ । (ପାନଦେଲେ)

ଢବା—ପାନ ଦେଇ ତମେ ତେଣେ ଯାଅ—ରନ୍ଧାବଢ଼ାର ବ୍ୟବସ୍ଥା ଦେଖ । (ମାମାବୋଉଙ୍କ ପ୍ରସ୍ଥାନ)

ସୁଦାମ— ଆମ ଦେଶରେ ଗୋଟାଏ କଥା ଅଛି—ରଜକୁ ପୋଡ଼-ପିଠା । ହେଲେ ବାବୁ, ପୋଡ଼ପିଠା ଖାଉଚ କଏ ? ଅଘୋର ଦୁଆଣ୍ଡି, ସମସ୍ତଙ୍କ ଘରେ ତ ପୋଡ଼ପିଠା—ପୋଡ଼ପିଠା ଖାଉଚ କଏ ? ମାନ, ଜାଣିଲୁରେ ଟିଙ୍କୁ, ତୋ ବୋଉ-ହାତ-ପୋଡ଼ା-ପୋଡ଼ପିଠା, ସେ ପିଠାର ଗୋଟାଏ ନାଁ ଅଛି ।

ଟିଙ୍କୁ—ବୋଉ ଭଲ ପୋଡ଼ପିଠା ତିଆରି କରେ ପିଁସା ?

ସୁଦାମ— ସେ କଥା ଯିଏ ଖାଇଚ, ସିଏ ଜାଣିଚରେ ବାପା ! ବାହାଘର ପରେ ତୋ' ବୋଉ ଯେ କେଇଟା ବର୍ଷ ଗାଁ'ରେ ଥିଲା, ତା' ହାତ ପିଠାପଣା ତମ ସେ ଅଞ୍ଚଳରେ ଗୋଟାଏ ଚହଳ ପକେଇ ଦେଇଥିଲା ନା !

ଟିଙ୍କୁ—ଶୁଣୁଚଟି ବାପା—ବୋଉ କେମିତ ବଢ଼ିଆ ପିଠା ତିଆରି କରେ !

ସୁଦାମ—ତା' ସାଙ୍ଗକୁ ପୁଣି ତୋ ବାପା-ହାତ-ରନ୍ଧା-ମାଂସ ତରକାରି !! ଦେଖାଯାଉ, ପୋଡ଼ପିଠା, ମାଂସତରକାରି ଖିଆ ପାଇଁ ଯୋଗଟାଏ ତ ଏଥର ପଡ଼ିଚ ।

ଢିବା— କେବେହେଲେ ତ ତମର ଏଇ ଖାଇବା ଚିନ୍ତା ଛଡ଼ା ଅନ୍ୟ କିଛି ଚିନ୍ତା ମୁଁ ଦେଖିନି ନାଇଁ ସୁଦାମ ଭାଇ !

ସୁଦାମ—ବୁଝିଲ ଢବାକର, ବର୍ତ୍ତମାନ ଏ ଦୁନିଆର ଯୋଉ ଗତି ନା, ସେଇଥିରେ ମୋ ଭଳି ଲୋକ ଯଦି ଅନ୍ୟ କିଛି ଚିନ୍ତା କରେ, ତା'ହେଲେ ଖାଇବାର ଚିନ୍ତା କ'ଣ—ଖାଇବାକୁ ଘାମପ୍ୟୁ ବୋଧେ ମତେ ମିଳିବ ନାଇଁ !!

(କ'ଣ କେମିତି ଖୋଜିବାରେ ଲାଗିଲେ)

ହବା—କ'ଣ ? ବଡ଼ ଖୋଜୁଚ ?···ବଡ଼ ଥାଉ—ଏଇ ସିଗ୍ରେଟ୍ ନିଅ । ସିଗ୍ରେଟ୍ ଚଳୁଚ ତ ?

ସୁଦାମ—ହଁ, ଆଉ ଯେତେଯେତେ ଧୂଆଁ ଖାଉଥିଲି, ସବୁ ଗୁଡ଼ିଲଣି—ଖାଲି ଯାହା ଏଇ ବଡ଼ ସିଗ୍ରେଟ୍ । ହଁ, ହବାକର, ପାଲ୍ ଆଜଠୁଁ ହଉଚ ନା କାଲିଠୁଁ ?

ଦବା—ପାଲ୍ ? କ ପାଲ୍ ?

ସୁଦାମ—କଓ, କଟକ ସହରରେ ଗୋଡ଼ ଦଉ ଦଉ ମୁଁ ଖବର ପାଇଲଣି ତମେ ଜାଣିନ ?

ହବା—ସତେ ? ଏଠି ପାଲ୍ ହବ ?

ସୁଦାମ—ଆଉ କ'ଣ ? ଗାୟକରନ୍—ଗାୟକ ଶିରୋମଣି, ଏ ଦୁହିଁଙ୍କ ଭିତରେ ବାଧାପାଲ୍ ; ମୁଁ ଭଲଭାବେ ଖବର ରଖିଚ—ଗଲା ପାଞ୍ଚ ବର୍ଷ ଭିତରେ କୋଉଠି ଭେଟାଭେଟି ହେଇ ନ ଥିଲେ—ଏଇଠି ଦୁହିଁଙ୍କର ଭେଟ ହବ ।

ହବା—ତା'ହେଲେ ସୁଦାମ ଭାଇ—ପୋଡ଼ପିଠା, ମାଂସ ତରକାରି ଖିଆ ହେଇ ବାଧାପାଲ୍ ଦେଖାହବ ?

ସୁଦାମ—ପଚ୍ଛରୁଚ ପୁଣି—ଏକାବେଳକେ ଷୋଳଅଣା ରଜମଉଜ, ଆଉ କ'ଣ ? (ଦୁହେଁ ହସୁଥାନ୍ତି । ଛବ ଚା' ନେଇ ଆସିଲା )

ହବା—କ'ଣ ଲୋ ଛବ; ଚା ? ପି'ସାଙ୍କୁ ଚା' ଦେ ।

ସୁଦାମ—ହଁ, ଦେ ମା' ଦେ । ମୁଁ ତମର ସେ ବାହାର ବାରଣ୍ଡାରେ ବସି ଚା ଖାଉଚ ହବାକର । ଏଠି କେମିତି ଟିକିଏ ଗରମ ଲାଗୁଚ ।

( ବାହାରକୁ ଗଲେ । ହବାକର ଗଲେ ଭିତରକୁ । ···କିଛି ସମୟ ପରେ ଦବାକର ଓ ମାଳବୋଉ ପୁଣି ଆସିଲେ । ମାଳବୋଉ ଖୁବ୍ ଅପ୍ରସନ୍ନ ଜଣାଯାଉଥାଆନ୍ତି )

ବୋଉ—ତା'ହେଲେ ଏଇଆ ହେଲା ନା ? ତୁମେ ଯାହା କହୁଥିଲ ସେଇଆ କଲ ! ଆଜ ଦିନ ଦି'ଟା ମଟରରେ ଘରକୁ ଯିବାର କଥା—

ବାବା—ଯିବ କେମିତି କୁହ, ସୁଦାମ ଭାଇ ଏତେ ଦିନକେ ଆମ ଘରକୁ ଆସିଚନ୍ତି—ଆଉ ତୁମେ ତ ଜାଣ—ଆମେ ଦୁହେଁ ଶଳା ଭଣୋଇ ନୋହୁଁ ଯେ, ଦୁଇ ଅନ୍ତରଙ୍ଗ ବନ୍ଧୁ—

ବୋଉ—ବେଶ୍ ତ ! ସିଏ ଆସିଲେ—ବେଳାଏ ରହି ଏଠି ଖିଆ-ପିଆ କରିବେ—ତାଙ୍କୁ ବିଦା କରି ଦେଇ ଆମେ ଆରବେଳାକୁ ଗାଁ'କୁ ଯିବା ।

ବାବା—ସିଏ ପରା ଆସିଚନ୍ତି, ଏଇଠି ରଜ କରାଇବେ—ତାଙ୍କୁ ମନା କରିବ କିଏ ?

ବୋଉ—କାହିଁକି, ତୁମେ ମନା କରିଦଉନ ?

ବାବା—ମୁଁ ମନା କରିଦେବି ! ! କଥାଟାକୁ ତୁମେ ଭାବିଚନ୍ତି, ମାପିଚୁପି କହୁଚ ତ ମାମାବୋଉ ?

ବୋଉ—ଓଃଭାରିସିଆର ଗୃହକର କରି ଏକା ତୁମେ ମାପିଚୁପି ସବୁ କାମ କରି ଜାଣ ପରା ! ଆଚ୍ଛା, ଦେଖୁଚି ମୁଁ ! ପୋଡ଼ପିଠା, ମାଂସ ତରକାରୀ ଖାଇ ବାପଘରପାଲା ଦେଖିବ, ନା ? ଏଇ ପାଲା ଏଠି ଲଗେଇଚ ? ମୋର ତ ଘରକୁ ଯିବା ହେଲା ନାହିଁ—ମୁଁ ବି ଦେଖିବି, ତମର କେମିତି ପୋଡ଼ପିଠା ଖିଆହେବ !!

(ଭିତରକୁ ଚାଲିଗଲେ)

———

## ଦ୍ୱିତୀୟ ଦୃଶ୍ୟ

( ସ୍ୱେଷେଇ ଘର ସଂଲଗ୍ନ ପ୍ରଶସ୍ତ ବାରଣ୍ଡା । ମାମୀବୋଉ ସ୍ୱେଷେଇ ଘର କବାଟ ଦରଆଉଜା କରି ଶୋଇଚନ୍ତି ।)

ମାମା—ବୋଉ ଉଠ୍ । ରାତି ପରି ଆଠଟା ବାଜିବ । ଉଠ୍ । ପିଠା ପୋଡ଼ିବୁ ନାହିଁ ?

ଛବି—ଉଠ୍ ବୋଉ, ପି'ସା ପରି ତିନଥର ପଚାରି ପଠେଇଲେଣି ଯେ ପିଠା ପୋଡ଼ା କଥା କୋଉଠାଏ ଗଲା—ଉଠ୍ ।

ଟିଙ୍କୁ—ଦେଖୁଚୁ ବୋଉ, ଶଙ୍କରବାବୁ ଘରେ ଦିନ ଗୁରିଟା ବେଳୁ ପିଠା ପୋଡ଼ା ହେଉଲାଣି—ବାସନା ଆସୁଚି—ତୁ ଉଠ୍ ।

(ମାମାବୋଉ ସେମିତି ଶୋଇଥାନ୍ତି । ଦିବାକର ଆସିଲେ)

ଦିବା—କ'ଣ ହେଲା, ବୋଉ ଉଠିଲା ?

ଟିଙ୍କୁ—ନା, ମୋଟେ ଉଠୁନାହିଁ ।

ମାମା—ଗାଁକୁ ଯାଇଥିଲେ ତ ଏତେବେଳକୁ ଆମର ପିଠା ପୋଡ଼ା ହେଲାଣି ।

ଛବି—ଏଇ ପି'ସା ଯୋଉଠି ଥିବେ—ତାଙ୍କର ପାଇଁ ସବୁ ଗୋଳ-ମାଳ !

ଦିବା—ରୁହ ସବୁ ତମେ । (ମାମାବୋଉକୁ ) ରାତି ଆସ ଆଠଟା ବାଜିଲାଣି—ଏ ପର୍ଯ୍ୟନ୍ତେ ତମେ ଶୋଇଚ ଯେ ! ଉଠ ! ଘରେ ଜଣେ କୁଣିଆ, ଶେଷକୁ କ'ଣ ତମେ ଅପଦସ୍ଥ କରିବ ? କ'ଣ ଉଠୁଚ ନା ନାହିଁ ? (ମାମାବୋଉ ନୀରବ—ନିଶ୍ଚଳ) ଓ, ଏକା-ବେଳେକେ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଚ ! ଅନଶନ, ଧର୍ମଘଟ, ପୁଣି ମୌନବ୍ରତ ! ଆଚ୍ଛା ! କୁଛ୍ ପରୱା ନେହିଁ ।···ଆସରେ ପିଲାଏ, ଆସ ସମସ୍ତେ ।

ଟିଙ୍କୁ—କ'ଣ କରିବ ବାପା, ପିଠା ପୋଡ଼ିବ ?

ବାବା—ହଁ ।

ଛବି—ସତେ ବାପା ତମେ ପୋଡ଼ିବ ?

ମାମି—ତମକୁ ପିଠା ପୋଡ଼ ଆସିବ ବାପା ?

ବାବା—ଓଭରସିଆର ଗୃହିଣୀ କର ଶ'ଶ' ଘଟି ଫାଷ୍ଟକ୍ଲାସ ଇଟା ପୋଡ଼େଇଚ—ଆଉ ଆଜ ଗୋଟେ ପିଠା ପୋଡ଼ିପାରିବ ନାହିଁ ? ହଁ, ଜିନିଷପତ୍ର ସବୁ ତ ମୁଁ ଯୋଗାଡ଼ କରି ଆଣିଚ । କେଉଁଠି କ'ଣ ଅଛି ଦେଖ୍ ତ ।

ଟିକ୍କୁ—ଏଠି ହେଲା, ଅଟା, ଗୁଡ଼—

ଛବି—ଇଏ ନଡ଼ିଆ, ଛେନା—ମସଲା—

ମାମି—ଏଥିରେ ହେଲା ବାଦାମ, ପେସ୍ତା, କସ୍‌ମିସ୍—

ବାବା—ବାସ୍, ସବୁ ରେଡ଼ି !··· ଏଥର ଖାଲି ଭାଗମାପ କରିବାକୁ ହବ । କେତେ ଅଟାରେ କେତେ ଗୁଡ଼—କେତେ ପାଣି !!

ମାମି—ସେଇ ଭାଗମାପ ତ ଭାରି ଅଡୁଆ, ବାପା ! ବୋଉ କହୁଥିଲା, ଭାଗମାପ ଟିକେ ଭୁଲ୍ ହେଇଗଲେ ପିଠା ନଷ୍ଟ ହେଇଯିବ । ତମକୁ ସବୁ ଭାଗମାପ ଠିକ୍ ଜଣାତ ବାପା ?

ବାବା—କେତେ ବାଲିରେ କେତେ ଚୂନ, କେତେ ସିମେଣ୍ଟ, କେତେ କଂକ୍ରିଟ୍—ଏସବୁର ଭାଗମାପ ଠିକ୍‌କରି ଯିଏ ଧାଡ଼ିକଧାଡ଼ି ଦ'ମହଲା ତିନି ମହଲା କୋଠା ଠିଆ କରେଇ ଦେଇଛି—ସିଏ ଗୋଟାଏ ପୋଡ଼ପିଠାରେ କେତେ ଅଟା, କେତେ ପାଣି, କେତେ ଗୁଡ଼, କେତେ ମସଲା, ତା'ର ଭାଗମାପ ଜାଣିପାରିବ ନାଇଁ !! ମୁଁ ସବୁ ଠିକ୍ କରି ଦଉଚି—ତମେମାନେ ଖାଲି ମୋ' ହାତ ପାଖକୁ ଜିନିଷ ଯୋଗାଇ ଦିଅ ।

ଟିକ୍କୁ—ବୋଉକୁ ଡାକିବ ବାପା ?

ବାବା—ନା ।

ଛବି—ସତରେ, ତମେ ପିଠା ପୋଡ଼ୁଚ ଜାଣିଲେ ବୋଉ ଉଠିଆସିବ, ଡାକବି ?

ହବା—ନା ।

ମାମି—ବୋଉ ପରିକର ଶୋଇଲା ବୋଲି ତାକୁ ନ ଡାକଲେ ତା' ମନ ଭାରି କଷ୍ଟ ହବ—ସେ କାନ୍ଦିବ ! ବୋଉକୁ ଡାକବି ବାପା ?

ହବା--ନା,ନା,ନା, ! ଆଣ ଅଣ୍ଟା—ଡାଳ ପାଣି । (କାମ ଗୃହଲା)

— — —

# ଶେଷ ଦୃଶ୍ୟ

(ପୂର୍ବର ସେଇ ବାରଣ୍ଡା । ସମୟ—ପହିଲ ରଜର ପୂର୍ବାହ୍ଣ । ଦ୍ୱାକର ଓ ପିଲମାନେ ଅଛନ୍ତି—ସୁଦାମ ଆସିଲେ)

ସୁଦାମ—କ'ଣ ଦ୍ୱାକର ବାବୁ ! ତେଣେ ଯେ ପାଲି ଆରମ୍ଭ ହୋଇଯିବା ଉପରେ !!

ଦ୍ୱବା—ଏଣେ ବ ସବୁ ପ୍ରସ୍ତୁତ । ଖାଲି ପିଠା କଟା ହବାକୁ ବାକି ।

ସୁଦାମ—ମାମାବୋଉ, ଭାଉଜଙ୍କ ପାଟି ତୁଣ୍ଡ କ'ଣ କିଛି ଶୁଭୁନାହିଁ ?

ଦ୍ୱବା—ବୁଝୁନା, ଆଜ ପହିଲ ରଜ—ସେ ଭାରି ବ୍ୟସ୍ତ—କଥା କହିବାକୁ ତର ନାହିଁ ।

ସୁଦାମ—ହଁ, ହଁ, ଘରର ଘରଣୀ ଯେତେବେଳେ, ବ୍ୟସ୍ତ ହେବେ ନାହିଁ ଆଉ କ'ଣ (କହି କହି ପ୍ରସ୍ଥାନ)

ଦ୍ୱବା—( ଅନୁଚ୍ଚ ସ୍ୱରରେ ) ତୋ' ବୋଉ ଉଠିଲଣି ମାମା ?

ମାମା—ହଁ ଉଠିକରି ବସିଚ । ଡାକିବ ?

ଦ୍ୱବା—ଦର୍କାର ନାହିଁ, ତୁ ପିଠା କାଟ୍—ମାଂସ ତରକାରି ହୋଇ ଗଲଣି । (ପିଠାକଟା ହବାର ଉଦ୍ୟୋଗ ଚାଲିଲା)

ମାମା—ବାପା—ବାପା ! ଦେଖିଲ ବାପା !

ଦ୍ୱବା—କ'ଣ ! ପିଠା କାଟୁଚୁ ତ ?

ମାମା—ପିଠା ସବୁ ମୋଟେ କାଟି ହଉନ । ପଥର ପରି ଟାଣ ହୋଇଚ । ଉପରଟା ସାରା କେମିତି ପୋଡ଼ପୋଡ଼ ଯାଇଚ । ପନକ ତ ଶୁଣିଲ ନାହିଁ ! ଏଇ କଟୁରିରେ କାଟିଲଣି—ତେବେ ବ କାଟି ହଉନ ।

ଦ୍ୱବା—ଦେଖି, ଦେଖି ! ଆରେ ଇଏ କଣ ? କାହିଁକି ଏମିତି ହେଲା ? ଦେଖି କଟୁରିଟା ଦେଖି । (ହାଣିଲେ) ଇସ୍ । ଉପରଟା

ପଥର ପରି ଟାଣ—ଭିତରଟା କାଦୁଅ ପରି କଞ୍ଚା । ସ୍ୱାଗ-
ମାପତ ସବୁ ଠିକ୍ ଥିଲା—କାଇଁକି ଏମିତି ହେଲା ?

ଟିଙ୍କୁ—ବୋଉ । ଦେଖିବୁ ଆସିଲୁ—ବାପା କେମିତି ପିଠା
ପୋଡ଼ିଛନ୍ତି । ଉପରଟା ପୋଡ଼ା ଅଙ୍ଗାର—ପଥର ପରି ଟାଣ—
ଭିତରଟା କାଦୁଅ ପରି କଞ୍ଚା !

ବାବା—ହେଇ୍ । ପାଟି କରନା । ସୁଦାମ ଭାଇ ଶୁଣିବେ—
(ବୋଉ ଆସିଲେ)

ବୋଉ - ହଇଲେ ମାମା, ତୋ' ଓଭରସିଅର୍ ବାପାଙ୍କୁ ପଚାରିଲୁ—
ଅଟା ଯନ୍ତ କରି ପିଠା ପୋଡ଼ିଥିଲେ ?

ମାମା—ସତେତ ବାପା । ତମେ ଅଟା ଯନ୍ତନ ! ସେମିତି ଚକଟି
କରେଇରେ ଭର୍ତ୍ତି କରି ନଆଁ ଅଜାଡ଼ି ଦେଲ !

ବାବା—ଆରେ ! ପୋଡ଼ ପିଠା ପାଇଁ ଅଟା ଯନ୍ତାହୁଏ ନା କ'ଣ ?
ସେ କଥାତ ମତେ ଜଣା ନ ଥିଲା ! !

ବୋଉ—ଧାଡ଼ି ଧାଡ଼ି କୋଠା ତିଆରି କରେଇଚନ୍ତି—ଘଟିଘଟି ଇଟା
ପୋଡ଼େଇଚନ୍ତି—ପିଠାଟିଏ ପୋଡ଼େଇ ପାରିଲେ ନାହିଁ !!

ବାବା—ଏ କଥା ତମେ ବର୍ତ୍ତମାନ କହୁଚଟି ? ଭଲକଥା, ମୋର
କ'ଣ ଯାଉଚି ! ତମ ହାତ ତିଆରି ପିଠାଭଳି ପିଠା ତ୍ରିଭୁବନରେ
ମିଳେନାହିଁ ବୋଲିତ ସୁଦାମ ଭାଇ ମୁହଁରେ ତମ ପ୍ରଶଂସାର
ସୀମା ନାହିଁ ! ମୁଁ ଯାଉଚି—ଏଇ ପିଠା ତାଙ୍କ ପାଖରେ ଥୋଇ
ଦେବି । ପିଠା ମୁଁ ତିଆରି କରିଚି ବୋଲି ତ ସିଏ ଆଉ ଜାଣନ୍ତି
ନାହିଁ । ଭଲ ହୋଇଥିଲେ ତମେ ପ୍ରଶଂସା ପାଇଥାନ୍ତ !
ଭଲ ହେଇନି – ତମର ନିନ୍ଦାହେବ !! ···ମୋର କ'ଣ ଅଛି—

ବୋଉ—ଆଉ ତ କିଛି ନାହିଁ । ଖାଲି ଏଇଥିରୁ ଗୁରିଏ କଥା
ଶିଖିଚନ୍ତି !! ଆଲୋ ମାମା, ସେ ଷ୍ଟୋରଘର କବାଟ ଖୋଲିବୁଟି ।
(ମାମା କବାଟ ଖୋଲି ଦେଖିଲା)

ମାମୀ—(ଖୁସିରେ) ଏ କ'ଣ ବୋଉ ? ଏଠି କ'ଣ ଆଉ ଗୋଟାଏ
 ପିଠା ପୋଡ଼ା ହେଉଛି ? (ଘର ଭିତରୁ ପିଠା ଆଣିଲା)

ଟିଙ୍କୁ—ଇସ୍‌ରେ ! କ ବଢ଼ିଆ ପିଠା !

ଛବି—ଦେଖୁଛ ବାପା—କେମିତି ନାଲି ଟହ ଟହ ହେଉଛି !

ମାମୀ—ଆଉ କେଡ଼େ ନରମ !!

ବାବା—ଏ ପିଠା ତମେ ପୋଡ଼ିଛ ?

ବୋଉ—କଣ ଆଉ କରିଥାନ୍ତି ? ତମ ପିଠାପୋଡ଼ା ତ କାଲି
 ଦେଖିଲି—ତେମେ ସମସ୍ତେ ଶୋଇ ପଡ଼ିଲା ପରେ ଆଉ ଯାହା
 ବାକି ଥିଲା, ସେଇଥିରେ ଏ ପିଠାଟା ପୋଡ଼ିଛି । ଦେ ମାମୀ,
 ପନିକଟା ଦେ—ମୁଁ ପିଠାକାଟେ ।

ବାବା—(ଖିକ୍ ଖିକ୍ ହେଇ ବଡପାଟିରେ) ସୁଦାମ ଭାଇ !

ସୁଦାମ—(ଦୂରରୁ) ଏଣେ ଗାୟକ ଶିରୋମଣିଙ୍କ ମୃଦଙ୍ଗ ଟୁଙ୍ଗ୍ ଟାଙ୍ଗ୍
 ହେଲାଣି ବାବାକର !

ବାବା—ଏଣେ ବି ଆସନ ପଡ଼ିଲାଣି, ଆସ । (ସୁଦାମ ଆସିଲେ)

ସୁଦାମ—ବାଃ !! ଦିବ୍ୟ ପିଠା—ଦିବ୍ୟ ତରକାରୀ ! ଏ ନ ହେଲେ
 ରଜ ମଉଜ ଆଉ କଣ !! [ସମସ୍ତେ ହସୁଥାନ୍ତି]



## ଏ ପରିବାରରେ ଅଛନ୍ତି:

ଭୋଳାନାଥ ବାବୁ—ଗୃହସ୍ୱାମୀ (ବୟସ—୩୫ ବର୍ଷ)

ସୀତା—ତାଙ୍କ ପତ୍ନୀ (ବୟସ—୩୧ ବର୍ଷ)

ହେମା—ତାଙ୍କ କନ୍ୟା (ବୟସ—୧୨ ବର୍ଷ)

ନାରଣ—ତାଙ୍କ ଭୃତ୍ୟ

ଓ

କାଶୀନାଥ—ତାଙ୍କ ଶାଳକ

( ଏ ଟଫର ରଚନାକାଳ—ଜୁଲାଇ ୧୯୫୯ )

# ହେଲ୍‌ଥ୍‌ ଅଫିସରଙ୍କ ପରିବାର

## ପ୍ରଥମ ଦୃଶ୍ୟ

[କଟକ ସହର । ଭୋଳାନାଥ ବାବୁଙ୍କ ଶୟନକକ୍ଷ । ସମୟ—ରାତ୍ରି ପ୍ରାୟ ନ'ଟା । କୋଠରୀଟିର ସବୁତକ ଆଲୁଅ ଜାଳଦେଇ ଯେଉଁ ଯେଉଁ ସ୍ଥାନରେ ଗୁଡ଼ରପୋକ ସାଧାରଣତଃ ରୁହନ୍ତି, ଭୋଳାନାଥବାବୁ ସେ ସବୁ ସ୍ଥାନକୁ ତନ୍ନତନ୍ନ କରି ଦେଖୁଥାନ୍ତି]

ଭୋଳା—(ଡାକିଲେ) ଜେମା··ଜେମା···

ଜେମା—(ଦୂରରୁ) ଯାଉଛି ବାପା ।

ଭୋଳା—ଆସିବାକୁ ମୁଁ ତୋତେ କହୁନି ।

ଜେମା—ହଉ, ତା'ହେଲେ ମୁଁ ଯାଉନି ··ଏଇଠି ଅଛି ।

ଭୋଳା—ସେଇଠି ବସି ରହିବାକୁ କ'ଣ ମୁଁ ତୋତେ କହିଲି ?

ଜେମା—ଆଉ ?

ଭୋଳା—ତୋ'ର ତେଣେ କେତେଦୂର ଗଲା ?

ଜେମା—ସରିଲାଣି ।

ଭୋଳା—ସରିଲାଣି ଯଦି ଆଣିଲୁ, ଦେଖେଁ ।

ଜେମା—ଯିବି ?·· ଯିବି ବାପା ?

ଭୋଳା—କହିଲି ପରା—ଆ (ହାତରେ ଗୋଟାଏ ଖାତାଧରି ଜେମା ଅସିଲା)

ଜେମା—ବାପା, ଗୁରପୋକ ଇଂଲଣ୍ କ'ଣ ? ବଗ୍ ଟି ?

ଭୋଳା—ହିଁ, ବଗ୍ ଯେ, ହେଲେ ଖାଲି ଗୁରପୋକର ଇଂଲଶ୍ ଶିଖିଲେ ତ ହବ ନାହିଁ ।···ଗୁରପୋକଙ୍କୁ କେମିତି ଏ ଦେଶରୁ ବହୁ ଦୂର ଦୂରାନ୍ତ····· ଏମିତିକି ଭାରତମହାସାଗର; ଭୂମଧ୍ୟସାଗର—ଇଂଲଣ ପ୍ରଣାଳୀ—ଆଟ୍‌ଲାଣ୍ଟିକ ମହାସାଗର, ପ୍ରଶାନ୍ତ ମହାସାଗର ଆଦି ସବୁ ସାଗର ମହାସାଗର ପାର କରେଇ ଦବାର ବିଦ୍ୟା ହାସଲ କରିବାକୁ ପଡ଼ିବ ।

ଜେମା—ହଁ ପରା, ଗୁରପୋକର ସାଗର ଯାତ୍ରା କଥା ! ଏଇ ଶୁଣ ···(ପଢ଼ିଲା) "ଥରେ ଗୋଟିଏ ଗୁରପୋକ ଗୋଟିଏ ଜାହାଜରେ ଇଂଲଣ୍ ପ୍ରଣାଳୀ ପାର ହୋଇ ଫ୍ରାନ୍‌ସ ଉପକୂଳରୁ ଇଂଲଣ୍ଡ ଯାଉଥିଲା । ଜଣେ ପ୍ରଥମ ଶ୍ରେଣୀ ଯାତ୍ରୀ ତାକୁ ଦେଖି ଧରିବାକୁ ଚେଷ୍ଟା କଲେ କିନ୍ତୁ ଧରିପାରିଲେ ନାହିଁ । ତା'ପରେ ଜାହାଜରେ ଜଣେ କର୍ମଚାରୀଙ୍କ ବିଛଣା ତଳେ ଗୁରପୋକଟି ଦେଖାଦେଲା । ସେ ମଧ୍ୟ ତାକୁ ଧରିବାକୁ ଯାଇ ବିଫଳ ହେଲେ । ଜାହାଜରେ ଗୁରପୋକ ! ! ଏଥିପାଇଁ ସାରା ଜାହାଜରେ ଚହଳ ପଡ଼ିଗଲା । କାପ୍‌ଟେନ୍‌ଙ୍କ କାନକୁ କଥା ଗଲା । କାପ୍‌ଟେନ୍ ଗର୍ଜିଉଠି କହିଲେ—କମାଣ ବସେଇ ସାରା ଜାହାଜକୁ ପଛେ ଉଡ଼େଇ ଦେବି, ହେଲେ ଏ ଗୁରପୋକକୁ ମୁଁ ଇଂଲଣ୍ଡ ଉପକୂଳରେ ପହଞ୍ଚାଇ ଦେବିନି ।"

ଭୋଳା—ସାବାସ୍ । କାପ୍‌ଟେନ ହବାଭଳି ବୁଦ୍ଧିବିଦ୍ୟା ଲୋକଟାର ଅଛି ଏକା । ସାରା ଇଂଲଣ୍ଡକୁ ଗୁରପୋକ ଦାଉରୁ ରକ୍ଷା କରିବାକୁ ହେଲେ ଗୋଟାଏ ଜାହାଜ ସମେତ କେତେ ଶହ ଯାତ୍ରୀଙ୍କୁ ତୋପ ମୁହଁରେ ଉଡ଼େଇଦେବା ଆଦୌ ଦୋଷାବହ ନୁହେଁ । କିନ୍ତୁ, ସେଥିପାଇଁ ସେମିତି ମନର ଦମ୍ଭ ଆଉ ସାହସ ଦରକାର । ହଁ, ତା'ପରେ କ'ଣ ହେଲା ?···

ଜେମା—ବହୁଲୋକ ଲାଗିପଡ଼ିଲେ—ବହୁ ଆଲୋକ ଜଳିଲା—ଜାହାଜର ମାସ୍ତୁଲଠାରୁ ପଞ୍ଚତନ ଯାଏ ଖୋଜା ଚାଲିଲା—ଅର୍ଦ୍ଧ ବାର୍‌ଘଣ୍ଟା କାଳ ଜାହାଜ ଲଙ୍ଗର ପକେଇ ଅଚଳ ହୋଇ ରହିଲା । ସବୁ କାମଦାମ ବନ୍ଦ—କିନ୍ତୁ···

ଭୋଳା ଗୁବରପୋକ ମିଳିଲା ନାହିଁ ?

ଜେମା—ନା ମିଳିଲା ନାହିଁ ।

ଭୋଳା—ସେଇଠୁ ?

ଜେମା—ଗୁଡ଼ୁମ··ଗୁଡ଼ୁମ୍—ଗୁଡ଼ୁମ୍ ! ! କମାଣ ଗର୍ଜି ଉଠିଲା । ···ଜାହାଜ ସଙ୍ଗେ ସଙ୍ଗେ ଜଳମଗ୍ନ, ଯାତ୍ରୀ ସମସ୍ତେ ଛିନ୍‌ଛତର ହୋଇ ସମୁଦ୍ରରେ ଭାସିଲେ—

ଭୋଳା—ଆଉ ସେଇ ସଙ୍ଗେ ସଙ୍ଗେ ଗୁବରପୋକଟା ବି ଧ୍ୱଂସ ପାଇଗଲା । ଆଚ୍ଛା ମା, ତଥ୍ୟ ତୁ ପାଇଲୁ କୋଉଠୁ ? ଏଇଟା କୋଉ ଶତାବ୍ଦୀର କଥା ?

ଜେମା—ଶତାବ୍ଦୀ ?

ଭୋଳା—ହଁ, ଶତାବ୍ଦୀଟା ନ ଜାଣିଲେ ଗୁବରପୋକ ଦଳ ଇଂଲଣ୍ଡରୁ ଆମ ଦେଶକୁ ଆସିଲେ କି ଆମ ଦେଶରୁ ଇଂଲଣ୍ଡକୁ ଗଲେ ସେ କଥା ଜାଣିବା କେମିତି ?

ଜେମା—ହେଲେ ବାପା, ସେ ଗୁବରପୋକଟା କ'ଣ ମଲା କି ?

ଭୋଳା—ଆଉ ?

ଜେମା—ତୋପ ମାଡ଼ରେ ଖଣ୍ଡେ ଛୋଟ କାଠପଟା ଉଡ଼ିଯାଇ ଇଂଲଣ୍ଡ ଭୂଇଁରେ ପଡ଼ିଲା—ଆଉ ସେଇ କାଠ ଖଣ୍ଡକରେ ଲାଗି ରହିଥିଲା ସେଇ ମହାନ୍ ଗୁବରପୋକ ।···ଏକାବେଳକେ ଜୀଅନ୍ତା—ରକ୍ତ ପିଇବାକୁ ତିଆର୍ !

ଭୋଳା—ଇଏ ଅସମ୍ଭବ କଥା । ଏତେ ବଡ଼ ଜାହାଜଟା ଭାଙ୍ଗି ସମୁଦ୍ରରେ ପଡ଼ ରହିଲ—ଆଉ ସାମାନ୍ୟ ଘୁରପୋକଟା ଯାଇ ନିରାପଦରେ ଇଂଲଣ୍ଡରେ ପହୁଞ୍ଚିଲ ! !

ଜେମା— କ'ଣ ହେଲ ବାପା ! ଘୁରପୋକ ପୁଣି ସାମାନ୍ୟ ?

ଭୋଳା—ନା-ନା—ଘୁରପୋକ ସାମାନ୍ୟ ଜୀବ ନୁହେଁ ଯେ···ହେଲେ ଏ ଅବସ୍ଥାରେ ଘୁରପୋକଟା ଯାଇ ଇଂଲଣ୍ଡରେ ପହୁଞ୍ଚିବା ଗୋଟାଏ ମନଗଢ଼ା ଗପ ।

ଜେମା— କାନକୁ ଶୁଣିବାକୁ ଭଲ ଲାଗୁଚ କି ନାହିଁ କହିଲ ?

ଭୋଳା—ଓଃ ! କାନକୁ ଖୁବ୍ ଭଲ ଶୁଣାଯାଉଚ । ପିଲାଳିଆ ଗପ ହିସାବରେ ମନକୁ ବି ଖୁବ୍ ପାଉଚ । ଯା ବୋଲି ଏ ଅସମ୍ଭବ କଥାଟା ସମ୍ଭବ ହେବ କିପରି ?

ଜେମା—ତେମେ କଣ ଭାବୁଚ ବାପା, ଏଇଟା ସତ କଥା ?

ଭୋଳା - ଆଉ ?

ଜେମା—ଫୁଃ (ହସିଉଠି), ମୁଁ ପରା ଏଇନେ ବସି ଏଇ ଗପଟା ଲେଖୁଥିଲି ।

ଭୋଳା—ଓ···ତମର ତା' ହେଲେ ବସି ଗପ ଲେଖା ହଉଥିଲ ?

ଜେମ—ଠିକ୍ ଗପ ନୁହେଁ ମ ବାପା, ପଢ଼ା ? ବଦ ପଢ଼ା ଦେଇଥିଲେ ଯେ ନିଜର ଉଦ୍ଭଟ କଳ୍ପନା ଶକ୍ତି ଖଟେଇ ନିଜ ବନ୍ଧୁ ପାଖକୁ ଖଣ୍ଡିଏ ଚିଠି ଲେଖ ।

ଭୋଳା—ତୁ ଏଇ ଚିଠି ଲେଖିଚୁ ?

ଜେମା—ଏଇନେ ତ ଗୃହଆଡ଼େ ଘୁରପୋକ ପ୍ରବଳ ହେଇଚନ୍ତି । ମୁଁ ଭାବିଲି ଯେ ସେଇ ଘୁରପୋକ ଉପରେ ଗୋଟାଏ ଅଦ୍ଭୁତ ଚିଠି ଲେଖିବି । ଲେଖିଲି··ସତ କହିଲ ବାପା, ଲେଖାଟା ଭଲ ହେଇନ ? (ଭୋଳାନାଥ ବିରକ୍ତ ହୋଇ ଉଠିଲେଣି)

ଭୋଳା—ଭଲ ହେଉଚ—ଖରି ଭଲ ହେଉଚ !! ହୁଁ ! ଗୁରପୋକ ଦାଉରୁ ମଣିଷ ଘରଦ୍ୱାର ଛାଡ଼ି ଯିବାକୁ ବସିଲା ବେଳେ ଯାର ଗୁରପୋକ ଉପରେ ଉଦ୍ଭଟ ଗପ ଲେଖା ହଉଚ !! ବାବା କହୁଥିଲେ ବୋଲିତ ସାତ ନ'ଟା ବେଳେ ବସି ପଢ଼ା ହଉଥିଲୁ—ଆଉ ମୁଁ ଯାହା କହୁଥିଲି ?

ଜେମା—କ'ଣ କହୁଥିଲ ବାପା ?

ଭୋଳା—ସେ କଥା ମନେ ନାହିଁ ତ ?

ଜେମା—ନାଇଁ ବାପା, ମୋର ତ କିଛି ମନେ ପଡ଼ୁନି ।

ଭୋଳା—ମୁଁ ତା' ହେଲେ ଏଇନେ ତୋତେ ଡାକିଲି କାହିଁକି ? ···ତୁ ମୋ ପାଖକୁ ଆସିଲୁ କାହିଁକି ?

ଜେମା—ମୁଁ କହିଲିକି, ମୋ ପଢ଼ାକଥା ବୁଝିବାପାଇଁ ତମେ ଡାକିଚ । ସେଇଥିପାଇଁ ମୋ ଲେଖାଟା ନେଇ ମୁଁ ଏଠିକି ଆସିଲି ।···ଆଉ ତମେ ତ ମନ ଧ୍ୟାନ ଦେଇ ମୋ ଲେଖା ଶୁଣିଲ ।

ଭୋଳା—ଏ ଗୁରପୋକ ଦାଉରେ ମଣିଷ ଏକାବେଳକେ ପାଗଳ ହୋଇ ଗଲାଣି । ସେଥିପାଇଁ ଗୁରପୋକ ସମ୍ବନ୍ଧରେ ତୋ ମୁହଁରୁ ଅପୂର୍ବ ତଥ୍ୟ ଶୁଣି ମୁଁ ମୋ କାମକଥା ଭୁଲି ଯାଇଥିଲି ।

ଜେମା—କି କାମ ?

ଭୋଳା—ଆଜି ସଞ୍ଜବେଳେ ମୁଁ ତୋତେ କହି ନ ଥିଲି ଯେ ସାତ ନ'ଟା ବେଳକୁ ଗାମାକ୍ସିନ୍ ପାଣି ଗୋଳିବୁ ।

ଜେମା—କହିଥିଲ ?

ଭୋଳା—ନିଶ୍ଚୟ କହିଥିଲି ।

କେମା—ମୁଁ ତା' ହେଲେ ବାପା ଭୁଲି ଯାଇଚ ।···ହେଲେ ବାପା, ଆଜ ସକାଳେ ପର୍ ଖଟ, ଗ୍ଲେକ, ଆଲମିର୍ ସବୁ ଡହଡହ ଗରମ ପାଣିରେ ଧୂଆ ହେଇ ଗାମାକ୍ସିନ୍ ପିଚକାରୀ ମର୍ ହେଇଥିଲା — ପୁଣି ଦଶବାରଦିନ ପରେ ଗରମ ପାଣି ଆଉ ଗାମାକ୍ସିନ୍ ପାଣି···

ଭୋଲା—ବନ୍ଧୁ ଚନ୍ଦ୍ରାକର ଆଜ ସନ୍ଧ୍ୟା ବେଳେ ସେ ସ୍କିମ୍ ମୁଁ ବଦଳେଇ ଦେଇଚ । ଏଣିକ ଦଶ ବାର ଦିନ ନୁହେଁ—ଦଶ ବାର ଘଣ୍ଟାରେ ଗରମ ପାଣି ଆଉ ଗାମାକ୍ସିନ୍ ପାଣିର ଅଭିଯାନ ଚାଲିବ ।

କେମା—ଦଶ ବାର ଘଣ୍ଟାରେ ?···ମାନେ ସକାଳ ନ'ଟା ବେଳେ ଥରେ ତ ରାତି ନ'ଟା ବେଳେ ଥରେ ?

ଭୋଲା—ହଁ ।

କେମା—ଏ···ମା !!

ଭୋଲା—ଚୁପ୍ । ସ୍କୁଲରେ ତ ପାଠ ' ପଢ଼ାପଢ଼ିର ନାଁ ଗନ୍ଧ ନାହିଁ··· ଖାଲି ଏଇଆ ଶିଖା ହଉଚ—"ଏ···ମା-" ! ଯା' ଗାମାକ୍ସିନ୍ ' ପାଣି ତିଆରି କର ।

କେମା—କେତେ କରିବ ? ବାଲ୍ଟିଏ ?

ଭୋଲା—ହଁ, ପୂର୍ବ ବାଲ୍ଟିଏ । ଯା ଜଲ୍ଦି । ···ହଁ ଶୁଣ, ଠିକ୍ ଭାଗ ମାପ କରି ଗୋଳିବୁ···ଯେମିତି ତୋତେ ଶିଖେଇ ଦେଇଥିଲି— ବୁଝିଲୁ ?

କେମା—ହଁ । ·········(କେମାର ପ୍ରସ୍ଥାନ । ଇତିମଧ୍ୟରେ ଭୋଲାନାଥଙ୍କ ଅଜ୍ଞାତରେ ସୀତା ଆସି ଖଟଉପରେ ଶୋଇଲେଣି )

ଭୋଲା—ଇଏ ପୁଣି କୁଆଡ଼େ ଗଲେ ? (ଡାକିଲେ) କୁଆଡ଼େ ଗଲକି ? ଆରେ ଶୁଣୁଚ ନା ନାଇଁ ?······କୁଆଡ଼େ ଗଲ ?

ସୀତା—କାହିଁକି ଡାକୁଚ ? ମୁଁ ଏଇଠି ଶୋଇଚ ।
ଭୋଳା—ଆରେ, କେତେବେଳେ ଏ ଖଟ ଉପରେ ଲୁଚି ହୋଇ ଆସି ଶୋଇଲଣି ? ମୁଁ ଏଇଠି ଅଛୁ ଜାଣି ପାରିନ ।
ସୀତା—ମୋ ଇଚ୍ଛା ହେଲା ମୁଁ ଶୋଇଲି । ତମକୁ ଏବେ ଜଣେଇ ଥା'ନ୍ତି କାହିଁକି ?
ଭୋଳା—କି ଆଶ୍ଚର୍ଯ୍ୟ କଥା । ରାତି ନ'ଟା ନ ବାଜୁଣୁ ତମେ ଏବେ ଶୋଇବ କାହିଁକି ? ଉଠ ।
ସୀତା—ନା, ମୁଁ ଉଠିବି ନାହିଁ ।
ଭୋଳା—ପିଲାଙ୍କ ପରି ଏ ସଞ୍ଜବେଳଟାରେ ଶୋଇ, କହୁଚ ପୁଣି ଉଠିବ ନାହିଁ ?
ସୀତା—ଗଲା ଥର ବଡ଼ା-କାଠ ଶ' କେତେରେ କଣା ହୋଇଥିଲା କହିଲ ?
ଭୋଳା—ଏଁ ।
ସୀତା—ଏଥର ନୁହେଁ ।··· ଏଥରତ ଏଇ ଦଅରଦିନ କଣା ହୋଇଚ ।···ଯୁଆ' ଆଗଥର ଯୋଉ କାଠ କଣା ହୋଇଥିଲା—
ଭୋଳା—ବୁଝିଲି ।···ଶ' ଘରିଟଙ୍କା ଘରଣା—
ସୀତା—ସେଇଆ । ମାସକ ତଳେ ଶ' ଗୃରିଟଙ୍କା ଗୃରଣାରେ କଣା ହୋଇଥିଲା—ଏଇ ପଅରଦିନ ଶ' ପାଞ୍ଚଟଙ୍କା ଗୃରଣାରେ କଣା ହୋଇଚ ।
ଭୋଳା—ଜାଳେଣିକାଠ ଦର ଯେତେବେଳେ କଣ୍ଟ୍ରୋଲ କରା ହୋଇନ—ତମର ଏ ଦୁଃଖ ତମେ ଜଣେଇବ କାହାକୁ ? କିଏ ତମ ଦୁଃଖ ବୁଝିବ ?
ସୀତା—ଆଉ କେହି ନ ବୁଝନ୍ତୁ ତମେ ତ ବୁଝିବା କଥା ?
ଭୋଳା—ନିଃସନ୍ଦେହରେ । ମୁଣ୍ଡଖାଲ ଭୁଣ୍ଡିରେ ମାରି ଟଙ୍କାଟା

ଯେତେବେଳେ ମୁଁ ରୋଜଗାର କରୁଚି, ଖର୍ଚ୍ଚ ହବାର ଦୁଃଖଟା ପୁଣି ନ ବୁଝିବି କେମିତି ? କିନ୍ତୁ ମୁଁ ତମକୁ ଯୋଉଥିପାଇଁ ଖୋଜୁଥିଲି ତା' ସହିତ ଏ ଜାଳେଣି କାଠର ଦର ବଢ଼ି-ବାରେତ କୌଣସି ସମ୍ପର୍କ ନାହିଁ ।

ସୀତା—ଅଛି ।

ଭୋଳା—ନା ସୀତା, ଆଦୌ ନାହିଁ ।···ମୁଁ ତମକୁ କାହିଁକି ଖୋଜୁଥିଲି ଜାଣ ?

ସୀତା—ଜାଣିଚି । ଗ୍ଭରପୋକଙ୍କୁ ସାଗର ପାରି କରିବାପାଇଁ କେମାକୁ ଗାମାକ୍ସିନ୍ ପାଣି ଆଣିବାକୁ ବରାଦ ଦେଇଚ, ମୁଁ ଆଉ ଜାଣିନି ?

ଭୋଳା—ଜାଣିଚ ଯଦି, ସ୍ୱା' ସହିତ ତା'ର ସମ୍ବନ୍ଧ ଅଛି ବୋଲି କହୁଚ କେମିତି ?

ସୀତା—କହିବି ନାଇଁ ? ଜାଣୁଚ କାଠ ଶହ ପାଞ୍ଚଟଙ୍କା ଗୁରଣା ହେଇଚି । କୋଉ ହିସାବରେ ତମ ଗୁଣମଣି ନାରଣକୁ ବୁଦ୍ଧି ବତେଇ ଦେଲ ; ସେ ପନ୍ଦର କି କୋଡ଼ିଏ ବଡ଼ା କାଠ ଜାଳି ଗୋଟାଏ ହଣ୍ଡାରେ ହଣ୍ଡାଏ ପାଣି ଫୁଟେଇଲାଣି !!

ଭୋଳା—ହେ ଭଗବାନ୍ ! ସାମାନ୍ୟ କେଇ ବଡ଼ା କାଠ ଜଳିଗଲା ବୋଲି ତମେ ଦୁଃଖ କରୁଚ ? କାଠ ଯେଉଁଥିପାଇଁ ଜଳିଲା, ତାର ଗୁରୁତ୍ୱ କ'ଣ ତମେ ବୁଝି ପାରୁନ ?

ସୀତା—ହଁ-ହଁ-ବୁଝିଚି । ତମ ବାର ଘଣ୍ଟିଆ ସ୍କିମ୍ କଥା ମୁଁ ବୁଝିଚି ।

ଭୋଳା—ତମେ ପିଲା ଦିନରେ ତମ ପଢ଼ା ବହିରୁ ପଢ଼ିଥିବ ତ ସୀତା—ସେଇ ବିଖ୍ୟାତ ବୈଜ୍ଞାନିକ—ଯିଏ ଗୋଟାଏ ନୂଆ ରଙ୍ଗ ଆବିଷ୍କାର କରିବାକୁ ଯାଇ ନିଜର ସବୁ କାଠ ଜାଳି ଜାଳି ଶେଷକୁ ଘରର ଚୌକି ଟେବୁଲ ଖଟ ପର୍ଯ୍ୟନ୍ତ ହାଣି ଜାଳିଥିଲେ !

ସୀତା—ସିଏ ତ ଜାଳି ସାରା ପୃଥିବୀରେ ନାଁ କଲେ, ଆଉ ଲକ୍ଷ ଲକ୍ଷ ଟଙ୍କା କମେଇଲେ । ତୁମେ ଜାଳୁଚ କାଇଁକି ?

ଭୋଳା—ତମେ ତ ଜାଣ ସୀତା, ମୁଁ ପ୍ରତିଜ୍ଞା କରିଚି, ଏ ସହରରୁ ଘୁରିପୋକ ବଂଶ ଧ୍ୱଂସ କରିବି ; କିନ୍ତୁ କେବଳ ଅଫିସ୍‌ରେ ବସି ପ୍ଲାନ୍ କଲେ କି ଖବରି କାଗଜରେ ନୋଟିସ୍ ଛପେଇଲେ କାମ ହବ ନାହିଁ । ସେଥିପାଇଁ ହାତାହାତି ପରିଶ୍ରମ ଦରକାର । ପ୍ରଥମେ ମୋ ନିଜ ଘରେ ମୁଁ ଯୋଉ ଆଦର୍ଶ ସୃଷ୍ଟି କରିବି, ତା'ରି ଫଳରେ ଦେଖିବ—

ସୀତା—(ବ୍ୟଙ୍ଗକରି) ଏ ସାରା ସହରରେ ଆଉ ଗୋଟିଏ ବୋଲି ଘୁରିପୋକ ରହିବେ ନାଇଁ !!!······ଏମିତିକା ନିର୍ଲଜ କଥା ମୁଁ କୋଉଠି ଶୁଣିନି । ସମସ୍ତେତ ଡାକ୍ତରୀ ପାଶ୍ କରି ଏଠି ସେଠି ଡାକ୍ତର ହେଲେ – ଦରମାକୁ ଦରମା ପାଇଲେ ପୁଣି ରୋଗୀ ଦେଖି ବାହାରୁ ଶ' ଶ' ଟଙ୍କା ରୋଜଗାର କଲେ । ତମେ ଡାକ୍ତରୀ ପାଶ୍ କରି କାଇଁକି ଏ ହେଲ୍‌ଥ ଡିପାର୍ଟ-ମେଣ୍ଟରେ ପଶିଥିଲ ? ଜୀବନଟା ଯାକ ତ ମଶା ମାଛି ଘୁରି-ପୋକଙ୍କ କଥା ବୁଝି ବୁଝି ଦିନ ଗଲା—ତା'ଉପରକୁ ପୁଣି ଦରମା ଗଣ୍ଡାକ ଛଡ଼ା ବାହାର ପଇସା ପାହୁଲାଟାଏ ନାହିଁ ।

ଭୋଳା—ବୁଝିଲ, ସେମାନେ ଡାକ୍ତର ହେଇଚନ୍ତି ରୋଗୀର ରୋଗ ଦେଖିବା ପାଇଁ । ଆମେ ହେଲ୍‌ଥ ସର୍ଭିସ୍-ବାଲା ଯାହା କରୁଛୁ, ସେଥିରେ କାହାରି ଆଦୌ ରୋଗ ହବଇ ନାହିଁ । ଯଦି ଆମ କାମରେ ଆମେ ସଫଳ ହବୁ ନା, ତେବେ ସେମାନେ ଏକା-ବେଳେକେ ବେକାର ହେଇ ବସିବେ !

ସୀତା—ଯାଉଥିଲି ମୁଁ ଏ ଅଲଣା ପିଲ୍ଲିଆ କଥା ଶୁଣିବାକୁ !

ଭୋଳା—ନ ଶୁଣିଲେ ନାଇଁ—ତମେ ଉଠିଲ ଏ ଖଟରୁ ।

ସୀତା—ଦେଖୁଚ ପରା ଶୋଇଚ—ଆଉ ଉଠିବ କାହିଁକ ?

ଭୋଳା—ତମେ ପରା ଦେଖୁଚ—ତେଣେ ଗାମାକ୍ସିନ୍ ଗୋଳା ହେଲାଣି ଆଉ ହଣ୍ଡାରେ ପାଣି ଗରମ ହେଲାଣି—ତମେ ଏଠି ଶୋଇ ରହିବ କେମିତି ?

ସୀତା–କ'ଣ ଏ ଖଟରେ ପଡ଼ିବ ?

ଭୋଳା–ହଁ । ଏ ଖଟ, ସେ ଖଟ, ସେ ଖଟ, ଚୌକି, ଟେବୁଲ, କବାଟ, ଚୌକାଠ ସବୁଠି ପଡ଼ିବ—ଉଠ ।

ସୀତା—ତମେ ତମର ଯୋଉଠି ପକେଇବ ପକଉଥା । ଏ ଖଟରେ ଆଉ ପଡ଼ିବ ନାହିଁ ।

ଭୋଳା—କ ଆଶ୍ଚର୍ଯ୍ୟ କଥା ? ଏଇଟା ଆମର ଶୋଇବା ଖଟ—

ସୀତା–ଆଜି ସକାଳେ ଏଥିରେ ତିନ ବାଲ୍‌ଟି ଗରମ ପାଣି ଢାଳିଚ ଯେ, ଏ ଯାଏଁ ହେଇଚି ଖଟରୁ ଓଦା ଶୁଖିନ । ଗାମାକ୍ସେନ୍ ଗନ୍ଧରେ ନାକ ରୁନ୍ଧି ହେଇ ଯାଉଚ । ଏଇନେ ପୁଣି ରାତି ନ'ଟା ବେଳେ ପକେଇଲେ ମଣିଷ ଆଜି ରାତିରେ ଶୋଇବ କେମିତି ?

ଭୋଳା—ଶୋଇବ ତ ରାତି ବାରଟା ବେଳେ—ଏ ନ'ଟା ବେଳୁ ସେ ଚିନ୍ତା ତମକୁ ଲାଗିଚ କାହିଁକ ?

ସୀତା—ଏ ଖଟରେ ଆଉ ଛାରପୋକ ନାହାନ୍ତି ।

ଭୋଳା—କ'ଣ କହିଲ ? ଏ ଖଟରେ ଆଉ ଛାରପୋକ ନାହାନ୍ତି ?

ସୀତା—କାହାନ୍ତି ? ଯେତେବେଳୁ ମୁଁ ଏଠି ଶୋଇଲଣି—ଆଉ ଗୋଟାଏ ବି'ତ କାମୁଡ଼ି ନାଇଁ ।··· ଆଉ ଏଥିରେ ଛାରପୋକ ନାହାନ୍ତି ।

ଭୋଳା—ଖାଲି ନାହାନ୍ତି କହିଲେ ଚଳିବ ନାଇଁ । ଭବିଷ୍ୟତରେ—ମାନେ ନିକଟ ଭବିଷ୍ୟତରେ ଆଉ ଯେମିତି ନ ହବ, ସେ ବ୍ୟବସ୍ଥା କରାଯାଉଛି ।···ବୁଝିଲ ··ଉଠ ।

( ନାରଣ ଆସିଲା )

ନାରଣ—ପାଣି ହେଲାଣି ବାବୁ ।
ଭୋଳା—ଖୁବ୍ ଭଲ ଭାବରେ ଗରମ କରିଚୁ ତ ?
ନାରଣ—ଦେଖିବେ ଆସୁ ନାହାନ୍ତି ଆଜ୍ଞା, ଏକାବେଳେକେ ଗବ୍ ଗବ୍ ହୋଇ ଫୁଟୁଚି ।
ଭୋଳା—ଆଚ୍ଛା, ଯା—ଏଠିକି ନେଇ ଆ ।
ନାରଣ—ଆଜ୍ଞା ହାଣ୍ଡାଏ ପାଣି—ମୁଁ ଏକା ଆଣିବି କେମିତି ?
ଭୋଳା—ଓଃ । ...ବାଲ୍ଟି ବାଲ୍ଟି କରି ଆଣ ଯା' ।
ନାରଣ—ହଉ ଆଜ୍ଞା, ଆଣୁଚି । ଆଗେ ଏଇ ଖଟରେ...ପଡ଼ିବ ଟି ?
ଭୋଳା—ହଁ ।
ସୀତା—ନା ।
ନାରଣ—ଏଁ ! କ'ଣ କହିଲ ମା ? ତମ ଶୋଇବା ଖଟ ଉପରେ ପଡ଼ିବ ନାହିଁ ?
ସୀତା—କହିଲି ପରା—ନା !
ନାରଣ—କାହିଁକି ମା ?
ସୀତା—ତମକୁ ଜେରା କରିବାକୁ କିଏ କହୁଚି ? ତମେ ଯାଅ—ତମ କାମ କର ।
ନାରଣ—କାମତ ଏଇଠି—ଆଉ ଯିବି କୁଆଡ଼େ ମା ?
ସୀତା—କାହିଁକି ଏଠି ବକ୍‌ବକ୍ ହଉଚ ? ଯାଅ କହୁଚି ।
ନାରଣ—(ଅସହାୟ ହୋଇ) ବାବୁ !
ଭୋଳା—କିଚ୍ଛି ଚିନ୍ତା ନାହିଁ । ଖଟ ପଛକୁ ଥାଉ । ଆଗେ ଏଇ କବାଟ ଚୌକାଠରୁ ଆରମ୍ଭ କରିବା ।
ନାରଣ—ହଁ ଆଜ୍ଞା । ଏ କବାଟ ଚୌକାଠ ଫାଙ୍କରେ ପରା ସିଏଁ ହୋଇ ଯାଇଚନ୍ତି ! ଯେମିତି ଅନ୍ଧାର ହବ ଶ'ଶ—ହଜାର୍ ହଜାର୍ ସଙ୍ଖ୍ୟାରେ ଓହ୍ଲେଇବେ !

ସୀତା ତମକୁ ସାକ୍ଷୀ ରଖି ଓ୍ୱାଉଥିଲେ ! ! ମିଛୁଆ—ବାହାପିଆ କୋଉଠିକାର !

ନାରଣ—ଶୁଣୁଚନ୍ତି ଆଜ୍ଞା—ମୁଁ ମିଛ କହୁଚି ?

ଭୋଲା—କ'ଣ ତମେ ସେଥିରୁ ପାଇବ ? ଶୁଣ, ମୁଁ ଯାହା କହୁଚି । ଆଜ ସକାଳେ ଆମର ଯୋଉ ଆରେଞ୍ଜମେଣ୍ଟ୍ ହେଇଥିଲା, ସେଇ ଅନୁସାରେ କାମ ହବ ।

ନାରଣ—ଆଜ୍ଞା ।

ଭୋଲା—ଆଗେ ଗରମ ପାଣି ଢଳାହବ—ତା'ପରେ ଗାମାକ୍ସିନ୍ ପାଣି ପିଚକାରି ମରାଯିବ । ତମେ ଯାଅ—ପାଣି ଆଣ—ଆଉ ପିଚକାରିଟା ଆଣ ।

ନାରଣ—ହଉ ଆଜ୍ଞା ଆଣୁଚି । (ପ୍ରସ୍ଥାନ)

ଭୋଲା—ଜେମା ! ଗାମାକ୍ସିନ୍ ଗୋଳା ହେଲା ?

ଜେମା—(ଦୂରରୁ) ହଁ ବାପା—ନେବ ?

ଭୋଲା—ହଁ, ଆଣ । (ସୀତାଙ୍କ ପାଖକୁ ଯାଇ) ଯାହାର ହବାର ହେଲାଣି ସୀତା—ବର୍ତ୍ତମାନ ଟିକିଏ ଉଠ—ଆମକୁ ସାହାଯ୍ୟ କର ।

ସୀତା—ତମେ ତ ଗରମ ପାଣି ଢାଳିବ—ନାରଣ ପିଚକାରି ମାରିବ । ମୁଁ ଆଉ ଅଧିକଟା କ'ଣ କରିବି ?

ଭୋଲା—ଉଠିବ ନାଇଁ ତା'ହେଲେ ?

ସୀତା—ନା । ମୁଁ ତ ଜାଣୁଚି ଏ ଖଟରେ ଆଉ ଘୁରପୋକ ନାହାନ୍ତି— —ମୁଁ ଉଠିବି କାହିଁକି ?

ଭୋଲା—(ରାଗି) ଆଚ୍ଛା କେମିତି ଉଠିବ ନାଇଁ ଦେଖିବା !!

(ଜେମା ଓ ନାରଣ ଆସିଲେ)

ନାରଣ—ଏଇ ଆଜ୍ଞା, ପାଣି ଆସିଲା ।

ଜେମା—ଏଇ ନଅ ବାଘା, ଗାମାକ୍‌ସିନ୍ ପାଣି ।

ଶ୍ୱେଲା—ଆଚ୍ଛା, ଏଥର କାମ ଆରମ୍ଭ କରିବା । ମୁଁ ଗରମ ପାଣି ଢାଳିବି—ନାରଣ, ତମେ ପିଚକାରି ମାରିବ ।

ନାରଣ—ଆଜ୍ଞା ।

ଶ୍ୱେଲା—ଆଉ ଜେମା, ତୁ ଆମ ଦୁ'ଜଣଙ୍କୁ ସାହାଯ୍ୟ କରିବୁ ।

ଜେମା—ହଁ ।

( ସମସ୍ତେ ଲାଗି ପଡ଼ିଲେ—କାମ ଆରମ୍ଭ ହେଲା )

—o—

## ଦ୍ୱିତୀୟ ଦୃଶ୍ୟ

( ଏଇ ଘରର ସଦର ଦରଜା । ଭିତରୁ ଶିକୁଳି ଦିଆହୋଇଚି । ପୂର୍ବବର୍ତ୍ତୀ ଦୃଶ୍ୟ ଓ ଏ ଦୃଶ୍ୟର ଘଟଣା ପ୍ରାୟ ଏକ ସମୟରେ ଘଟିଚି ।... ବାହାରୁ କାଶୀନାଥଙ୍କ ସ୍ୱର ଶୁଣାଗଲା )

କାଶୀ—ଏଇଠି—ଏଇଠି—ଏଇ ଦୁଆର ସାମନାରେ ରିକ୍‌ସା ରଖ । ...ହଁ, ଦେ' ବାବା, ଏଥର ଜିନିଷ ପତ୍ର ଦି'ଖଣ୍ଡ ଏ ବାରଣ୍ଡାକୁ ଉଠେଇ ଦେ' । ...ଉଁହୁଁ ହୁଁ—ଆଗେ ସୁଟ୍‌କେଶଟା ରଖି, ତା' ଉପରେ ବିଛଣାଟା ରଖ ।...ହଁ—ନେ, ତୋ' ପଇସା ନେ' (ଟିକିଏ ରହି) ଏଁ ! ଏଠି ଗୋଟାଏ କ'ଣ ନୋଟିସ୍ ମରା ହେଲାଣି ! ଚିଙ୍କିଲଇଚଟା କ'ଣ ହେଲା ? .. ହଁ, କ'ଣ ଲେଖା ହୋଇଚି ଟି ? (ପଢ଼ିଲେ) "ଆଗନ୍ତୁକମାନଙ୍କ ପ୍ରତି । ଆପଣ ଯଦି ଚେଞ୍ଜ କିମ୍ବା ବସ୍‌ରେ ଆସିଥାନ୍ତି, ତେବେ ଦୟାକରି ଆପଣଙ୍କ ଜିନିଷପତ୍ର ଏଇଠି ରଖି ଅପେକ୍ଷା କରିବେ । ଉପଯୁକ୍ତ ତଦାରଖ୍ ହୋଇ ସାରିଲା ପରେ ଜିନିଷ ପତ୍ର ଭିତରକୁ ଯିବାର ଅନୁମତି ମିଳିବ ।" ...ଯ୍ୟା ମାନେ ? ଭୋଳାନାଥ ପାଗଳ ହୋଇଗଲାଣି ନା ? ସେ କଣ ଭାବିଚି ଆମେ, ତା'ର ବନ୍ଧୁବାନ୍ଧବମାନେ, ଗୁପ୍ତ ଅଫିମ ଗଞ୍ଜେଇ କାରବାର କରୁଚୁ ଯେ, ଆମ ଜିନିଷ ପତ୍ର ସବୁ ଖାନ୍‌ତଲାସି ହବ !! ଭୋଳାନାଥର ଇଏ କି ବୁଦ୍ଧି—ଇଏ କି ଗୋଟାଏ କାମ ସେ କରିଚି ! ନୋଟିସ୍ ଲେଖାହୋଇ ଏକାବେଳେ ସଦର ଦରଜାରେ ମରା ହୋଇଚି ! (ଡାକିଲେ)

କାଶୀ—ନାରଣ—ନାରଣ !

(ଠିକ୍ ଏତିକବେଳେ ନାରଣ ଦରଜା ଖୋଲି ପିଚକାରି ମାରିବା ଆରମ୍ଭ କରିଛ—ଫଳରେ ଗାମାକ୍ସିନ୍ ପାଣିର କିଛି ଅଂଶ ପଡ଼ିଛ କାଶୀନାଥଙ୍କ ଉପରେ—ସେ ଚିତ୍କାର କରି ଉଠୁଚନ୍ତି )

କାଶୀ—ଆରେ, ଆରେ ! ଏ ଗୁରିକ କ ପାଣି ମୋ’ ଦେହସାରା ହେଇଗଲା ! ଓ-ହୋ-ହୋ ! ମୋ ଆଖି ପୋଡ଼ି ଉଠୁଛ !

(ଚିତ୍କାର ଶୁଣି ସୀତା ଓ ତାଙ୍କ ପଛେ ପଛେ ଭୋଳାନାଥ ଓ ଜେମା ଆସି ପହଞ୍ଚିଲେ । ନାରଣ ଅପରାଧୀଙ୍କ ପରି ଭୁନ ହୋଇ ଠିଆ ହୋଇଛ)

ସୀତା—ଭାଇ, ଭାଇ, କ’ଣ ହେଲା ଭାଇ ?

କାଶୀ—କ’ଣ ହେଲା, ସେ କଥା ଯିଏ ପିଚକାରି ମାରିଛ, ସେଇ ନାରଣକୁ ପଚାର୍ । ନାରଣ ପିଚକାରିରେ କ ଗୁରିଏ ପାଣି ଛୁଡ଼ି ଦେଲା ଯେ, ମୋ ଦେହ ସାରା ଭିଜି, ଆଖି ହାଉ ହାଉ ହେଇ ପୋଡ଼ୁଛ !··· ଓ-ହୋ-ହୋ !

ସୀତା—ତମେ ମଣିଷ ନା କ’ଣ ନାରଣ ? ଭାଇଙ୍କ ଉପରକୁ ଗାମାକ୍ସିନ୍ ପାଣି ପିଚକାରି ମାରୁଚ ! !

କାଶୀ—ଏଁ ! ଏଗୁରିକ ଗାମାକ୍ସିନ ପାଣି ! ! ଛୁରପୋକମରା ଔଷଧ ! ! ! ହଇଓ ଭୋଳାନାଥ; ମୁଁ ଏବେ ମରିବି ନା ବଞ୍ଚିବି ?

ସୀତା—ତମେ ଆସ ଭାଇ, ଆଗେ ଧୋଇ ହେଇ ପଡ଼ିବ ଆସ ।

ଭୋଳା—ହଁ, କାଶୀଭାଇ, ତମେ ଆଗେ ଧୋଇ ହେଇ ପଡ଼ ।

ସୀତା – ତମେ ଭୁନ ହୁଅ ! ଆସ ଭାଇ ଆସ ।

କାଶୀ—ଚାଲ । (ଦୁହିଙ୍କର ପ୍ରସ୍ଥାନ)

ଭୋଳା—ହଇଓ ନାରଣ ! କାଶୀ ଭାଇଙ୍କ ଉପରକୁ ପିଚକାରି ମାରିଲ କେମିତି ?

ନାରଣ—ମୁଁ କଣ ଜାଣିକରି ମାରିଛ ଆଜ୍ଞା ?

ଭୋଳା—କିନ୍ତୁ ଅଜାଣତରେ 'ବା' ମାରିଲ କେମିତି—ମୁଁ ବୁଝି ପାରୁନି !

ନାରଣ—ମୁଁ ଆଜ୍ଞା, ଡରି ପିଚକାରୀ ଧରି କବାଟ ଖୋଲି ମାରିଲି ବେଳକୁ ସେ କବାଟ ଠେଲି ପଶି ଆସିଲେ ।

ଭୋଳା—ନାଁ ତ ! ମୁଁ ଶୁଣିଚି—ସେ ଭିତରକୁ ଆସିବା ଆଗରୁ ତମ ନାଁ ଧରି ଡାକିଚନ୍ତି !

ନାରଣ—ଡାକିଚନ୍ତି ଯେ—ହେଲେ ମୋ ହାତ ସେତେବେଳକୁ ପିଚକାରୀ ଉପରେ ଚାଲିଲାଣି ! ମୁଁ ଆଉ ବନ୍ଦ କରି ପାରୁଚି କେତେବେଳେ ?

ଭୋଳା—ଇଏ ଭରି ଅଡୁଆ କଥା ହୋଇଗଲା !

ନାରଣ—ନୁହେଁ କ'ଣ ଆଜ୍ଞା ! ମା' ଯେମିତି ରାଗିକରି ଅଛନ୍ତି—

ଜେମା—ଏଇ ବାପା, ମାମୁଁଙ୍କ ସୁଟ୍‌କେଶ୍ ବିଛଣା ଏଇ ବାହାରେ ଥୁଆ ହୋଇଚି ।

ନାରଣ—ଘର ଭିତରକୁ ନେଇଯିବି ଆଜ୍ଞା ?

ଭୋଳା—ନା-ନା—ଘର ଭିତରକୁ ନୁହେଁ । ଏଇଠି ଆଣି ରଖ । ଏଇଠି ଆଗେ ଖୋଲି କରି ଦେଖିବାକୁ ହେବ ।

ଜେମା—କ'ଣ ଦେଖିବ ବାପା ? ମାମୁଁ ପିଜୁଳି ଆଣିଚନ୍ତି କି ନାହିଁ ଦେଖିବ ?

ଭୋଳା—ନାଁଲୋ ! ପିଜୁଳି ନୁହେଁ । ଘୁରିପୋକ ଅଛନ୍ତି କି ନାହିଁ ଖୋଲିକରି ଦେଖିବାକୁ ହବ ।

(ନାରଣ ବିଛଣା ପ୍ରଭୃତି ନେଇ ଆସିଲା)

ନାରଣ—ଖୋଲିବି ଆଜ୍ଞା ?

ଭୋଳା—ହଁ ଖୋଲ । (ନାରଣ ବିଛଣା ଖୋଲିବାକୁ ଲାଗିଲା)

—୦—

## ତୃତୀୟ ଦୃଶ୍ୟ

( ଭିତର ଅଗଣା । ସୀତାଙ୍କ ସାହାଯ୍ୟରେ କାଶୀନାଥ ଦେହ ହାତ ଧୋଇ ହେଉଚନ୍ତି । ପରିଧାନ—ଖଣ୍ଡିଏ ଓଦା ଚଉଲିଆ )

ସୀତା—ଆଖି ଭିତରକୁ ଭଲକରି ପାଣିଛିଟା ମାରିଦିଅ ଭାଇ ।

କାଶୀ—ଦେଲିଣି—ଦେଲିଣି ।

ସୀତା - ଆଉ ଆଖି ପୋଡ଼ୁନି ତ ?

କାଶୀ—ନା ।

ସୀତା—ସେଗୁଡ଼ାକ ବିଷ ଔଷଧ - କ'ଣ ହେଇଥା'ନ୍ତା କେଜାଣି ?

କାଶୀ—(ଟିକିଏ ନମ୍ର ସ୍ୱରରେ) ଆଖି ଭିତରେ ସେମିତି ବେଶୀ ପଡ଼ି ନାଇଁମ ! ଟିକିଏ କ'ଣ ଛିଟା ପଡ଼ିଯାଇଥିଲା ।

ସୀତା—ଆଖି ଭାରି ଜୋର୍ ପୋଡ଼ୁଥିଲା ବୋଲି ପାଟି କରି ଉଠିଲ ଯେ !

କାଶୀ—ସେଇଥିରେ ତ ମୋ' ଅବସ୍ଥା କାହେଲ୍ ହେଇଗଲା ! ଏ ଲୁଗା ଜାମା କନ୍ଥା ସବୁ ଯାଇଚି ।

ସୀତା—ସେଗୁଡ଼ାକ ସେଇଠି ପଡ଼ିଥାଉ । ମୁଁ ଧୋଇ ଶୁଖେଇ ଦେବି ।

କାଶୀ—ଯାହା କହନ୍ତି ଇଏ ଗୋଟାଏ ଦୁର୍ଯୋଗ । ଭାବୁଥିଲିଟି କଟକରେ ନ ଓହ୍ଲେଇ ସିଧା ସିଧା ଭୁବନେଶ୍ୱର ବାହାରିଯିବି !

ସୀତା—ତେମେ କ'ଣ ଗାଁରୁ ଆସିଲ ଭାଇ ?

କାଶୀ—ସାତ ଆଠ ଦିନ ତଳେ ଗସ୍ତରେ ଯାଇଥିଲି । ସ୍ୱା' ଭିତରେ ବାହୁଡ଼ା—ମହରମ୍—ଦ' ତିନଦିନ ଛୁଟି ପଡ଼ିଲା । ସେଇ ମୌକାରେ ଟିକେ ଗାଁ ଆଡ଼େ ବୁଲିପଡ଼ି ଆସିଲି । ...ଆଜ

ଏଇ ରାତି ନ'ଟା ବସ୍‌ରେ ଭୁବନେଶ୍ୱର ବାହାରି ଯାଇଥିଲେ ହେଇଥାନ୍ତା । ପୁଣି ଭାବିଲିକ,ଯାଏଁ ରାତିଟା ସୀତା ଘରେ ରହି···

ସୀତା—ଏ କଥା ପୁଣି ତମେ କହୁଚ ଭାଇ ! କଟକରେ ଓହ୍ଲେଇ ମୋ' ଘରକୁ ନ ଆସି ତମେ ସିଧା ଭୁବନେଶ୍ୱର ଯାଇଥା'ନ୍ତ !

କାଶୀ—ସେଇଆ ପରା ! ହେଲେ ଏମିତି ଦୁର୍ଯୋଗ ଯେ ତୋ' ଘରେ ପାଦ ଦଉ ଦଉ ଗାମାକ୍‌ସିନ୍ ମାଡ଼ ! ! ହଁ, ଆରେ ସୀତା, ବାହାର କାନ୍ଥରେ ଭୋଳାନାଥ ଏମିତିକା ଗୋଟାଏ ନୋଟିସ କ'ଣ ମାରିଚ ? ନୋଟିସ୍‌ଟା ପଢ଼ି ପରା ମୁଁ ମୋ' ଟ୍ରଙ୍କ୍ ବିଛଣା ଭିତରକୁ ଆଣିଲି ନାହିଁ ।

ସୀତା—ତମେ ବି ସେମିତିକା ଭାଇ ! ଏଇଟା ସରକାରୀ ଅଫିସ ହେଇଚ ନା କ'ଣ—ନୋଟିସ୍‌ଟା ପଢ଼ି ଡରିଗଲ ?

କାଶୀ—ତୁ ବୁଝିନୁ ! ସେ ଯୋମିତିକା ମନୁଆ ଲୋକ—

ସୀତା—ହଉ, ତମେ ଆଗେ ଭାଇ ସେ ଓଦା ତଉଲିଆଟା ବଦଳ ପକେଇବଟି ! ମେଢୁଆ ପାଗ ! ତାଙ୍କ ଲୁଗିଟା ଆଣି ଦେବି ?

କାଶୀ—ନାହିଁ, ନାହିଁ । ମୁଁ ଲୁଗି ପିନ୍ଧିବି ନାହିଁ । ମଠା ପିନ୍ଧି ସନ୍ଧ୍ୟା —ଆହ୍ନିକ କରିବି ।

ସୀତା—ମଠା କ'ଣ ସାଙ୍ଗରେ ଆଣିଚ ?

କାଶୀ—ହଁ, ମଠା ଆଣିଚି ଯେ—ହେଲେ ବିଛଣାପତ୍ର ପରା ସବୁ ବାହାରେ—

ସୀତା—(ବଡ଼ ପାଟିରେ) ନାରଣ ! ଭାଇଙ୍କ ବିଛଣାପତ୍ର ଭିତରକୁ ନେଇ ଆସିବଟି ।

ନାରଣ—(ଦୂରରେ) ଆଣିଲିଣି ମା !

କାଶୀ—ହଉ, ମୁଁ ତା' ହେଲେ ଯାଏଁ—ମଠାଟା ବଦଳ ପକାଏ ।

ସୀତା—ହଁ, ତମେ ମଠା ବଦଳ ଆସ । ମୁଁ ଠାକୁର ଘରେ ଆସନ ପକଉଚ । —— (ଦୁହିଁଙ୍କର ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

( ବାହାର ଅଗଣା । କାଶୀନାଥଙ୍କ ବକ୍ସଣା ଖୋଲା ହୋଇ ପଡ଼ିଛି । ଭୋଲାନାଥ ଓ ନାରଣ ତନ୍ନ ତନ୍ନ କରି ଦେଖୁଚନ୍ତି । ପୂର୍ବର ଓଦା ଚାଦରିଆ ପିନ୍ଧି କାଶୀନାଥ ଆସିଲେ )

କାଶୀ—ଏଁ ! ଏ କ'ଣ ଭୋଲବାବୁ ? ମୋ' ବଛଣା ଟାକୁ କାଇଁକି ଏମିତି ଖେଳେଇ ମେଲେଇ ପକେଇଚ ?

( କାଶୀନାଥଙ୍କ କଥାକୁ ଭୋଲାନାଥ ଆଦୌ କର୍ଣ୍ଣପାତ ନ କରି ନିଜ କାମରେ ଲାଗିଥା'ନ୍ତି )

ଭୋଲା—ଏ ଯୋଡ଼ ତକିଆ କୋଣ··ବୁଝିଲ ନାରଣ—

ନାରଣ—ଆଜ୍ଞା—

ଭୋଲା—ଏଇ ତକିଆ କୋଣ ହେଲା ଛାରପୋକମାନଙ୍କର ଗୋପନ ନିବାସ ! ବୁଝିଲ ?

ନାରଣ—ଆଜ୍ଞା । (ଏମାନଙ୍କ ଢଙ୍ଗ ଦେଖି କାଶୀ କିଛୁ ବୁଝି ପାରୁ ନଥାନ୍ତି)

ଭୋଲା—ଏଇ ଯୋଡ଼ ସରୁ ସରୁ ଭାଙ୍ଗ ଦେଖୁଚ—ସ୍ପା'ଭିତରେ ସେମାନେ ଏମିତି ଲୁଚି ଛପି ରହି ଯିବେ ଯେ କାହା ବାପର ସାଧ୍ୟ ନାହିଁ ସହଜରେ ତାଙ୍କୁ ଖୋଜି ପାଇବ ।

କାଶୀ—ମୁଁ ପରା ତମକୁ କ'ଣ କହୁଚି ଭୋଲା ନାଥ ?

(ଭୋଲାନାଥ ପୂର୍ବପରି ନିର୍ବିକାର)

ଭୋଲା—ଆଲୋ ହେ ଜେମା —

ଜେମା—ବାପା ।

ଭୋଲା—ଏଣେ ଟର୍ଚ୍ଚ ପକା । ମାମୁଁଙ୍କୁ କ'ଣ ଆଜି ନୂଆ ଦେଖୁଚୁ ଯେ ତାଙ୍କ ମୁହଁକୁ ହାଁ କରି ଅନେଇ ଠିଆ ହୋଇଚୁ ?

କାଶୀ—ମୋ କଥା କ'ଣ ତମକୁ ଶୁଭୁନି ଭୋଲାନାଥ ?

ଭୋଳା—ଶୁଣୁଛ କାଶୀ ଭାଇ—ସବୁ ଶୁଣୁଛ । ହେଲେ ଦୟାକରି ଆମ କାମଟା ଆଗେ ଆମକୁ ଶେଷ କରିବାକୁ ଦିଅ ।

କାଶୀ—ତମର କି କାମ ଏଠି ଚାଲିଛି ଶୁଣେ ?

ଭୋଳା—ବାହାରେ ନୋଟିସ୍‌ଟା ପଢ଼ିଛ ?

କାଶୀ—ଦେଖିଛି ପରା ଭୋଳବାବୁ ମୁଁ ଏଠି ଓଦା ତଉଲିଆଟା ପିନ୍ଧି ଠିଆ ହେଇଛି—

ଭୋଳା—ସେଇ ନୋଟିସ କାମ ଚାଲିଛି । କ୍ୱାରନ୍‌ଟାଇନ୍ !

କାଶୀ—କ୍ୱାରନ୍‌ଟାଇନ୍ ?

ଭୋଳା—ହଁ । କ୍ୱାରନ୍‌ଟାଇନ୍ । ମୋ' ହାତରେ ଆଇନ୍ କାନୁନ୍ ଥିଲେ, ଟ୍ରେନ୍—ବାସରେ ଯେତେ ଯାତ୍ରୀ ଓହ୍ଲାନ୍ତେ କ୍ୱାରନ୍‌ଟାଇନ୍ ବଳରେ ସମସ୍ତଙ୍କ ବିଛଣାପତ୍ର ଆଗେ ଯାଞ୍ଚ୍ କରି ଟାଉନ୍ ଭିତରକୁ ଛାଡ଼ନ୍ତି । ସେ କ୍ଷମତା ମୋର ନାହିଁ—ସେଥିପାଇଁ ମୋ' ଘରକୁ ଯିଏ ଆସିବେ—ମୁଁ ତାଙ୍କ ପ୍ରତି ଏ କ୍ଷମତା ପ୍ରୟୋଗ କରିବି । ଏଇଟା ମୋର ପାରିବାରିକ କ୍ୱାରନ୍‌ଟାଇନ୍ ।

କାଶୀ—ମୁଁ ବୁଝିଲି ସବୁ । ହେଲେ ମୋ' କଥା ତୁମେ ବିଶ୍ୱାସକର ଭୋଳାନାଥ—ମୋ ବିଛଣାରେ ଗୋଟେ ହେଲେ ବି ଛାରପୋକ ନାହାନ୍ତି ।

ଭୋଳା—ଏ ବିଛଣା ନେଇ ତମେ ଟ୍ରେନ୍ ବସ୍‌ରେ ଯାଅ ତ କାଶୀ ଭାଇ—

କାଶୀ—ହଁ, ଯାଏ ।

ଭୋଳା—ଅଥଚ ତମେ କହୁଚ ଯେ—ଏଥିରେ ଛାରପୋକ ନାହାନ୍ତି !!

କାଶୀ—ଆଚ୍ଛା ହେଲା ବାବୁ, ଏଥିରେ ଛାରପୋକ ଅଛନ୍ତି । ତମେ

ତମର ପାଞ୍ଚ୍ କର । ହେଲେ ମୋ ମଠାଟା ମତେ ଦେଲ । ଏ ମେଘୁଆ ପାଗରେ ଏତେ ରାତ୍ତିରେ ଗାଧୋଇ, ଏ ଓଦା ତଉଲିଆଟା ପିନ୍ଧି ମୁଁ ଏକାବେଳକେ ଥରିଗଲିଣି !

ଭୋଳା—ଓ ! ତମର ମଠା ଦରକାର ! ମଠା କାହିଁ ?

କାଶୀ—ସେଇ ହୋଲ୍ଡ-ଅଲ୍ ଭିତରେ ଅଛି । ସେ ପାଖରେ ନୁହେଁ—ଏ ପାଖରେ—ହଁ, ସେଇଟା ।

ଜେମା—ଏଇ ନିଅ ମାମୁଁ—ତୁମ ମଠା ନିଅ । (ଦଉଥିଲା)

ଭୋଳା—ରହ ଜେମା, ମଠା ମତେ ଦେ—ମୁଁ ଆଗେ ଦେଖିନିଏ ।

(ଜେମା ହାତରୁ ମଠା ନେଲେ)

କାଶୀ—କି ଆଶ୍ଚର୍ଯ୍ୟ କଥା ? ମଠା ଦେହରେ ପୁଣି ଗୁଜିପୋକ ଅଛନ୍ତି ?

ଭୋଳା—ନାହାନ୍ତି ବୋଲି କହିବ କିଏ ? ନାରଣ ଖୋଲି ଧରିବଟି ମଠାଟା । ତମେ କଣ ଭାବୁଚ କାଶୀ ଭାଇ, ଯେ ଆମେ ଏଠି ଗୋଟାଏ ଫାର୍ଣ୍ଣ ଲଗେଇଚୁ ? ମୋଟେ ନୁହେଁ । ତମେ ଏଠି ଦିନ ଗୋଟାଏ ରହିଲେ ନିଜ ଆଖିରେ ଦେଖନ୍ତ ଯେ, ଆମେ କି ନିଷ୍ଠା ସହକାରେ ଏଠି କାମ କରୁଚୁ ! (ମଠା ଖୋଲି ଦେଖିଲେ)

କାଶୀ—ମୋ ମଠାଟା ଆଗେ ଦେଲ ବାବୁ !! (ସୀତା ଆସିଲେ)

ସୀତା—ଏ ଏଠି କି ପାଲା ଲଗିଚ ? ତମର କ'ଣ କାହାରି ଆଖି କାନ ନାହିଁ ? ଘଣ୍ଟାଏ ହେଲା ସେ ଓଦା ତଉଲିଆଟା ପିନ୍ଧି ଠିଆ ହେଇଚନ୍ତି—ତମର ପାଞ୍ଚ୍ ଗୁଲିଚ—ପାଞ୍ଚ !! ଦବଟି ନାରଣ ସେ ମଠାଟା ।

ନାରଣ—ହେଇ ଆଜ୍ଞା, ଗୋଟାଏ ଏଇଠି ବଇଚ ।

କାଶୀ—କ'ଣ ? ମୋ ମଠାରେ ଗୁଜିପୋକ ?

ନାରଣ—ହଁ ଦେଖ, ଏଇଠି !

ଭୋଳା—ଆରେ ତାକୁ ଆଗେ ଧର ! ଖାଲି ଏଇଠି ଏଇଠି କ'ଣ ହଉଚ—ଆଗେ ଧର ।

ନାରଣ—ଧରିଲି ଆଜ୍ଞା ! ( ହାତ ଦେଖି ) କାଇଁ, ନାହିଁ ତ, କୁଆଡ଼େ ଖସିଗଲା ।

ଭୋଳା—ଖସିଯିବ କୁଆଡ଼େ ? ଏଇ, ଠିକ ସେଇଠି ପଶି ବସିଚି ।

(ଧଡ଼ବଡ଼ର ଭଙ୍ଗୀ କରି ପୁଣି ହାତ ଖୋଲି ଦେଖି)

କାହିଁ ହାତରେ ତ ମୋର କିଛି ନାହିଁ !

ନାରଣ—ହେଇପରି ଅଜ୍ଞା, ପୁଣି ଏଇଠି ବସିଚି ।

କାଶୀ—କି କଥା ପ୍ରେ ? ସେଠି ଟୋପାଏ ଆଲକତରା କୋଉ ଦିନୁ ପଡ଼ି ଦାଗଟା ରହି ଯାଇଚି—ଅଥଚ ତମେ ଦିହେଁ ଯାକ ଗୁରୁ-ପୋକ ବୋଲି କାମୁଡ଼ା କୁମୁଡ଼ି ଲଗେଇଛ !!

ଭୋଳା—ଓହୋ, ସତେ ତ ! ଗୋଟାଏ କଳାଦାଗ ! ଏ ବୁଢ଼ୀଟା କ'ଣ ଭଲ କରି ଠିକଏ ଆଲୁଅ ହେଲେ ଦେଖଉଚି ?

(ସୀତା ମଠାଟା ଟାଣି ଆଣିଲେ)

ସୀତା—ତମେ ନବଟି ଭାଇ ତମ ମଠା—ସିଏ ତାଙ୍କର ଏଠି ନବ-ରଙ୍ଗ ଲଗଉଥାନ୍ତି । (ମଠା ନେଇ ଭୋଳା ଓ ସୀତା ଗ୍ଲଲଗଲେ)

ଭୋଳା—ହଁ, ତାହେଲେ ବର୍ତ୍ତମାନ କ'ଣ କରାଯିବ ?

ଜେମା—ହଁ, ବାପା, କ'ଣ କରିବା—ଆଗେ ଠିକ କର । ମାମୁଁଙ୍କ ବନ୍ଧଣା ଆଗେ ଦେଖା ହବ ନା, ଗରମ ପାଣି ଗାମାକ୍‌ଡ଼ିନ୍‌ପାଣି—

ଭୋଳା—ଶୁଣ ! ଏମିତି ଅସ୍ଥିର ହେଲେ ଚଳିବ ନାହିଁ । ନାରଣ, ଗରମ ପାଣି ହଣ୍ଡା ଚୂଲିରେ ବସିଚି ତ ?

ନାରଣ—ବସିଚି ଆଜ୍ଞା ।

ଭୋଳା—କେବଳ ମୋର ଶୋଇବା ଖଟ ଛାଡ଼ି ବାକି ସବୁ ଖଟ ଚୌକି, କବାଟ, ଝରକା କାମ ତ ସରିଚି ?

ନାରଣ—ସବୁତ ଆଜ୍ଞା ।

ଭୋଳା—ବେଶ, ତା'ହେଲେ ଏ ବନ୍ଧଣା କାମଟା ଆଗେ ଶେଷକର ଦବା । ତା'ପରେ (ଟିକଏ ନମ୍ର ସ୍ୱରରେ) ଯେ ଯେତେବେଳେ ତାଙ୍କ ଭାଇଙ୍କୁ ଖାଇବାକୁ ଦେବେ—ସେତିକ ବେଳେ ମୋ ଶୋଇଲା ଖଟଟା ····ବୁଝିଲ ତ ?

ନାରଣ—ଆଜ୍ଞା ।

ଭୋଳା—ଆଚ୍ଛା, ଆଗେ ଏ ହୋଲ୍‌ଡ଼-ଅଲ୍‌ଟା ଦେଖିବଟି । ଶେଯ, ଗୁଦର, ସତରଂଜ ସବୁତ ଦେଖା ସରିଲାଣି—ଖାଲି ଏଇଟା ବାକି ଅଛି । ଜେମା—ପକା ଟଇ ।

ନାରଣ—ହେଇ ଆଜ୍ଞା, ହେଇ ଡଗ ଡଗ ହୋଇ ଚୁଲି ଯାଉଚ ।

ଭୋଳା—କାଇଁ, କୁଆଡ଼େ ଗଲା ?

ଜେମା—ହଁ, ବାପା ! ସେ ପାଖକୁ ଚୁଲିଗଲାଣି ।

ଭୋଳା—ଓଲଟେଇ ଦିଅ—ପୁରାପୂରି ହୋଲ୍‌ଡ଼-ଅଲଟାକୁ ଓଲଟେଇ ଦିଅ । (ଓଲଟେଇ ଦିଆଗଲା) ହଁ ! କାଇଁ ? ଏଠି ତ କୋଉଠି ନାହିଁ ?

ଜେମା—ମୁଁ ନଜେ ଦେଖିଚ ବାପା—ଏତେ ବଡ଼ ଜନ୍ତୁଟାଏ—ସେ ପାଖକୁ ଚୁଲିଗଲା ।

ଭୋଳା--ଏ ପାଖକୁ ଆସିଲା ତ ପୁଣି ଗଲା କୁଆଡ଼େ ?

ନାରଣ ଏ ଚମଡ଼ା ପଟି ତଳେ କୋଉଠି ରହିଯାଇ ନାହିଁ ତ ?

ଭୋଳା—ଖାଲି କହିଲେ କ'ଣ ହବ ? ··ପଟିଟାକୁ ପୂରା କାଢ଼ି ଦେଇ ଦେଖ ।···ଅଛି ? (ପଟି କଢ଼ା ହେଲା)

ନାରଣ—ନା ଆଜ୍ଞା—ନାହିଁ ।

ଭୋଳା—ଓଃ ! ଏ କାଶୀ ଭାଇ ବ ସେମିତିକା ଲୋକ । ତାଙ୍କୁ ଆଉ ରଙ୍ଗ ମିଳିଲା ନାଇଁ ଯେ, ବାଛି ବାଛି ଏମିତିକା ଗୋଟେ

ହୋଲଡ଼୍-ଅଲ୍ କଣିଛନ୍ତୁ—ଘୁରପୋକ ରଙ୍ଗ ସାଙ୍ଗରେ ହୋଲ୍ଡ଼୍ ଅଲ୍ ରଙ୍ଗ ଏକାବେଳେକେ ମିଳଯାଉଚ !! ଏଥିରେ ମଣିଷ ଏବେ କରିବ କଣ ?

ଜେମା—ହେଇ ବାପା, ତମ ହାତରେ ଗୃଳୁଚ । (ଭୋଳାନାଥ କ୍ରୁଦ୍ଧ ପଡ଼ିଲେ)

ଭୋଳା—ଏଁ ! ମୋ ହାତରେ !!···କାଇଁ ?

ନାରଣ—ଆହା-ହା-ଆପଣ ହାତଟା ଝାଡ଼ ଦେଲେ କାଇଁକି ? କୋଉଠି ଝଡ଼ ପଡ଼ଲା ନା କ'ଣ ?

ଭୋଳା—ଝଡ଼ ପଡ଼ଲା ? କଇଁ, ନାଇଁ ତ ? (ସମସ୍ତେ ତଳେ ଖୋଜିବାକୁ ଲଗିଲେ)

ନାରଣ—ତା' ହେଲେ ଆପଣଙ୍କ ଗେଞ୍ଜି ଭିତରକୁ ଗୃଲ ଚଲାଣି ।

ଭୋଳା—ହୁଁ, ମୁଁ ଗେଞ୍ଜିଟା ଖୋଲେ । (ଖୋଲିଲେ)···ହୁଁ ଦେଖିଲ, ଗେଞ୍ଜିରେ କୋଉଠି ଅଛି । (ନାରଣ ଗେଞ୍ଜି ପରୀକ୍ଷା କଲା)

ନାରଣ—ନା, ଗେଞ୍ଜିରେ ନାହିଁ ।

ଭୋଳା—ଭଲକରି ଦେଖ ।

ନାରଣ—ନାଇଁ ଆଜ୍ଞା, ବଗପକ୍ଷୀ ପରି ଧଳା ଗେଞ୍ଜିଟାରେ କୋଇଁକିଆ ଜୀବଟା କ'ଣ ଛପି ଯାଇ ପାରିବ ? ଗେଞ୍ଜିରେ ନାହିଁ ।

ଭୋଳା—ତା ହେଲେ କ'ଣ ମୋ ଦେହରେ କୋଉଠି ଗୃଲୁଚ । କି ବିପଦ ! ଭଗବାନ୍ ଏମିତି ଭାବରେ ଏ ଜୀବଟାକୁ ସୃଷ୍ଟି କରିଚନ୍ତି—ଗୋଟାଏ ପିମ୍ପୁଡ଼ି ଦେହରେ ଗୃଲିଲେ ଜଣା ପଡ଼ିବ–ଅଥଚ ପିମ୍ପୁଡ଼ିଠୁ ଆକାରରେ ଦଶ ଗୁଣ ବଡ଼ ଏଇ ଘୁରପୋକରୁ ଏକାବେଳେକେ ଦେହରେ ଦଶଣ୍ଡା ଗୃଲିଲେ ବି ମଣିଷ କିଛି ଜାଣି ପାରିବ ନାହିଁ । ଆରେ ଦେଖ ନାରଣ, ଠିଆ ହୋଇ ରହିଲ କାଇଁକି ?

ନାରଣ –ଟିକିଏ ହାତ ଟେକିଲେ ଆଜ୍ଞା···ହାତ···ହଁ ହାତଯାକ ଟେକନ୍ତୁ (ଟେକିଲେ)···ନା—ନାହିଁ ।

ଜେମା–ଟିକିଏ ଏ ପାଖକୁ ବୁଲି ଯିବଟି ବାପା । (ଭୋଳାନାଥ ବୁଲିଲେ) —ନା, ନହିଁ ।

ନାରଣ—ପୁଣି ଏ ପାଖକୁ ବୁଲି ଯା'ନ୍ତୁ । (ପୁଣି ବୁଲିଲେ) ନା, ନାହିଁ ।

ଭୋଳା—ତା'ହେଲେ ସେ ପାଣି ହୁଏତ ପୁଣି ହୋଲ୍‌ଡ୍‌ ଅଲ୍‌କୁ ଗୁଳିଗଲାଣି । କିନ୍ତୁ ହୋଲ୍‌ଡ୍‌ଅଲ୍‌ର ଯୋଉ ରଙ୍ଗ···ନାଃ । ଆଉ ଦେଖାଦେଖି କଥା ନୁହେଁ । ନାରଣ, ଗରମ ପାଣି ଆଣ ।

ଜେମା—କ'ଣ କରିବ ବାପା ? ···ହୋଲ୍‌ଡ୍‌-ଅଲରେ ଗରମ ପାଣି ଢାଳିବ ?

ଭୋଳା – ହଁ ।

ଜେମା—ନାଇଁ ବାପା—ମାମୁଁ ରାଗିବେ ।

ଭୋଳା – ରାଗିବେ ତ ସେ ରେଲ୍‌ କମ୍ପାନି, ବସ୍‌ କମ୍ପାନି· ଯୋଉଠୁ ଯା'ଙ୍କୁ ଆମଦାନି କରିଚନ୍ତି – ସେଇଠି ଯାଇ ରାଗନ୍ତୁ । ···ଏଠି ତାଙ୍କ ରାଗ ଚଳିବ ନାଇଁ ।

ନାରଣ—ତା'ହେଲେ ଆଜ୍ଞା, କାଶୀବାବୁଙ୍କ ବିଛଣା ଖୋଳରେ ପାଣିଢଳା ହବ ?

ଭୋଳା ହଁ, ତୁମେ ଯାଇ ଆଣ ।

ନାରଣ - ଆଶୁତ ଆଜ୍ଞା ! (ନାରଣର ପ୍ରସ୍ଥାନ)

ଭୋଳା—ଦେଖ୍‌ ଜେମା, ମାମୁଙ୍କୁ ଏକଥା ଏଇନେ କିଛି କହିବୁ ନାହିଁ ।

ଜେମା – ନା ।

—*—

# ଶେଷ ଦୃଶ୍ୟ

[ସ୍ୱତ ପାହାନ୍ତା । ଭୋଲାନାଥ ଓ ସୀତା ଖଟ ଉପରେ ଶୋଇଚନ୍ତି]

ଭୋଲା – ସୀତା-ସୀତା ! ଉଃ କେତେ ଜୋର୍‌ରେ ଘୁଙ୍ଗୁଡ଼ି ମାରୁଚ ?
ସୀତା—ଆରେ ଉଠ ! ସୀତା—

ସୀତା – (ନିଦଭରା ଗଳାରେ) ଉଁ ।

ଭୋଲା – ମୋ ହାତକୁ ଗୋଟାଏ ଗୁର୍‌ପୋକ କାମୁଡ଼ୁଚ – ଚିକେ ଚକ୍‌ଚା ଟିପିଦିଅ । (ସୀତା ପୁଣି ଘୁଙ୍ଗୁଡ଼ି ମାରିଲେ) ଦେଖୁଚ ! ମୁଁ ଡାକୁଚ—ତାଙ୍କର ପୁଣି ଘୁଙ୍ଗୁଡ଼ି ଗୃଲିଲାଣି ! ଆରେ ମୁଁ ଉଠିଲେ ସେ ତଳ୍‌କୁ ଯାଇ ପଡ଼ିଯିବ । ଟିକିଏ ଉଠ ଭଲା ! (ବଡ଼ ପାଟିରେ) ସୀତା !

ସୀତା—ଓ ହୋ ! (ଭୋଲାନାଥ ହଠାତ୍ ଉଠିବସି ଆଲୁଅ ଜାଳିଲେ)

ଭୋଲା—ଦେଖୁଚ ଏ ଲୋକଟାକୁ ! ଏ ପାଖ ସେପାଖ ହାତ ବାଡ଼େଇ ସବୁ ଗୋଳମାଳ କରିଦେଲା ! ଗୁରପୋକଟା କୁଆଡ଼େ ପଳେଇଲାଣି । ଆଉ କାମୁଡ଼ୁନାହିଁ । କୁଆଡ଼େ ଗଲା ? କାହିଁ ଏଠି ତ ନାହିଁ । ତକିଆ ତଳକୁ ଗୃଲିଗଲା ନା କଣ ? (ସୀତାଙ୍କ-ମୁଣ୍ଡତଳୁ ତକିଆଟା ଟାଣି ଅଣିଲେ)

ସୀତା—ଓହୋ ! ମରିଗଲି ଲୋ ବୋଉ ! (ସୀତା ଉଠି ବସିଲେ)

ଭୋଲା – କଣ ହେଲା ?

ସୀତା—ତକିଆ ଉପରୁ ଏତେ ଜୋରରେ ମୁଣ୍ଡଟା ମୋର ଗଡ଼େଇ ଦେଲ—ଖାଲିକରି ଏପାଖ କାନ୍ଥରେ ବାଡ଼େଇ ହେଇଗଲା ! ଓହୋ-ହୋ !

ଭୋଲା—ମୁଁ ତମକୁ ଏତେ ଡାକିଲି—ତମେ ଉଠିଲ ନାହିଁ କାହିଁକି ?

ସୀତା—କାହିଁକି ଡାକୁଥିଲ ଯେ ?

ଭୋଳା—ଗୋଟାଏ. ଗୁରପୋକ ମତେ କାମୁଡ଼ୁଥିଲା ପରା ! ଏଇ ତକିଆ ଉପରେ ହାତ ରଖିଥିଲି ।

ସୀତା—ସେଇ ତକିଆ ଉପରେ ମୋ ହାତ ତ ଥିଲା,—ମତେ କାହିଁକି କାମୁଡ଼ିଲା ନାହିଁ ?

ଭୋଳା—ତାର କୈଫିୟତ କଣ ମୁଁ ତମକୁ ଦେବି ?

ସୀତା—ରାତି ବାରଟା ବେଳେ ପରା ଏ ଖଟରେ ଗରମ ପାଣି ଢାଳି ଗାମାକସିନ ପକେଇଚ—ଏଇନେ ପୁଣି ଗୁରପୋକ ଆସିବେ କୋଉଠୁ ?

ଭୋଳା—ଏ ଖଟରେ ଗୁରପୋକ ନାହାନ୍ତି ମୁଁ ଜାଣେ । ହେଲେ ମୋର ପୂର୍ବ ସନ୍ଦେହ-କାଶୀ ଭାଇଙ୍କ ବିଛଣାରୁ ଯେଉଁ ଗୁରପୋକ ବାହାରିଲା—ସେଇଟା କେମିତି ହେଲେ ଏ ଖଟକୁ ଚାଲି ଆସିଚି ।

ସୀତା—ତେବେ ତାକୁ ଜଗି ବସିଥା—ମୁଁ ମୋର ଶୋଉଚି ।
(ଶୋଇଲେ)

ଭୋଳା—ଭାବିଥିଲି ଶେଷ ରାତିର ଲେଉଟା ଲେଉଟି କରି ଖୋଜା ଖୋଜି କରିଥାନ୍ତେ—ହେଲେ ତମେ ଯଦି ମୋ ସାଥିରେ ଏମିତି ଅସହଯୋଗ ଆରମ୍ଭ କରିବ, ମୋର ଆଉ ଉପାୟ କଣ ? (ହାଇମାରି) ମୁଁ ବି ଟିକିଏ ଶୁଏ ।··· (ଆଲୁଅ ନିଭେଇ ଭୋଳାନାଥ ଶୋଇଲେ । କିଛି ସମୟ ପରେ ପୁଣି ତାଙ୍କ ନିଦ ଭାଙ୍ଗିଲା )

ଭୋଳା—ସୀତା !—ଉଠ, ଠିକ୍ ମାରିବଟି—ପୁଣି କାମୁଡ଼ିଲାଣି । ଆରେ ଉଠ ଭଲା—

ସୀତା—ଓଃ ! କଣ କହୁଚ ?

ଭୋଳା—ଉଠ, ପୁଣି କାମୁଡ଼ିଲାଣି ।

ସୀତା—କୋଉଠି ?

ଭୋଳା—ଏଇ ଡାହାଣ ହାତ—ଠିକ୍ ସେଇ ଜାଗାରେ ।
ସୀତା—ମଲ୍, ସେଇ ଗୋଟାଏ ଜାଗାରେ ସେ ବାଛି ବାଛି କାମୁଡ଼ୁଛି ?

(ସୀତା ଉଠି ବସିଲେ)

ଭୋଳା—ଓହୋ- ! ମରିଗଲି—ମରିଗଲି !
ସୀତା—କଣ ହେଲା ? (ଭୋଳନାଥ ବସିଲେ)
ଭୋଳା—ଆଲୁଅଟା ଜାଳ ।···ଯେମିତି ଲୁହା କଣ୍ଟାଟାଏ ମୋ ହାତରେ ଗଳିଗଲା । (ସୀତା ଅଲୁଅ ଜାଳିଲେ)
ସୀତା—ଏଁ ! ଏ ଚାପୁଲି ଉପରୁ କ'ଣ ରକ୍ତ ବାହାରିଲାଣି ?
ଭୋଳା—ରକ୍ତ ? ଛାରପୋକ ତ କେବେ ରକ୍ତ ବାହାର କରି ଛାଡ଼ି ଦେଇ ଯିବ ନାହିଁ—ସବୁ ଶୋଷି ଦେଇ ଯିବ ।
ସୀତା—ତମେ ମଣିଷଟି ?
ଭୋଳା—ମାନେ ?
ସୀତା—ହଇଓ ଛାରପୋକ କାହିଁ ?···ମୋ ହାତକୁ ଚାହିଁଲ ?
ଭୋଳା—ସେପ୍‌ଟି ପିନ୍‌ଟା ଖୋଲିଯାଇ ମୂନ ବାହାରିଚି ।
ସୀତା—ସେଇ ମୂନଟା ତମ ହାତରେ ଟିକଏ ଫୋଡ଼ି ହେଇଗଲା ବେଳକୁ ତମେ ପାଟି କରୁଥିଲ—କ'ଣ ନା ଛାରପୋକ କାମୁଡ଼ିଚି । ଏଇନେ ମୁଁ ଉଠିଗଲା ବେଳକୁ ବେଶୀ ଜୋରରେ ଫୋଡ଼ି ହେଇ ଯାଇ—ଏ ଦଶା !!
ଭୋଳା—ପିଲାଙ୍କ ପରି ହାତରେ ତମେ ଗୋଟାଏ ସେଫ୍‌ଟିପିନ୍ ମାରିଥିଲ କାହିଁକି ?
ସୀତା—ଏଇଟା ଜେମାର । କାହିଁକି କେଜାଣି ଆଜି ସେ ମୋ ଚୁଡ଼ିରେ ଏଇଟା ମାରି ଦେଇଥିଲା । ମୁଁ ଏବେ ଜାଣିଚି ଏଇଟା କେତେବେଳେ ଫିଟି ଯାଇଚି ?

କାଶୀ—(ବାହାରୁ) କ'ଣ ହେଉଛ ସୀତା—ଏ ଘେରଷ୍ଠାରୁ ପାଟି ଶୁଣି ଲାଗିଛ କାହିଁକି ?

ଭୋଳା—ନାଇଁ କାଶୀଭାଇ, ସେ କଥା ନୁହେଁ । ତମେ ଏତେ ଘେର୍‌ରୁ ଉଠିଲଣି କାହିଁକି ? ଆସ ଭିତରକୁ ଆସ ।

(କବାଟ ଖୋଲିଲେ । କାଶୀ ଆସିଲେ)

କାଶୀ—ଛ'ଟା ବେଳେ ବସ୍—ପାଞ୍ଚଟା ବାଜିଲଣି; ମୁଁ ବାହାରିଲି । ମୋ ହୋଲ୍‌ଡ୍-ଅଲ୍‌ଟା କାଇଁ ? ଆରେ ଏ କଣ ? ଏଇଟା ତିନ୍ତିଲା କେମିତି ?

ସୀତା—କଣ ହେଲା - ହୋଲ୍‌ଡ୍ ଅଲ୍ ତିନ୍ତିଛ ?

କାଶୀ—ଏଇ ଦେଖୁନୁ । (ବାହାରୁ ଓଦା ହୋଲ୍‌ଡ୍ ଅଲ୍‌ଟା ଆଣିଲେ)

ସୀତା—ହଇଓ, ଶୁଣୁଛ ? ଭାଇଙ୍କ ହୋଲ୍‌ଡ୍ ଅଲ୍ ତିନ୍ତିଲା କେମିତି ?

ଭୋଳା—ହୋଲ୍‌ଡ୍ ଅଲ୍‌ରେ ଛାରପୋକ—ଆମ ଘରେ ଗରମ ପାଣି—ଆଉ ଅଧିକ କଣ ପଚାରୁଛ ? ···ବୁଝିଲ କାଶୀଭାଇ, ତମେ ଏ ବେଳାକ ରହିବ ଯାଅକି, ଆରବେଳାକୁ ହୋଲ୍‌ଡ୍ ଅଲ୍‌ଟା ଶୁଖି ଯାଇଥିବ ।

କାଶୀ—ଥାଉ, ଖୁବ୍ ହେଉଛ । ଗୋଟାଏ ରାତିରେ ତ ମତେ ଗାମାକ୍‌ସିନ୍ ପିଚକାରି ମାରିଲ—ହୋଲଡ୍-ଅଲ୍‌କୁ ଗରମ ପାଣିରେ ଧୋଇଲ !! ଆଉ ପୁଣି ରହିବ କଣ···ଆଚ୍ଛା, ଏଇଆ କରି ତମେ ଭାବୁଛ ଏ ଦେଶରୁ ଛାରପୋକ ଧ୍ୱଂସ କରିଦେବ ?

ଭୋଳା—ତମର ବଡ଼ ବଡ଼ ବୈଜ୍ଞାନିକମାନେ ତ କହିଲେ ଯେ ଛାରପୋକ ଏକାବେଳକେ ମରିପାରିବେ ନାହିଁ ! ତାଙ୍କୁ ଥରକୁ ଥର ମାରିବାକୁ ହବ । ଆମର ଉପାୟ କଣ ? ଆରେ —ଆରେ ! ଇଏ କ'ଣ କାଶୀଭାଇ—ତମେ ଯିବାକୁ ବାହାରିଲଣି ?

ସୀତା—ଏମିତି ଯାଉଚ ଯାଇ—କିଛି ଟିକେ ଖାଇବ ନାହିଁ ?

କାଶୀ—(ଯାଉଯାଉ) ମୁଁ ସବୁତ ଖାଇଚି—ମୋର ବିଛଣାପତ୍ର
ସବୁ ରହିଲା—ଆଉ କେବେ ଆସି ନେଇଯିବି । (ଚାଲିଗଲେ)

ଭୋଳା—(କଡ଼ପାଖିରେ) ଆଉ କେବେ ଆସିଲେ ଦେଖିବ କାଶୀଭାଇ
—ଏକା ଆମ ଘର ନୁହେଁ—ଅନ୍ତତଃ ଆମର ଏ ସାରା
ବସ୍ତିରେ ବି ଗୋଟାଏ ଗୁରପୋକ ନ ଥିବେ !!

ସୀତା—ଆଉ ତୁମର ମୁହଁ ଅଛି ତାଙ୍କୁ କଥା କହିବାକୁ ?

ଭୋଳା—ସେ କଥା, କଥାରେ ନୁହେଁ—କାମରେ ପ୍ରମାଣ କରେଇ
ଦେବ । (ଡାକଲେ) ନାରଣ !! ଚଞ୍ଚଳ ଚଞ୍ଚଳ କାମ ସାର ।
ସ୍କିମ୍ ଅନୁସାରେ ଦିନ ନ'ଟା ବେଳକୁ ପୁଣି ଆମ ଅଭିଯାନ
ଆରମ୍ଭ ହେବ ।

———

ଏ ପରିବାରରେ ଅଛନ୍ତି :

ବାବୁ···ଗୃହସ୍ୱାମୀ(ବୟସ—୩୫ ବର୍ଷ )

ଓଲବୋଉ···ତାଙ୍କ ପତ୍ନୀ (ବୟସ—୨୯ ବର୍ଷ)

ଓଲ···ତାଙ୍କ ଝିଅ (ବୟସ—୧୦ ବର୍ଷ)

ମଣ୍ଟୁ···ତାଙ୍କପୁଅ (ବୟସ—୮ବର୍ଷ)

ଓ

ଜଣେ ପାଣି ପାଇପ୍ ମିସ୍ତ୍ରୀ ଓ ଜଣେ ମାଛବାଲୀ

( ଏ ଚଷର ରଚନା କାଳ—ଅଗଷ୍ଟ, ୧୯୫୯ )

# କଟକୀ ବାବୁଙ୍କ ପରିବାର

## ପ୍ରଥମ ଦୃଶ୍ୟ

( କଟକ ସହରର ଏକ ସାଧାରଣ ଘରର ପାଚିଶିଘେରା ଅଗଣା । ଅଗଣାର ଗୋଟିଏ ପାଖକୁ ଦୁଇଖଣ୍ଡ ବଖରା ଘର । ବାରଣ୍ଡା ମଧ୍ୟ ରହିଛି । ସମୟ-ପୂର୍ବାହ୍ନ । ବାରଣ୍ଡାରେ, ଗୋଟିଏ ଇଜିଚେୟାର ଉପରେ, ଖୁବ୍ ଉତ୍ଫୁଲ୍ଲ ମନରେ ବାବୁ ବସିଚନ୍ତି । ପାଖରେ, ତାଙ୍କୁ ଆଉଜି ଠିଆ ହୋଇଚନ୍ତି ତାଙ୍କ ସ୍ତ୍ରୀ—ଡଲିବୋଉ । ଡଲିବୋଉ, ଏହାପରଠୁ "ବୋଉ" ନାମରେ ହିଁ ପରିଚିତା । )

ବାବୁ—( ଖୁବ୍ ଖୁସି ମନରେ ) ବୁଝିଲ ନା ଇପ୍ସେ···! ବାର୍‌ବରଷ ! ଗଣି ଗଣି ବାର ବରଷ ପରେ ଆଜି ମୋ' ମନକାମନା ପୂର୍ଣ୍ଣ ହେଲା !

ବୋଉ—ମନକାମନା ! କି ମନକାମନା ?

ବାବୁ—ଚଃ ! କ'ଣ ଆଉ ବୁଝିଲ ତମେ ? ଧାତକାଣ୍ଡ ରାମାୟଣ ବୋଲା ହେଲା ପରେ—

ବୋଉ—ଓ, ତମର ଏଇ କଟକ ବଦଳି ହେଇ ଆସିବା କଥା କହୁଚ ?

ବାବୁ—ହଁ । ଏ ବାରବର୍ଷ ଭିତରେ ଏଇ ବଦଳି ପାଇଁ ମୁଁ ବାରଣଥର ଫନ୍ଦିଫିକର କରିଥିବ ! ମୋ' ଗୃହକର୍ମରେ ପ୍ରମୋଶନ ପାଇଁ ମୁଁ ଏତେ ଚେଷ୍ଟା କରିନ । ଶେଷକୁ ଜାଣିଲି—ଭଗବାନ୍ ଅଛନ୍ତି !! ପ୍ରମୋଶନ ହେଲା—ଆଉ ସେଇ ସଙ୍ଗେ ସଙ୍ଗେ କଟକକୁ ବଦଳି ବି ହେଲା ।···ମଣିଷ ଓଡ଼ିଶାରେ ଜନ୍ମ ହୋଇ, ଓଡ଼ିଶା ସରକାରଙ୍କ ଅଧୀନରେ ଗୃହକର୍ମ କରି, ଓଡ଼ିଶାର ନଗରୀ-ରତ୍ନ ଏଇ କଟକ ସହରରେ ପାଞ୍ଚଦିନ ବର୍ଷେ ନ ରହିଲେ ଆଉ ହେଲା କ'ଣ ?

ବୋଉ—ତମେତ ଜାଣି କଟକ ପାଇଁ ପାଗଳ । ଏ ବୁଢ଼ା ବୟସରେ କଟକରେ ଆସି ରହିବେ ବୋଲି ଯାହା ହଉଥିଲେନା— ଠାକୁରେ ଏକା ତାଙ୍କ ମନଜାଣି ଫଳ ଦେଇଚନ୍ତି । ସେ ଦୁହେଁ ମହାଖୁସି ।

ବାବୁ—କାହିଁଗଲେ ସେମାନେ ! (ଡାକଲେ) ଆରେ ମଣ୍ଟୁ, ଡଲି ।

ମଣ୍ଟୁ—(ବାହାରୁ) ଆମେ ଏଇଠି ଅଛୁ ବାପା ।

ବାବୁ—କ'ଣ କରୁଚ ?

ମଣ୍ଟୁ—(ବାହାରୁ) ଦେଖୁଚୁ ।

ବାବୁ—କ'ଣ ଦେଖୁଚ ?

ଡଲି—(ବାହାରୁ) ଏଠି ଠିଆ ହୋଇ ରାସ୍ତାର ଦୃଶ୍ୟ ଦେଖୁଚୁ ।

ବାବୁ—(ହସିହସି) ଓ ! ରାସ୍ତାର ଦୃଶ୍ୟ ଦେଖୁଛ ! ଆଚ୍ଛା ଆଚ୍ଛା, ଦେଖ । କଟକ ସହର ରାସ୍ତାଟି—ଏମିତି ଦେଖୁଥିବ···ଦିନରାତି ଅଣ୍ଟିବ ନାଇଁ । ହଁ, ଇଏ—ତମକଥା କହୁବଟି । ତମ ମନ କେମିତି ମାନୁଚି ?

ବୋଉ—ମଲା ! ଏଠିକି ଆସିଲୁଁତ ପୂରା ଦିନ ଗୋଟାଏ ହୋଇନି । ମୁଁ ପୁଣି କ'ଣ କହିବି ?

ବାବୁ—ଏ ଘର ? ଘର କେମିତି ହୋଇଚି ? ଜାଣିଚ କଟକ ସହରରେ ଭଡ଼ାଘର ଅବସ୍ଥା !!

ବୋଉ—ଜାଣିଚି । ହେଲେ ଏ ଘର-(କଥା ଅଟକି ଯାଉଥାଏ)

ବାବୁ—କ'ଣ, ମନକୁ ପାଉନି ?

ବୋଉ—କାଲି ଆସିଲାବେଳେ ରାସ୍ତା ଦି'କଡ଼ରେ କେଡ଼େ ସୁନ୍ଦର ସୁନ୍ଦର କୋଠା ସବୁ ଦେଖିଲେ ! ସେ କୋଉ ରୋଡ଼ଟି ?

ବାବୁ—ମହାତାବ୍ ରୋଡ୍ ।

ବୋଉ—ହଁ, ମହତାବ୍ ରୋଡ୍ । ସେଠି ଦେଖିଲନି, ଦି'ମହଲା ତିନି ମହଲା—ତିନ୍‌ରଙ୍ଗୀ, ପାଞ୍ଚରଙ୍ଗୀ କୋଠା ସବୁ ଧାଡ଼ିକି ଧାଡ଼ି ଠିଆ ହୋଇଚି !

ବାବୁ—ଚଃ !! ଇଏ ପରା କଟକ ସହର ! କୋଟିପତି, କହ୍ନାଇଆ ଲାଲ୍ ଠୁଁ କପର୍ଦ୍ଦକ ଶୂନ୍ୟ କାଣିଆ, କପିଲା ସମସ୍ତଙ୍କ ଆସ୍ଥାନ ଏଇଠି । ଆମ ଅବସ୍ଥାକୁ ଚାହିଁ, ଆମ ଭଡ଼ା ଟଙ୍କାକୁ ଚାହିଁ— ଠିକ୍ ଘର ମୁଁ ଯୋଗାଡ଼ କରିଚି କି ନାହିଁ କୁହ ?

ବୋଉ—ହଁ, କରିନି ଆଉ କ'ଣ ? ବଖରାଏ କୋଠା, ବଖରାଏ ଖପରଲି, ବଖରାଏ ଟିଣଛାତ । ଆଉ ରୋଷେଇ ଘର ବଖରାଟା ଚାଳ ଛପର । ଚାରି କିସମର ଚାରି ବଖରା ।

ବାବୁ—ତା ସାଙ୍ଗକୁ ପୁଣି ଇଲେକ୍‌ଟ୍ରିକ—ପାଣି ପାଇପ୍ ! ନାହିଁ କ'ଣ କୁହ ? ବାର ବରଷକାଳ ମଣିଷ କଣ୍ଟା ମଫସଲରେ ପଡ଼ି ଯୋଉ ନାକେଦମ୍ ହୋଇଚି !! ଏଣିକି ଆଉ କରାସିମା ରୋଷ ବଜାରକୁ ଗଲେ ଚାରଣା ଜାଗାରେ ଆଠଣା ଦେଇ ଦୋକାନ ଆଗରେ ଧାଡ଼ିବାନ୍ଧି ଠିଆ ହବାକୁ ପଡ଼ିବ ନାଇଁ, କି କୂଅ ପାଣି ଖାଉଥିଆ ବୋଲି ପାଣି ନପିଇ ବଦ୍‌ହଜମି ଭୋଗିବ ନାହିଁ—ବୁଝିଲ ?

ବୋଉ—ଦେଖୁଛ କ'ଣ ହଉଛି !

ବାବୁ—ଆଉ ଦେଖିବାକୁ କହୁଛ ନାହିଁ । ହଁ, ତମ ଜିନିଷ ପତ୍ର ସଜାସଜି କାମ ସବୁ ସରିଲା ? ଏଠି କଣ ? ଜୋତା ! (ବାରଣ୍ଡାର ଗୋଟାଏ ପାଖରେ ଜୋତା ସବୁ ରଖା ହେଇଥାଏ) ଜୋତା ସବୁ ଏଇଠି ରହିବ ? ଏଇ ପଟା ଉପରେ ? ମନ୍ଦ ନୁହେଁ । ହେଲେ ଏ ପଟାଟାକୁ ଆଉ ଟିକିଏ ଉଚ୍ଚ କରିବାକୁ ପଡ଼ିବ; ଟିକିଏ ଟେକି ଧରିବଟି—ମୁଁ ଏ' ଇଟା ଦିଖଣ୍ଡ ତା'ତଳେ ରଖିଦିଏ । (ପଟାତଳେ ଇଟା ରହିଲା) ହଁ, ଇଏ ଯେ ହେଲା ! ଆରେ, ତମ ଜୋତା କ'ଣ ହେଲା ? ତମ ଜୋତା ତ କାହିଁ ଏଠି ନାହିଁ ?

ବୋଉ—ତେଣେ ଅଛି ।

ବାବୁ—ତେଣେ ପୁଣି କୋଉଠି ?

ବୋଉ—ଓଃ ! କହିଲିତ ତେଣେ ଅଛି ।

ବାବୁ—କୋଉଠି ତେଣେ ଅଛି ? କ'ଣ ବାକ୍ସରେ ?

ବୋଉ—ମଲା ! ଜୋତା ହ'ଟାକୁ ବାକ୍ସରେ ନେଇ କାହିଁକି ରଖିବି ମ ? ସେ ଆଲମାରିକା ତାକିଆଟା ଭିତରେ ରଖିଦେଇଛି ।

ବାବୁ—ଛଃ ! କଟକ ସହରକୁ ଆସିଚ ବୋଲି ଏତେ ସଉକ୍‌ରେ ନୂଆ ଭେଲ୍‌ଭେଟ ଚଟି କଣା ହେଇଥିଲା କ'ଣ ଆଲି ମାରିକା ତାକିଲ ଭିତରେ ରଖାହବ ବୋଲି ! ନାଇଁ, ଇଏ—ତମେ ଏଇଠି ଆଣି ରଖ ।

ବୋଉ—ଭାରି ବୁଦ୍ଧି ତମର ! ଏଠି ରଖିଲେ ଲୋକେ କ'ଣ କହିବେ ? କହିବେ କଟକ ଆସି ନୂଆ ଚଟି ହଳେ କିଣିଚନ୍ତି ବୋଲି ଏଠି ସଜେଇ ରଖି ଦେଖେଇ ହଉଚନ୍ତି !

ବାବୁ—ଏଠିକା ଲୋକଙ୍କୁ ସେଣ୍ଡିକଟ ଦରକାର । ଲୋକେ ଏସବୁ ଦେଖି ଜାଣନ୍ତୁ ଯେ, ଏମାନେ କଟକିଆ ବାବୁ !! ଏମାନଙ୍କୁ ସହର ବଜାରରେ ଚଳିଆସେ ।···ଯାଅ ଚଟି ହଳକ ଆଣି ଏଇଠି ରଖ । ଏଠି ଏ ଗୃହଦ୍ୱାର ଜୋତା ଅଛି—ତମ ହଳକ ଆଣି ଠିକ୍ ମଝିରେ ରଖ, ଯାଅ । ପୁଣି ଠିଆ ହେଲ କାହିଁକି ?

ବୋଉ—ଯାଉଚି ହୋ ବାବୁ—ଏମିତି ଉଚ୍ଛନ୍ନ ହଉଚ କାହିଁକି ?

(ବିରକ୍ତ ହୋଇ ଭିତରକୁ ଗଲେ)

ବାବୁ—ଆଣିଲ ?

ବୋଉ—(ଆସୁ ଆସୁ) ମଲ, ଆଣୁ ଆଣୁ ତର ସହୁନାହିଁ ?

ବାବୁ—ହୁଁ, ରଖ ଏଇଠି—ଠିକ୍ ମଝିରେ ରଖ । ରୁହ ରୁହ, ଟିକିଏ ବ୍ରସ୍ଟା ମାରିଦିଏ ।

(ବ୍ରସ୍ କରି ସାରି ଯଥା ସ୍ଥାନରେ ରଖିଲେ)

ବୋଉ—ଏଇସବୁ କାମରେ ତମ ବେଳ ଯିବ ପରା ?

ବାବୁ—ଏଠି ବେଳ ଏମିତି ଯାଏ—ବୁଝିଲ ? ତାକୁ ଧରି ବାନ୍ଧିରଖି କାମରେ ଲଗେଇବାକୁ ପଡ଼ିବ ।

ବୋଉ—ମୁଁ ଯାଏଁ ଲୋ ମା—ତେଣେ ଡାଲି ବସେଇଥିଲି, କ'ଣ ହେଲା ଦେଖେ ।

ବାବୁ—ଡାଲି ବସେଇଲଣି ତ ?

ବୋଉ—ହଁ ।

ବାବୁ—ପାଞ୍ଚମିନଟ୍ । ପାଞ୍ଚମିନଟ୍‌ରେ ମୁଗ ହରଡ଼ କଥା କଏ ପଚ୍ଛରେ—କୋଳଥ ଡାଲି ବି ସିଝିଯିବ । ପାଇପ୍ ପାଣି ପରା !! ହଁ, ତମେ ଗାଧୋଇଲଣିଟି ?

ବୋଉ—ମଲ, ମୋ' ହାତରେ ଏଇନେ ଦୁନିଆ କାମ—ମୁଁ ପୁଣି ଏଇନେ ଗାଧୋଉଚି କୋଉଠି ?

ବାବୁ—ଆରେ ରେ ! ସେ ପାଠ ଏଠି ଚଳିବନାହିଁ । ଚଞ୍ଚଳ ଗାଧୋଇ ପଡ଼ । କଳ ବନ୍ଦ ହୋଇଯିବ ଯେ !

ବୋଉ—କାହିଁକି ଲେ ମା ? କଳ ପୁଣି ବନ୍ଦ ହବ କାହିଁକି ?

ବାବୁ—ଓଃ, କେଡ଼େ ପାଟିଟାଏ କରୁଚ ? ସେ ପାଖ ଘରବାଲା ଶୁଣିଲେ ଭାବବେ—ଏମାନେ କି ମୂର୍ଖ ! ସାଧାରଣ ଜ୍ଞାନ ଏମାନଙ୍କର ନାହିଁ !!···କଳ ନ'ଟା ବେଳେ ବନ୍ଦ ହୋଇଯିବ । ତମେ ଯାଅ, ଚଞ୍ଚଳ ଗାଧୋଇପଡ଼ ।

ବୋଉ—କି ହାଇରାଣରେ ତମେ ମତେ ପକେଇଲ ! ମୋ ରୋଷେଇ ଅଧା ହୋଇଚି । ମୁଁ ଏଇନେ ଗାଧୋଇ ପୁଣି ରୋଷେଇ ଘରେ ପଶି ଅଇଣ୍ଠା-ସଙ୍କୁଡ଼ି ହେବ ! ! ଏ କୂଅଟାରେ ତ ପୁଣି ପାଣି ନାହିଁ—ପୋତି ହୋଇ ପଡ଼ିଲାଣି ।

ବାବୁ—ଏ ଗୁରୁକ ଆଉ ମଣିଷ ହେବେ ନାହିଁ ! ଦେଖୁଚ ପାଣିକଳ ଲାଗିଚି – ତମର ପୁଣି କୂଅ ଖୋଜା ପଡ଼ୁଚି କାହିଁକି ?

ବୋଉ—ରୋଷେଇ ସାରି ନ ଗାଧୋଇଲେ ମତେ ଭଲ ଲାଗିବ ନାହିଁ । ଆଚ୍ଛା, ନ'ଟା ବେଳୁ ବନ୍ଦ ହୋଇ—ଏ ଦିନଯାକ କ'ଣ ଆଉ ମୋଟେ ପାଣି ଆସିବ ନାହିଁ ?

ବାବୁ—କିଏ କହିଲା ଆସିବ ନାହିଁ ? ବାରଟା ବେଳକୁ ଆସି ଦି'ଟାରେ ବନ୍ଦ ହବ – ପୁଣି ଚାରିଟାରୁ ଆସି ସାଢ଼େ ଛ' ଯାଏ ଚାଲିବ ! !···ଇଏ କଟକ ସହର ଟି ! !

(ଆମ୍ରପ୍ରସାଦରେ ଫୁଲ୍ ଉଠୁଥାନ୍ତି)

ବୋଉ—ତା'ହେଲେ ଆଉ ଚିନ୍ତା କ'ଣ ? ମୋର ତ ସକାଳ ଗାଧୁଆ ଅଭ୍ୟାସ ନାହିଁ । ମୁଁ ସେଇ ବାରଟା ବେଳକୁ ଗାଧୋଇବ ।

ବାବୁ—ଗାଧୁଆ ଘର ଦେଖିଚଟି—ସାୱାର୍ ପାଇପ୍ ଲଗିଚି ! ଝିର୍‌ଝିର୍ ପାଣିପଡ଼ ଦେହ ଖାଲି ଉଲୁସି ଉଠିବ ।

ବୋଉ—(ହସିହସି) ହଁ, ହଁ, ମୁଁ ଦେଖିଚି । ହଁ, ତମେ ବଜାରକୁ ଯିବ ନାହିଁକି ?

ବାବୁ—କାହିଁକି ?

ବୋଉ—ମାଛ ଆଣିବ ନାହିଁ ?

ବାବୁ—ସତେଟି ତ ! ବଜାରକୁ ଯିବାକୁ ହବ । ମୁଁ ଭାବୁଥିଲି ଏ ଫଟୋ—କାଲେଣ୍ଡର ସବୁକୁ ଏଇନେ କାନ୍ଥରେ ଟଙ୍ଗେଇବାକୁ । ହଃ ! ମୋର ତ ଆଉ ଦ'ଦିନ ଛୁଟି ଅଛି, ସେତେବେଳେ ଟିକେ ଡେରି ହେଲେ କିଛି ଚିନ୍ତା ନାହିଁ । ଆଗେ ଏ କାମ ସାରି-ଦେଇ ମାଛ ଆଣିବାକୁ ଯିବି ।

ବୋଉ—ଏଠି ଏବି କୁଆଡ଼େ ଭଲ ମହାନଦୀ ମାଛ ମିଳେ—ସେଇ ମାଛ ଦେଖି ଆଣିବ ।

ମାଛବାଲା—(ବାହାରୁ) ମାଛ—ମାଛ ନିଅ—ମାଛ !

ବାବୁ—ଦେଖୁଚ, ଇୟେ ! ଆସିଗଲା ।

ବୋଉ—କ'ଣ ?

ବାବୁ - ମାଛ । ଆଉ ବଜାରକୁ ଯିବାକୁ ପଡ଼ିବ ନାଇଁ । ଇଏ ଏମିତି ଗୋଟାଏ ଯାଗା— ଏଠି ସବୁ ଜିନଷ ଆସି ତମ ପାଦତଳେ ହାଜର ହବ । ଯାଅ, ମାଛ କିଣ ।

ବୋଉ—ମୁଁ କିଣିବି ?

ବାବୁ—ହଁ, ଏ ସବୁ କାମ ଏଠି ଘରଣୀମାନେ ଚଳାନ୍ତି । ଆରେ ମଣ୍ଟୁ, ସେ ମାଛ ବାଲାକୁ ଡାକ । ତମେ ଦରଦାମ କର— ମୁଁ ଏଇ ଫଟୋ କେଇଟା ଟଙ୍ଗେଇ ଦେଇ ଆସୁଚି ।

( ବାବୁ ଘରଭିତରକୁ ଗଲେ । ବାହାରୁ ମଣ୍ଟୁ ଓ ଡଲି ସାଥିରେ ମାଛବାଲା ଆସିଲା )

ବୋଉ—କ ମାଛ ଆଣିଚୁ ?

ମାଛବାଲ—ମାଛ କାହିଁ ମା ? ଇଏ ପରା ଖାଲି ଘିଅ ।

ମଣ୍ଟୁ—ଦୂର୍ ଦୂର୍ ! ଆମର ଘିଅ କ'ଣ ହବ ? ଘିଅ ଆମ ଘରେ ଢେର୍ ଅଛି ।

ମାଛବାଲ—(ହସି ହସି) କୁନ ବାବୁ, ନୂଆ କଟକ ଆସିଚ କି ? ଝୋଳେଇ ଦେଖେଇ ଏଇ ଦେଖ ମା, ବଚ୍ଛା ମହାନଦୀ ପୋହଡ଼ା !

ବୋଉ—ସତ କହୁଚୁ—ଏ ମହାନଦୀ ପୋହଡ଼ା ?

ମାଛବାଲ—ରୂପରୁ ଜାଣି ପାରୁନ ଯେ, ମତେ ପୁଣି ପଚାରୁଚ ? କହ୍ଵବଟି ମା, କେତେ ଦେବ ? ସେରେ ?

ମଣ୍ଟୁ—ମାଛ ତ ଆଣିଚୁ । ଘିଅ ବୋଲି କଣ କହୁଥିଲୁ ?

ମାଛବାଲ—ମା'ଙ୍କୁ ପଚାର, ସେଇ ବୁଝେଇ ଦେବେ । କରେଇରେ ପକେଇଲେ, ଖାଲି ଘିଅ ବୋହିଯିବ, ଘିଅ । ବୁଝିଲ ?

ବୋଉ—ସଜ ମାଛଟି ଲୋ ?

ମାଛ—ଆଖି ଫୁଟିଯିବ ମା ! ହେଇପରା, ହାତକୁ ହାତ ବେପାରୀଠୁ ଆଣି ଆଉଚ । ଏ ଯାଏଁ ବନ୍ଧନ କରନ ।

ଡଲି—ଘର ବଢ଼ିଆ ମାଛ ବୋଉ । ଦେଖୁନୁ, କେମିତି ଧୋବ ଫରଫର ଦିଶୁଚ ।

ବୋଉ—ଡାକବୁଟି ତୋ ବାପାଙ୍କୁ, ସେଇ ଆସି ଦେଖନ୍ତୁ ।

ମାଛ—ମଲି ! ତମେତ ଦେଖୁଚ, ବାବୁ ଫେଣେ ଆସି କଣ ଦେଖିବେ ? (ବାବୁ ଆସିଲେ)

ବାବୁ—କଣ ହେଇଚ ?

ବୋଉ—ଦେଖିଲ ଏ ମାଛ । ମୁଁ କଛି ଜାଣିପାରୁନ ।

ବାବୁ—ହଁ, ଏଇତ ନଈ ପୋହଡ଼ା ।

ମାଛ—ଦେଖିଲଣି ମା—ଚହ୍ଳିଲ୍ଲ ଲୋକ ଯେ, ଠକ କରି ଆସି ଚହ୍ଳିଦେଲେ ।

ବୋଉ—ଇଏ ସଜ ମାଛଟି ?

ବାବୁ—ତମେ ଦେଖି କଣ ବୁଝି ପାରୁନ ?

ବୋଉ—ହଁ, ଦେଖିବାକୁ ତ ଭାରି ତୋଫା ଦିଶୁଚି ।

ମାଛବାଲା—କଅଣ ଆଉ ମୁଁ କହିବ ?? ବେପାରୀ ଏ ଯାଏଁ ପଇସା ନେଇନ—ମୋ' ଦୁଆରେ ବଇଚି । ମା' ଫେଣେ କାହୁଚନ୍ତି···

ବାବୁ—ହଁ, ଦେ, ଅଧସେର ମାଛ ଦେ ।

ମାଛବାଲା—ହେଇନ୍ତି ମା । ନୂଆ ହେଇ ଏ ବସାକୁ ଆଇଚ ! ରୋଜ୍ ମୋଠୁଁ ମାଛ ଖାଇବ—ମୁଁ ପୁଣି ତମକୁ ଠକିବି ? ଦେଖ ମା, କେମିତି କାଠିପରି ହେଇଚି । ଯାକୁ ଏମିତି ଗୋଟି ଗୋଟି କରି ଭାଜି ବାବୁଙ୍କୁ ଖାଇବାକୁ ଦବ । ଦିଅ ବାବୁ, ମୋ ଦାମ ଦିଅ—ଦେଢ଼ଟଙ୍କା ।

ବାବୁ—ଦେଢ଼ଟଙ୍କା !

ମାଛବାଲା—ଆଖି ଫୁଟିଯିବ ବାବୁ—ଏ ବେପାରରେ ମୋର ପଇସାଟିଏ ଲାଭ ନାଇଁ ।

ବାବୁ—ହଉ ନେ, ଯା । କାଲି ପୁଣି ଆସିବୁ ।

ମାଛବାଲା—ସବୁଦିନେ ତ ଆସିବ ବାବୁ ! ଏ ବସାରେ ଯିଏ ରହିବ ସିଏ ମୋର ଗରାକ ।·ମାଛନଅ—ମାଛ । (ଡାକ ଡାକ ଚାଲିଗଲା)

ବୋଉ—ହଇଏ, ଏଇତକ ମାଛକୁ ଦେଢ଼ଟଙ୍କା ନେଇଗଲା ?

ବାବୁ—ହେଲେ ମାଛ କେମିତିକା କହିଲ ? କେମିତି ରୂପା କାଠି ପରି ଝକ୍ ଝକ୍ କରୁଚି ।

ବୋଉ—ହଁ ସେଇ ଲୋଭରେ ତ କଣିଲ । ମୁଁ ଡାଲ ଓହ୍ଲେଇ ଦେଇ ମାଛ ଭଜା ବସେଇବ । ତମେ ଝୁଅଙ୍କୁ ଡାକ ଗାଧୁଆ ପାଧୁଆ କର । ଦଶଟା ଆଗରୁ ସେଷେଇ ହୋଇଯିବ ।

ବାବୁ—ଆଚ୍ଛା, ଅଚ୍ଛା । ତମେ ଆଗେ ସେଷେଇ ସାର । ହଁ ଦେଖ, ମାଛକୁ ଗୋଟି ଗୋଟି କରି ଭାଜିବ । ଆରେ ମଣ୍ଟୁ, ଊଳ, ଆସ ତ ମୋ ସାଙ୍ଗରେ । କାଲ୍ଲରେ କଣ୍ଠା ଦାନ୍ତ । ପିଟିବାକୁ ହବ ।

— — —

## ଦ୍ୱିତୀୟ ଦୃଶ୍ୟ

(ମଣ୍ଟୁ ଓ ଡଲି ଖାଇ ବସିଚନ୍ତି)

ମଣ୍ଟୁ—ନାହିଁ ବୋଉ—ଭୁ କୋଉଠି ନୁଚେଇଚୁ ।

ବୋଉ—ଆରେ କୋଉଠି ଆଉ ନୁଚେଇଲି ? ଏଇ ପରା ତୋ ଆଗରେ ମାଛ କରେଇଟା ଥୁଆ ହୋଇଚି ।

ଡଲି—କରେଇରେ ଗୋଟିଏ ବି ଗୋଟା ମାଛ ନାହିଁ ?

ବୋଉ—କାହିଁ ? ଏଇ ଦେଖୁନୁ—ସବୁ ଭାଙ୍ଗି ଗୁଣ୍ଡଗୁଣ୍ଡା ହୋଇ ଯାଇଚି । ମାଛ ଅଲଗା—କଣ୍ଟା ଅଲଗା ।

ଡଲି—କାହିଁକି ଏମିତି ହେଲା ?

ବୋଉ—ମୁଁ ଜାଣିଚି ? ପୋଷ ପୋଷ ତେଲ ଦେଇ ଏତେ ହୁସିଆରରେ ଭାଜିଲି—ତେବେ ବି ତ ସବୁ ଗୁଣ୍ଡା ହୋଇଗଲା ···କରେ ମଣ୍ଟୁ ଖା । ଏମିତି ହାତ ଠେକ ବସିଲୁ କାହିଁକି ? ମୁଣ୍ଡ ତ ଭାଙ୍ଗି ଯାଇନି—ମୁଣ୍ଡ ଚୋବେଇ କରି ଖା—ଉପକାର ହବ ।

ମଣ୍ଟୁ—ଯୋଉ ତ ଉପକାର ! ମାଛ ତ ନାହିଁ—ଖାଲି ମୁଣ୍ଡ ଖାଇବ ! (ଖାଇଲା) ଥୁ-ଥୁ ! ଇସ୍‌ଲେ ବୋଉ—ମୁଣ୍ଡ ଖାଲି ପଚୁଗନ୍ଧ ହଉଚି !

ବୋଉ—ପଚୁ ଗନ୍ଧ ?

ଡଲି—ହଁ ବୋଉ, ସୁଦ୍ ପଚୁ । ଖାଇ ହଉନି ।

ବୋଉ—ସେଇକଥା ପରା ! ଏ ମାଛ କାଟିଲା ବେଳେ ଟୋପାଏ ବି ରକ୍ତ ବାହାରୁ ନ ଥାଏ । ମୁଁ କହିଲିକି—ଏ କେମିତିକା ମହାନଦୀ ମାଛ—ରକ୍ତ ଟିକିଏ ବି ବାହାରୁ ନାହିଁ ! ସିଏତ ବାସି ମାଛଗୁଡ଼ାକ ଠକି ଦେଇ ଯାଇଚି—ରକ୍ତ କୋଉଠୁ

ବାହାରେବ ? ଆସନ୍ତୁ ଚେଷ୍ଟା ବାପା—ଚକ୍‌ଚକ୍ ରୂପା କାଠି ପର କେମିତିକା ସଜ ମହାନଦୀ ମାଛ କଣିଥିଲେ—

ବାବୁ—(ବାହାରୁ) ଆରେ ମଣ୍ଟୁ—ଡଲି ! କୁଆଡ଼େ ସବୁ ଗଲ ?

ବୋଉ—ତମେ ଏଇଠିକି ଆସ—ଏଇ ବୋଷେଇ ଘରକୁ ।

(ବାବୁ ଆସିଲେ)

ବାବୁ—କ'ଣ, ବୋଷେଇ ସରିଲାଣି ତ ? ବଡ଼ାବଡ଼ି କର । କ'ରେ ମଣ୍ଟୁ—ଏମିତି ମୁହଁ ଆମ୍ବିଳା କରି ବସିଚୁ କାହିଁକି ?

ମଣ୍ଟୁ—ଗନ୍ଧ ।

ବାବୁ—କ'ଣ ଗନ୍ଧ ?

ଡଲି—ମାଛମୁଣ୍ଡ । ସବୁଯାକ ମାଛ ପଚ୍ଚୁ ।

ବାବୁ—କ'ଣ ହେଲା ? ହାତକୁ ହାତ ପଚ୍ଚମାଛ ଠକ ଦେଇଗଲା !

ବୋଉ—ତମେ ସେତିକବେଳୁ ଯାଇଁ କୋଉଠି ଥିଲ ?

ବାବୁ—ସେ ଛକ ଉପର ମିଶ୍ର ବାବୁଙ୍କ ଘରେ ଯାଇ ଟିକଏ ଗପ କରୁଥିଲି । ସତରେ ଏ ମାଛ ପଚ୍ଚ ପଡ଼ିଲା ?

ବୋଉ—ଝବାକ୍ । ଗୋଟା ମାଛ ଭଜା ବରାଦ କରିଥିଲ ପରା ! ଏଇ ଦେଖ—ସବୁଯାକ ମାଛ ଭାଙ୍ଗି ଗୁଣ୍ଡା ହେଇ ଯାଇଚି ।

ବାବୁ—କଣିଲା ବେଳେ ତ କାଇଁ ସେମିତି ଜଣାପଡ଼ୁ ନଥିଲା ।

ବୋଉ—ହଁ ପରା । କଣିଲାବେଳେ କଣ୍ଟୁ ଜଣା ପଡ଼ିଲା ନାହିଁ । ମୁଁ ମାଛ ବାଚୁଥିଲି—ସେମିତି କଣ୍ଟୁ ବୁଝିପାରିଲି ନାଇଁ । ଭଜା ବସିଲା ବେଳକୁ ଦେଖେତ ଗୋଟାଏ ବୋଲି ସଜ ମାଛ ନାହିଁ ।

ବାବୁ—କରେ ମଣ୍ଟୁ, ଡଲି, ଆଜ ଖାଇବ ନାଇଁ ?

ମଣ୍ଟୁ, ଡଲି }—ନା (ଦୁହେଁ ହାତ ଧୋଇ ବାହାରିଲେ)

ବାବୁ—କୁଆଡ଼େ ପୁଣି ଯାଉଚ ?

ଝିଲ୍ଲି—ଆମେ ଦାଣ୍ଡ ଦୁଆର ମୁହଁରେ ଠିଆ ହୋଇ ରାସ୍ତାର ଦୃଶ୍ୟ ଦେଖିବୁ ବାପା । ଆ'ରେ ମଣ୍ଟୁ ।

ମଣ୍ଟୁ—ଚାଲ । (ଦୁହିଙ୍କର ପ୍ରସ୍ଥାନ)

ବାବୁ—ମନ ଲାଗିଚ ! ଗାଡ଼ି, ଘୋଡ଼ା, ରିକ୍ସା, ମଟର, ଦେଖିବାକୁ ପିଲା ଦୁହିଁଙ୍କର ମନ ଖୁବ୍ ଲାଗିଚ !

ବୋଉ—ସେ ମାଛବାଲା କୁଆଡ଼େ ଗଲା, ତମେ ଯାଇ ଦେଖିବଟି ! ସେର ତିନିଟଙ୍କା ନେଇ ଏ ସଢ଼ା ମାଛଗୁଡ଼ିକ ଠକି ଦେଇଗଲା ।

ବାବୁ—ବୁଝିଲି ।

ବୋଉ—କ'ଣ ?

ବାବୁ—ଏ ବରଫ ଦିଆ ମାଛ ।

ବୋଉ—ଓ, ସେଇଥିପାଇଁ ଉପର ଦେଖିବାକୁ ଏମିତି ଚକ୍ ଚକ୍—ଭିତରେ ପଚା !

ବାବୁ—ଏଇନେ ମିଶ୍ରବାବୁ ପରା କହୁଥିଲେ—ଆଜିକାଲି କଟକ ସହରରେ ତଟକା ମାଛ ମିଳିବା ମୁସ୍କିଲ୍ । ସବୁ ବରଫ ଦିଆ ।

ବୋଉ ମୁଁ ଆଉ ଯିବି କୁଆଡ଼େ ଲୋ ମା ? ସେ ମାଛବାଲା ତିନିଥର ଆଖିକୁ ଲିଁ ନୟନ କରି ଯାଇଚ !

ବାବୁ—ଗୁଡ଼ । ସେଥିକୁ ଆଉ ମିଳିବ କ'ଣ ? ଦିଅ, ବଡ଼ାବଡ଼ି କର । ମୁଁ ଜାଣେ,ବରଫ ଦିଆ ମାଛ ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକର ନୁହେଁ ।

ବୋଉ—ତମେ ତ ସ୍ୱାସ୍ଥ୍ୟ ପାଇଁ ମାଛ ଖାଅ ନାହିଁ, ପାଟି ସୁଆଦ କରିବାକୁ ଖାଅ ।

ବାବୁ—ସେଇ କଥା ତ । ପାଟି ସୁଆଦ ଚା'ହେଲେ ଆଜ ଆଉ ହେଇ ପାରବ ନାହିଁ ?

ବୋଉ—ପଟୃମାଛ ବୋଲି ଆମ୍ବୁଲ ପକେଇ ମହୁର କରଚ ।

ବାବୁ—ସତେ ! ଆଉ ତା'ହେଲେ ଚିନ୍ତା କ'ଣ ? ପଟୃମାଛରେ ଖଟା ପଡ଼ ରନ୍ଧାହେଲେ ତା'ର ଗୋଟାଏ ସ୍ୱତନ୍ତ୍ର ସ୍ୱାଦ ଥାଏ । ଦିଅ ବଡ଼ାବଡ଼ି କର ।

[ମଣ୍ଟୁ ଓ ଡଲି ପୁଣି ଅସିଲେ]

ମଣ୍ଟୁ—ବାପା—ବାପା ।

ବାବୁ—କ'ଣ ହେଲା ମଣ୍ଟୁ ?

ମଣ୍ଟୁ—ଗୋଟାଏ ମଟର—

ବାବୁ—ତୁ ମଟର ଦେଖିନୁ ନା କ'ଣ ? କଟକ ସହରରେ ତ ଶହଶହ ମଟର ଯିବାଆସିବା କରୁଚ । ପୁଣି ଆମର ଏ ଯୋଉ ରାସ୍ତାଟା—ବୁଝିଲନା ଇପ୍ସେ—ଏ ରାସ୍ତାଟାରେ ସବୁବେଳେ ଗାଡ଼ି ମଟର ଯାଆସ ଲଗି ରହିଚ । ଏଇଟା ଗୋଟାଏ ମେନ୍-ରୋଡ୍ ନା ! !

ବୋଉ—ମଣ୍ଟୁ କ'ଣ କହୁଥିଲା—ତା କଥା ଶୁଣ ।

ଡଲି—ମୁଁ କହୁଚ ବାପା, ଶୁଣ । ଗୋଟାଏ ମଟର - ନାଇଁ ନାଇଁ ଗୋଟାଏ ଜିପ୍—

ମଣ୍ଟୁ—ଗୋଟାଏ ନୁହେଁ ବାପା—ଦି'ଟା ।

ଡଲି—ନାଇଁ ବାପା ଗୋଟାଏ ଜିପ୍—ଗୋଟାଏ ଟ୍ରକ୍ ।

ବାବୁ—ଆରେ, କ'ଣ ହେଲା କହ ।

ମଣ୍ଟୁ—ଟ୍ରକ୍‌ଟା ଏଣୁ ଆସୁଥିଲା—ଜିପ୍‌ଟା ତେଣୁ ଆସୁଥିଲା ।

ବାବୁ - ହେଲା କ'ଣ ? ଧକ୍‌କା ହେଲା ?

ଡଲି—ନାଇଁ ବାପା, ଧକ୍‌କା ନୁହେଁ । ଜିପ୍‌ଟା—ନାଇଁ ନାଇଁ—

ବାବୁ—କଳଟା ଭଲକରି ଖୋଲିଦିଅ । ହଁ, ଏଇପରି ପାଣି ଆସିଲା ।
ବୋଉ—ଏମିତି ସରୁ ଧାରରେ ଆସିବ ? ସକାଳେ କେମିତି ଭୁସ୍ ଭୁସ୍ ହୋଇ ପାଣି ଅଜାଡ଼ ହୋଇ ପଡ଼ୁଥିଲା !!
ବାବୁ—କି ମୁସ୍କିଲ ! କଳଟା ପୂରା ଖୋଲିଦିଅ
ବୋଉ—ଆଉ କେମିତି ଖୋଲିବି ? ଏଇ ଦେଖ, ଏକାବେଳେକେ ପୂରା ଖୋଲା ହୋଇଛି ।
ବାବୁ—ସତେ ତ । ପାଣିର ଫୋର୍ସ ତେବେ କମିଲା କାହିଁକି ? ଆଉ କଣ ମଟର ଧକ୍କାରେ କିଛି ଗୋଳମାଳ ହେଲା ? ମୁଁ ତେଣେ ଦେଖେ । (ଉଠି ହାତ ଧୋଇଲେ, ମଣ୍ଟୁ ଆସିଲା)
ମଣ୍ଟୁ—ବାପା ତମକୁ କିଏ ଡାକୁଚନ୍ତି ।
ବାବୁ—କିଏ ଡାକୁଚନ୍ତି ? ଚାଲ୍ (ପ୍ରସ୍ଥାନ)

———

## ତୃତୀୟ ଦୃଶ୍ୟ

( ସଦର ଦରଜାରେ ଜଣେ ମିସ୍ତ୍ରୀ ଠିଆ ହୋଇଛି । ବାବୁ ଆସିଲେ)

ମିସ୍ତ୍ରୀ—ନମସ୍କାର ଆଜ୍ଞା ।

ବାବୁ —ନମସ୍କାର । କିଏ ? ଚିହ୍ନି ପାରିଲି ନାହିଁ ।

ମିସ୍ତ୍ରୀ – ମୁଁ ପାଣି ପାଇପ ଇଲାକାର ମିସ୍ତ୍ରୀ ।

ବାବୁ—ଓ, ମିସ୍ତ୍ରୀ ! ଭଲ ହୋଇଛି, ତମେ ଆସିଛ । ଟିକିଏ ଭାଇ ଦେଖିତ, ଆମ ପାଣି ପାଇପ୍ ଟା ··

ମିସ୍ତ୍ରୀ—ମୁଁ ଦେଖିଛି, ଆପଣଙ୍କ ପାଇପ୍ ଫାଟି ଯାଇଛି ।

ବାବୁ—ଫାଟି ଯାଇଛି !! (ଗମ୍ଭୀର ସ୍ୱରରେ) କାହିଁ, କେଉଁଠି ?

ମିସ୍ତ୍ରୀ—ମାଟି ଭିତରେ ଫାଟିଛି । ଏଇ ଦେଖୁନାହାନ୍ତି—ମାଟିଭେଦି ଏଠି ପାଣି କେମିତି ଉପରକୁ ଉଠୁଛି ।

ବାବୁ—ଓ, ସେଇ ସକାଶେ ତା'ହେଲେ ଆମ ପାଇପ୍‌ରେ ପାଣିର ଫୋର୍ସ କମିଯାଇ ଅଳ୍ପ ଅଳ୍ପ ପାଣି ଆସୁଛି ।

ମିସ୍ତ୍ରୀ – ପାଇପ୍ ଯେମିତି ଫାଟିଛି ଆପଣଙ୍କ ଘରକୁ ତ ଆଦୌ ପାଣି ଯିବାର କଥା ନୁହେଁ । ତେବେ ମାଟି ତଳେ ପାଇପ୍‌ଟା ଫାଟିଛି ବୋଲି, ଯାହା କିଛି ପାଣି ଆପଣ ପାଉଛନ୍ତି ।

ବାବୁ—ହଉ ବାବୁ, ଯାହା ହବାର ହେଲାଣି—ଟିକିଏ କ'ଣ ଦେଖି ମରାମତି କରିଦେଲେ ଭାରି ଉପକୃତ ହୁଅନ୍ତି ।

ମିସ୍ତ୍ରୀ—ଆମେତ ପାଇପ୍ ମରାମତି କରିବାକୁ ଆସିନୁ ।

ବାବୁ—ଆଉ ?

ମିସ୍ତ୍ରୀ—ଆପଣଙ୍କ ଲାଇନ୍‌ଟାକୁ ଏକାବେଳକେ କାଟିଦବାକୁ ଆସିଚୁ ।

ବାବୁ—କ'ଣ ହେଲା ? ଲାଇନ୍ କାଟିଦବ ? ବର୍ତ୍ତମାନ ?

ମିସ୍ତ୍ରୀ—ହଁ ।

ବାବୁ—କି ଅସମ୍ଭବ କଥା ସ୍ୱେ ! ଆରେ ଇଏ···କୁଆଡ଼େଗଲ—ଶୁଣୁଛ ? ( ଡଲି ବୋଉ ଆସିଲେ )

ବୋଉ—କ'ଣ ?

ବାବୁ—ଆରେ, ମୁହଁକୁ ଅନେଇ ଠିଆ ହେଲ କ'ଣ ? ଯାଅ ଚଞ୍ଚଳ ଗାଧୋଇପଡ଼ ।

ବୋଉ—ଯାଉଚି ତ । ତମେ ଏମିତି ହଉଚ କାହିଁକି ?

ବାବୁ—ଆଜି କଥା କହିବାକୁ ବେଳ ନାହିଁ । ଏଇନେ ପାଇପ୍‌ଲାଇନ କଟିଯିବ ।

ବୋଉ—କ'ଣ କହୁଚ ? ପାଇପ୍ ଲାଇନ୍ କଟିଯିବ ! କାହିଁକି ମ ? ଆମେ ଘରଭଡ଼ା ପାଇଁ ଟଙ୍କାଦବୁ—ପାଣି ପାଇପ୍ ପାଇଁ ଟଙ୍କା ଦବୁ—ଲାଇନ୍ କଟିଯିବ କାହିଁକି ?

ବାବୁ—ଓହୋ ! ସେ କୈଫିୟତ୍ ଦବା ନବାର ବେଳ ସ୍ୱେ ନୁହେଁ । ତମେ ଆଗ ତମ କାମ ଶେଷ କଲ । କି ଅବସ୍ଥାରେ ମଣିଷ ପଡ଼ିଲା !! ହଇଏ ମିସ୍ତ୍ରୀବାବୁ !

(ଡଲିବୋଉ ଭିତରକୁ ଗଲେ)

ମିସ୍ତ୍ରୀ—କ'ଣ କହୁଚନ୍ତି ?

ବାବୁ—ସତରେ ତମେ ଲାଇନ୍‌ଟା କାଟିଦେବ ?

ମିସ୍ତ୍ରୀ—ଏଇଟାପରି ଆଇନ କାନୁନ୍ କଥା ବାବୁ ! ଆପଣ ଶିକ୍ଷିତ ଲୋକ ହୋଇ ବୁଝି ପାରୁନାହାନ୍ତି ? ଆମେ ଲାଇନ୍ କାଟିଦେଇ ଯିବୁ । ଆପଣ ପାଇପ୍ ମରାମତି କରି ଡିପାର୍ଟମେଣ୍ଟକୁ ଜଣାଇଲେ, ପୁଣି ଲାଇନ୍ ମିଳିବ ।

ବାବୁ—ଆଚ୍ଛା ମିସ୍ତ୍ରୀଏ, ଆଜି ଦିନଟା ସମ୍ଭାଳି ନେଇ ପାରନ୍ତ ନାହିଁ ।

ମିସ୍ତ୍ରୀ—ମୁଁ ସିନା ସମ୍ଭାଳ ନେବ—ହେଲେ ଆଜ୍ଞା, ଏ ମୋବାଇଲ କୋର୍ଟ !!

ବାବୁ ମୋବାଇଲ କୋର୍ଟ ?

ମିସ୍ତ୍ରୀ - ହଁ, ଆଜ୍ଞା । ମୋବାଇଲ କୋର୍ଟ । ଯଦି ଦେଖିବନା ପାଇପ୍ ଫାଟି ରାସ୍ତା ଉପରକୁ ପାଣି ବାହାରୁଚ—ତେବେ ସାଙ୍ଗେ ସାଙ୍ଗେ ପଚିଶ ଟଙ୍କା ଜରିମାନା । ଆଚ୍ଛା, ଆପଣଙ୍କର ଏ ପାଇପ୍ କେତେବେଳେ ଫାଟିଲା ?

ବାବୁ—ଏଇତ ଏଇ ଟିକଏ ଆଗରୁ । ଗୋଟାଏ ମଟର ଧକ୍କାରେ ପାଇପ୍ ଫାଟିଚ ।

ମିସ୍ତ୍ରୀ—କି ଯୋଗ ଦେଖିଲେ ! ଏମିତି ଫଟା ପାଇପ କ'ଣ ଏ ଟାଉନରେ କୋଉଠି ନ ଥିବ ? ହେଲେ ଆପଣଙ୍କ ପାଇପ ଫାଟିବା ବେଳକୁ ଆମ ସାହେବ ଏଇ ବାଟେ ଯାଉଥିଲେ । ଆଖି ପଡ଼ିଗଲା । ଆମକୁ ସବୁ ଜିପ୍‌ରୁ ଓହ୍ଲେଇ ଦେଇ ଅର୍ଡ଼ର ଦେଇଗଲେ—ସାଙ୍ଗେ ସାଙ୍ଗେ ଲାଇନ୍ କାଟି ଦବାକୁ । କରେ ହରି, ତମ ଖୋଳା ସରିଲା ? ହଉ, ଉଠି ଆସ—ମୁଁ ଏଥର ମୋ କାମ କରେ । (ମିସ୍ତ୍ରୀ କାଟିବାକୁ ଗଲେ)

ବାବୁ—କ'ଣ ମିସ୍ତ୍ରୀ କାଟୁଚ ?

ମିସ୍ତ୍ରୀ—ହଁ, ଆଜ୍ଞା କାଟିଲି ।

ବାବୁ—କି ବିପଦ ! ଏଣେ P.W.D. ସାହେବ—ତେଣେ ମୋବାଇଲ କୋର୍ଟ ! ଏତକବେଳକୁ ପୁଅ'ଙ୍କର ପୁଣି ଗାଧୁଆ ସରିନାହିଁ । କଣ ଶୁଭୁଚ—ଆରେ ହେ ଗାଧୁଆ ଘରେ ଅଛ ନା କୁଆଡ଼େ ଗଲ ମ ·

ବୋଉ—କାହିଁକି ପାଟିଟା କରୁଚ ! (କହୁକହୁ ଆସିଲେ)

ବାବୁ—ଗାଧେଇ ସାରିଚ ତ ?

ବୋଉ—ଓଃ ! ଏକାବେଳକେ ଗଙ୍ଗା ସ୍ନାନ କରିଚନା ! ! ଏଇପରି, ଏମିତି ହାତରେ ତଉଲିଆ ଧରି ବସିଚ । ଆଉ ମୂଳରୁ ପାଣି ଆସୁନି ।

ବାବୁ—ଆଉ ଆସିବ ବି ନାହିଁ ।

ବୋଉ—କି ଯୋଗରେ ଆଜ ଗୁଡି ପାହିଥିଲି କେଜାଣି—ମଣିଷ ଟିକଏ ଗାଧୋଇ ପାରିଲି ନାହିଁ ।

(କାନ୍ଦୁଥାଆନ୍ତି)

ବାବୁ—ତମେ ଏମିତି କାନ୍ଦୁଚ କାହିଁକି ?

ବୋଉ—ନାଇଁ, କାନ୍ଦିବି ନାହିଁ ହସିବି ! ଯାଇ ଦେଖ ଭଲା, କୋଉଠି ପୋଖରୀ ଗାଡ଼ିଆ ଥିବ –ମୁଁ ଗାଧୋଇପଡ଼ି ଆସେ ।

ବାବୁ—ପୋଖରୀ ! ଏଇପରି, ଆମଘର ପଛଆଡ଼େ ଗୋଟାଏ ପୋଖରୀ ଅଛି । ଚାଲ ସେଇଠିକି ଚାଲ ।

ବୋଉ—କ'ଣ ହେଲି ? ସେ ପୋଖରୀ ଚାରିପାଖ ଯାକ ପରି ଦଶ କି ପଚିର ପାଇଖାନା । ସବୁ ମଇଳା ପାଣିଯାକ ସେଇ ପୋଖରୀରେ ଆସି ପଶୁଚି । ମୁଁ ସେଇ ପୋଖରୀକୁ ଯିବି ? ମୋର ଦର୍କାର ନାଇଁ । ମୁଁ ଆଜ ଏମିତି ଅଗାଧୁଆ ଅଖିଆ ରହିବି ।

ବାବୁ—ଘରକୁ ଘରଣୀଟିଏ ତମେ ହେଇଚ—ତମର କ'ଣ ଟିକଏ ଆଗଚଲା ବୁଦ୍ଧି ଅଛି ? ସକାଳୁ ଦି'ଚାରି ବାଲ୍‌ଟି ପାଣି ରଖି ଦେଇ ନ ଥାନ୍ତ ?

ବୋଉ—ମୋ ରାଗ ଜଳାନା କହି ଦଉଚ । ମୁଁ ଜାଣିଥିଲି ଠିକ୍ ମୋ ରି ଗାଧୁଆ ବେଳକୁ ଯୁଆଙ୍କ ପାଣି ପାଇପ୍ ମତେ ଦଗାଦବ ଯେ, ମୁଁ ଆଗଚଲା ହେଇ ସବୁକାମ କରିଥାନ୍ତି ।···ଆଉ, ପାଣି ରଖିଥାନ୍ତି କୋଉଠି ? ମୋ ମୁଣ୍ଡରେ ? କଟକ ବସାରେ

ପାଣି ପାଇପି ଲଗିଚ ବୋଲ ଡ ଢ଼' ଢ଼'ଠା ଟବ୍ କୋରେଇରେ ଫୋପାଡ଼ ଦେଇ ଆସିଲ । ଆଉ ଏଇନେ ବାହାଣଚନ୍ଦ୍ର ମତେ ବୁଦ୍ଧି ଶିଖେଇବାକୁ ।

ବାବୁ—ଗୁଡ଼ । ମୁଁ ତ ନିଜେ ବୁଦ୍ଧି ଶିଖିଲଣି—ତମକୁ ଆଉ ବୁଦ୍ଧି ଶିଖେଇବ କ'ଣ ? ଆରେ ମଣ୍ଟୁ ।

ମଣ୍ଟୁ—ଆଜ୍ଞା ।

ବାବୁ—ଆଇଲୁ ବାବା, ମୋ ସାଥିରେ ! ସେ ବାଲ୍‌ଟିଟା ଧ' । ଛକ ଉପର ପାଣି କଳରୁ ଦ'ବାଲ୍‌ଟି ପାଣି ଆଣିବା ।

ବୋଉ—ତମେ ପାଣି ଆଣିଲେ ମୁଁ ଗାଧୋଇବ ?

ବାବୁ—ଦେଖୁନ ତ—ଆଉ ପଚାରୁଚ କ'ଣ ?

ବୋଉ—ହଉ ହେଲା—ମୁଁ ଏଇଠି ଏମିତ ବସି ରହିଲ ।

ବାବୁ—ଚାଲ୍ ମଣ୍ଟୁ, ଚାଲ୍ ।

(ବାଲ୍‌ଟି ଧରି ଦୁହେଁ ଗଲେ)

ବୋଉ—(ଓଦା ମଶାଣ୍ଟା ଆଣି) ଆଲୋ ଉଲି !

ଉଲି—କ'ଣ ବୋଉ ?

ବୋଉ—ଆ ାଲୁମା, ଏ ମଶାଣ୍ଟା ଟିକଏ ଶୁଖେଇ ଦବା ।

ଉଲି—ମଶାଣ୍ଟା ପରା ବୋଉ ଧୂଆ ହେଇନ ?

ବୋଉ—ପାଣିତ ଗଲାଣି, ଆଉ ଧୂଆ ହଉଚ ? ଏମିତ ଚୁପୁଡ଼ି ଶୁଖେଇଦବା ।

ଉଲି—ସାବୁନ ଗନ୍ଧ ବାହାରୁଚ ପରା ! ଏଇ ମଇଳା ପାଣିଗୁଡ଼ାକ ବାହାରୁଚ ।

ବୋଉ—ହଉ, ତା'ହେଲେ ରଖ । ତୋ ବାପା ଏ କାମ କରିଚନ୍ତି ସେଇ ପାଣି ବୁହାଇଆଣି ଧୂଅନ୍ତୁ ।

ଉଲି—ଏଇଲୋ ବୋଉ ବର୍ଷା ପକାଇଲାଣି ।

(ମଣ୍ଟୁ ଅସିଲ)

ମଣ୍ଟୁ—ବୋଉ—

ବୋଉ—କରେ । ପାଣି ଆଣିଲ ?

ମଣ୍ଟୁ—ନାହିଁ ବୋ'ଉ । ଛତା ପାଇଁ ଆସିଚି । ଛତା କାହିଁ ?

ବୋଉ—ପାଣି ବ'ଦାଲ୍‌ଟି ନେଇ ତ ଗ୍ଲାଲ ଆସିବ, ଛତା ପୁଣି କଣ ହବ ?

ମଣ୍ଟୁ—ପାଣି ଆଣିବୁ କେମିତି ? ଆମେ ଗଲାବେଳକୁ ପଦ୍ମ କଲ ପାଖରେ ଦଶକ ପନ୍ଦର ଲୋକ ଧାଡ଼ିବାନ୍ଧ ଠିଆ ହେଇଚନ୍ତି । ଆମ ପାଳି ଯାଇ କେତେ ପଛରେ ପଡ଼ିବ । ଏଣେ ବର୍ଷା ଆଇଲାଣି—ଛତା ନ ନେଲେ ସେଠି ଠିଆ ହେବୁ କେମିତି ? ଆଣେ ଅପା, ଛତାଟା କାହିଁ ଦେ ।

ଉଜଳ—ଏଇ ପଦ୍ମ ସେ ଆଲମାରେ ଟଙ୍ଗା ହେଇଚି ।

(ମଣ୍ଟୁ ଛତା ଆଣିଲା)

ମଣ୍ଟୁ—ମୁଁ ଯାଉଚି ବୋଉ । (ପ୍ରସ୍ଥାନ)

ବୋଉ ତୁ ତୋର ଯାଉଥା । ମୁଁ ଆଉ ଏମିତି ଅଗାଧୁଆ ବସି ପାରିବି ନାହିଁ, ଯାଉଚି—ଏ ବର୍ଷା ପାଣିରେ ଗାଧୋଇବି ।

ଉଜଳ—ସତରେ ବୋଉ, ତୁ ବର୍ଷା ପାଣିରେ ଗାଧୋଇବୁ ? ତୋ ଦେହ ଖରାପ ହବ ଯେ ?

ବୋଉ—ହେଲେ ହବ । ମୋ ଦେହ କଣ୍ଟ କଣ୍ଟ ହେଲାଣି—ମୁଁ ଆଉ ବସି ରହି ପାରିବ ନାହିଁ । ଏଇ ବର୍ଷା ପାଣିରେ ଗାଧୋଇବି ।

(ଭିତରକୁ ଗଲେ)

———

ପାଣି ପାଇପି ଲଗିଚ ବୋଲ ତ ଢ' ଢ'ଠା ଠବ୍ କୋରେଇରେ ଫୋପାଡ଼ ଦେଇ ଆସିଲ । ଆଉ ଏଇନେ ବାହ୍ୱାରଚନ୍ତ୍ର ମତେ ବୁଦ୍ଧି ଶିଖେଇବାକୁ ।

ବାବୁ—ଗୁଡ଼ । ମୁଁ ତ ନିଜେ ବୁଦ୍ଧି ଶିଖିଲଣି—ତମକୁ ଆଉ ବୁଦ୍ଧି ଶିଖେଇବ କ'ଣ ? ଆରେ ମଣ୍ଟୁ ।

ମଣ୍ଟୁ—ଆଜ୍ଞା ।

ବାବୁ—ଆଇଲୁ ବାବା, ମୋ ସାଥିରେ ! ସେ ବାଲ୍ଟିଠା ଧ' । ଛକ ଉପର ପାଣି କଲରୁ ଢ'ବାଲ୍ଟି ପାଣି ଆଣିବା ।

ବୋଉ—ତମେ ପାଣି ଆଣିଲେ ମୁଁ ଗାଧୋଇବ ?

ବାବୁ—ଦେଖୁନ ତ—ଆଉ ପଚରୁଚ କ'ଣ ?

ବୋଉ—ହଉ ହେଲ—ମୁଁ ଏଇଠି ଏମିତ ବସି ରହିଲ ।

ବାବୁ—ଚାଲ୍ ମଣ୍ଟୁ, ଚାଲ୍ ।

(ବାଲ୍ଟି ଧର ବୁହେଁ ଗଲେ)

ବୋଉ—(ଓଦା ମଶାଣ୍ଠିଠା ଆଣି) ଆଲେ ଊଲ !

ଊଲ—କ'ଣ ବୋଉ ?

ବୋଉ—ଆଇଲୁମା, ଏ ମଶାଣ୍ଠିଠା ଟିକଏ ଶୁଖେଇ ଦବା ।

ଊଲ—ମଶାଣ୍ଠିଠା ପର ବୋଉ ଧୁଆ ହେଇନ ?

ବୋଉ—ମାଣିଚ ଗଲ୍ଣି, ଆଉ ଧିଆ ହଉଚ ? ଏମିତ ଚୁପୁଡ଼ି ଶୁଖେଇଦବା ।

ଊଲ—ସାବୁନ ଗନ୍ଧ ବାହାରୁଚ ପର ! ଏଇ ମଇଲା ପାଣିଗୁଡ଼ାକ ବାହାରୁଚ ।

ବୋଉ—ହଉ, ତା'ହେଲେ ରଖ । ତୋ ବାପା ଏ କାମ କରଚନ୍ତି ସେଇ ପାଣି ବୁହାଇଆଣି ଧୁଅନ୍ତୁ ।

ଊଲ—ଏଇଲେ ବୋଉ ବର୍ଷା ପକାଇଲଣି ।

(ମଣ୍ଟୁ ଅସିଲ)

ମଣ୍ଟୁ—ବୋଉ—

ବୋଉ—କରେ । ପାଣି ଆଣିଲ ?

ମଣ୍ଟୁ—ନାଇଁ ବୋ'ଉ । ଛତା ପାଇଁ ଆସିଚ । ଛତା କାଇଁ ?

ବୋଉ—ପାଣି ଢ଼'ବାଲ୍‌ଟି ନେଇ ତ ଗୃଲ ଆସିବ, ଛତା ପୁଣି କଣ ହବ ?

ମଣ୍ଟୁ—ପାଣି ଆଣିବୁ କେମିତି ? ଆମେ ଗଲାବେଳକୁ ପଗ୍ କଳ ପାଖରେ ଦଶଙ୍କ ପନ୍ଦର ଲେକ ଧାଡ଼ିବାନ୍ଧି ଠିଆ ହେଇଚନ୍ତି । ଆମ ପାଳ ଯାଇ କେ୍ୌତ ପଛରେ ପଡ଼ିବ । ଏଣେ ବର୍ଷା ଆଇଲ୍ଣି—ଛତା ନ ନେଲେ ସେଠି ଠିଆ ହେବୁ କେମିତି ? ଆଲେ ଅପା, ଛତାଟା କାଇଁ ଦେ ।

ଡଲି—ଏଇ ପଗ୍ ସେ ଆଲନାରେ ଟଙ୍ଗା ହେଇଚ ।

(ମଣ୍ଟୁ ଛତା ଆଣିଲା)

ମଣ୍ଟୁ—ମୁଁ ଯାଉଚ ବୋଉ । (ପ୍ରସ୍ଥାନ)

ବୋଉ ତୁ ତୋର ଯାଉଥା । ମୁଁ ଆଉ ଏମିତି ଅଗାଧୂଆ ବସି ପାରିବ ନାଇଁ, ଯାଉଚ—ଏ ବର୍ଷା ପାଣିରେ ଗାଧୋଇବ ।

ଡଲି—ସତରେ ବୋଉ, ତୁ ବର୍ଷା ପାଣିରେ ଗାଧୋଇବୁ ? ତୋ ଦେହ ଖରାପ ହବ ଯେ ?

ବୋଉ—ହେଲେ ହବ । ମୋ ଦେହ କଣ୍ଟ କଣ୍ଟ ହେଲାଣି—ମୁଁ ଆଉ ବସି ରହି ପାରିବ ନାଇଁ । ଏଇ ବର୍ଷା ପାଣିରେ ଗାଧୋଇବ ।

(ଭିତରକୁ ଗଲେ)

———

# ଶେଷ ଦୃଶ୍ୟ

(ଫ୍ଲେଟ୍ କୋଠରୀ ଭିତରେ ଡଲି, ମଣ୍ଟୁ ଓ ବୋଉ । ସବୁଥିରେ ପୂର୍ଣ୍ଣ ଅନ୍ଧକାର । ସମୟ—ରାତି)

ମଣ୍ଟୁ—(ଅନୁଚ୍ଚ ସ୍ୱରରେ) ବୋଉ – ବୋଉମ !

ବୋଉ—ମୁଁ ପରା ତୋ' ପାଖରେ ବସିଛି—ଡାକୁଚୁ କାହିଁକି ?

ମଣ୍ଟୁ—ଭାରି ଡର ମାଡୁଛି ।

ଡଲି—ଓଃ ! ଆମେ ସମସ୍ତେ ଏଠି ବସିଚୁ—ଯାହାକୁ ଖାଲି ଡର ଖାଇ ଯାଉଛି !!

ମଣ୍ଟୁ—ତୁ ଖାଲି ମୁହଁ ଧଡ଼କ ମାରୁଚୁ ! ଦେଖିଲୁ କେମିତିକା କଟ କଟ୍ ଅନ୍ଧାର ହୋଇଛି ।

ଡଲି—ଅନ୍ଧାର ତ ହୋଇଛି—ମୁଁ ଆଉ ଦେଖିବି କ'ଣ ?

ମଣ୍ଟୁ - ଓ ! ଦେହସାରା ପୁଣି ମଶା କାମୁଡ଼ି ପକାଉଛନ୍ତି ।

ବୋଉ—ତୁ ଆ, ମୋ କୋଳକୁ ଆ ! —ପଙ୍ଖାଟା କ'ଣ ହେଲା ?

ଡଲି—ଇଲେକ୍‌ଟ୍ରିକ୍ ପଙ୍ଖା ?

ବୋଉ—ଉଁଃ ! ଇଲେକ୍‌ଟ୍ରିକ୍ ପଙ୍ଖା !! ଦେଖୁଚୁ ତ କେଉଁଣେ ଇଲେକ୍‌ଟ୍ରିକ୍ ମିସିନ୍ କ'ଣ ବିଗିଡ଼ି ଯାଇଛି ବୋଲି ଘରଆଡ଼େ ଅନ୍ଧାର—ଆଲୁଅ ଜଳୁ ନାହିଁ । ଇଲେକ୍‌ଟ୍ରିକ୍ ପଙ୍ଖା କ'ଣ କରିବୁ ? ହାତ ପଙ୍ଖାଟା କୁଆଡ଼େ ଗଲା ?

ଡଲି—ଏ ଅନ୍ଧାରରେ ହାତ ପଙ୍ଖା ଏବେ କୋଉଠୁ କିଏ ଖୋଜିବ ?

ମଣ୍ଟୁ—ଲଣ୍ଠନ ଜଳଉନୁ ବୋଉ ! ଘରେ କ'ଣ ମୋଟେ କିରାସିନି ନାହିଁ ?

ବୋଉ—କୋଉଠି ଅଛି ? କିରାସିନି ଆଣିବାକୁ ଆଜି ସକାଳେ ତମ ବାପାଙ୍କୁ କହିଲି ଯେ—କହିଲେ ଘରେ ତ ଇଲେକ୍‌ଟ୍ରିକ୍ — କିରାସିନି କ'ଣ ହେବ ? ପାଉଥା'ନ୍ତୁ ଏବେ ମଜା !